# ସଂସ୍କାର ବିଧିଃ

- ପ୍ରକାଶକ -

ଆର୍ଷ ସାହିତ୍ୟ ପ୍ରଚାର ଟ୍ରଷ୍ଟ

॥ ପ୍ରାପ୍ତିସ୍ଥାନ ॥

ଉତ୍କଳ ସାହିତ୍ୟ ସଂସ୍ଥାନ

|| ଓ୩ମ୍ ||

କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍

# ସଂସ୍କାର ବିଧିଃ

ଶ୍ରୀମଦ୍ଦୟାନନ୍ଦ ସରସ୍ୱତୀ ସ୍ୱାମୀନା ନିର୍ମିତଃ

- ଅନୁବାଦକ -

ସ୍ୱ ଶ୍ରୀବତ୍ସ ପଣ୍ଡା

- ପ୍ରକାଶକ -

ଆର୍ଷ ସାହିତ୍ୟ ପ୍ରଚାର ଟ୍ରଷ୍ଟ

୪୫୫ ଖାରିବାଓ୍ୱଲୀ, ଦିଲ୍ଲୀ - ୬

|| ପ୍ରାପ୍ତି ସ୍ଥାନ ||

ଉତ୍କଳ ସାହିତ୍ୟ ସଂସ୍ଥାନ

ଗୁରୁକୁଳ ଆଶ୍ରମ ଆମସେନା

କଳାହାଣ୍ଡି - ୭୬୬୧୦୯

ବିକ୍ରମ ସମ୍ବତ୍ ୨୦୪୮

ଶିବରାତ୍ରି - ୧୯୯୨ ମୂଲ୍ୟ - ଟ ୩୦.୦୦

॥ ओ३म् ॥

कृण्वन्तो विश्वमार्यम्

# संस्कार विधिः

श्रीमद्दयानन्द सरस्वती स्वामिना निर्मितः

—:अनुवादकः—

श्रीवत्स पण्डा

—:प्रकाशक:—

आर्ष साहित्य प्रचार ट्रष्ट

455 खारी बावली- दिल्ली- ६

—:प्राप्तिस्थान:—

उत्कल साहित्य संस्थान

गुरुकुल आश्रम आमसेना- ७६६ १०९

कालाहाण्डी (उड़ीसा)

दयानन्दाब्द- १६७  मूल्य- ३०)०० रुपये

॥ ଓ୩ମ ॥

# ଏ ପ୍ରକାଶକର ଇତିବୃତ୍ତ...

ମାନବ ଜନ୍ମକୁ ସାଫଲ୍ୟମଣ୍ଡିତ ଓ ମହତ୍ତ୍ୱମଣ୍ଡିତ କରିବା ପାଇଁ 'ସଂସ୍କାର ବିଧି' ହେଉଛି ଏକ ସର୍ବୋତ୍କୃଷ୍ଟ ଅନୁପମ ଗ୍ରନ୍ଥ । ଆର୍ଯ୍ୟସମାଜର ସଂସ୍ଥାପକ ପ୍ରାତଃସ୍ମରଣୀୟ ମହର୍ଷି ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଦ୍ୱାରା ବିରଚିତ ଏହି ଗ୍ରନ୍ଥରେ ଗର୍ଭାଧାନଠାରୁ ଆରମ୍ଭକରି ମୃତ୍ୟୁ ପର୍ଯ୍ୟନ୍ତ ଷୋଡ଼ଶ ସଂସ୍କାରର ସୁନ୍ଦର ବିଧାନମାନ ରହିଅଛି । ସାଧାରଣ ମନୁଷ୍ୟ ସଂସ୍କାରଦ୍ୱାରା ହିଁ ଦ୍ୱିଜତ୍ୱରେ ପରିଗଣିତ ହୋଇ ଶେଷରେ ମୋକ୍ଷାନନ୍ଦ ଲାଭ କରିବାକୁ ସମର୍ଥ ହୋଇଥାଏ । ତେଣୁ ସଂସ୍କାରର ମହତ୍ତ୍ୱପୂର୍ଣ୍ଣତା ଓ ଉପାଦେୟତା ଭାରତୀୟ ପ୍ରାଚୀନ ଗ୍ରନ୍ଥମାନଙ୍କରେ ବହୁଳଭାବେ ପରିଦୃଷ୍ଟ ହୋଇଥାଏ । ଭାରତରେ ଯେତେ ସମ୍ପ୍ରଦାୟ ଅଛି ସେମାନେ ସମସ୍ତେ କୌଣସି ନା କୌଣସି ପ୍ରକାରରେ ସଂସ୍କାରମାନ କରିଥାଆନ୍ତି । ଛଅଟି ବେଦାଙ୍ଗରେ ସଂସ୍କାରଗୁଡ଼ିକର ଯଥାର୍ଥ ସ୍ୱରୂପ ବର୍ଣ୍ଣିତ ହୋଇଥିଲେ ମଧ୍ୟ କଳ୍ପଶାସ୍ତ୍ରନାମକ ବେଦାଙ୍ଗରେ ସେସବୁର ଶୁଦ୍ଧସ୍ୱରୂପ ବହୁଳ ଭାବେ ପରିଲକ୍ଷିତ ହୋଇଥାଏ । ସେସବୁକୁ ଗଭୀରଭାବେ ଅନୁଶୀଳନକରି ମହର୍ଷି ସଂସ୍କାର ବିଧି ରଚନା କରିଛନ୍ତି । ହିନ୍ଦୀଭାଷାରେ ଏ ଗ୍ରନ୍ଥ ଲକ୍ଷ ଲକ୍ଷ ସଂଖ୍ୟାରେ ମୁଦ୍ରିତହୋଇ ଜନସମାଜର ଲାଭ କରିଅଛି । କିନ୍ତୁ ପ୍ରାଦେଶିକ ଭାଷାମାନଙ୍କରେ ଏହା ଏ ପର୍ଯ୍ୟନ୍ତ ସେପରିଭାବେ ପ୍ରକାଶିତ ହୋଇନାହିଁ ।

ଅତୀବ ଆନନ୍ଦର ବିଷୟ ଓଡ଼ିଶାର ସର୍ବପ୍ରଥମ ଆର୍ଯ୍ୟ ବିଦ୍ୱାନ୍ ତଥା ଆର୍ଯ୍ୟପ୍ରଚାରକ ସଂସ୍କାରକ ଶ୍ରୀବଧ୍ର ପଣ୍ଡା ଏହି ଗ୍ରନ୍ଥକୁ

ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ ମଧ୍ୟ ତାଙ୍କ ଜୀବନଦଶାରେ ଏହା ମୁଦ୍ରିତ ହୋଇ ନ ଥିଲା । ଗୁରୁକୁଳ ବୈଦିକ ଆଶ୍ରମ ଆନୁ-କୂଲ୍ୟରେ ଏହି ଗ୍ରନ୍ଥର ପ୍ରଥମ ସଂସ୍କରଣ ମୁଦ୍ରଣ ହେବା ପରେ ପରେ ନିଃଶେଷ ହୋଇଯାଇଛି । ପୁସ୍ତକପ୍ରିୟ ଆର୍ଯ୍ୟ ବନ୍ଧୁମାନଙ୍କର ଆଗ୍ରହାତିଶଯ୍ୟ ଥିବା ସତ୍ତ୍ୱେ ପୁସ୍ତକ ଅଲଭ୍ୟ ଥିବାରୁ ଏହାର ଦ୍ୱିତୀୟ ସଂସ୍କରଣ ପାଇଁ ଅନେକ ଉଦ୍ୟମ କରାଯାଇଛି । କିନ୍ତୁ ଦିନକୁଦିନ କାଗଜ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ଆସବାବପତ୍ରର ମୂଲ୍ୟ ଯେପରି ଆଶାତୀତଭାବେ ବୃଦ୍ଧି ପାଉଛି, ଦ୍ୱିତୀୟ ସଂସ୍କରଣକୁ ବାସ୍ତବ ରୂପରେଖ ଦେବା ଆମ ପକ୍ଷରେ ସମ୍ଭବପର ହେଉନାହିଁ ।

ଉତ୍କଳ ଆର୍ଯ୍ୟ ପ୍ରତିନିଧି ସଭାର ସଭାପତି ପୂଜ୍ୟ ସ୍ୱାମୀ ଧର୍ମାନନ୍ଦ ସରସ୍ୱତୀ ତଥା ସଂପାଦକ ପଣ୍ଡିତ ଋଷିକେଶନ ଶାସ୍ତ୍ରୀଙ୍କ ସାଗ୍ରହ ଅନୁରୋଧକୁ ରକ୍ଷାକରି ଦିଲ୍ଲୀ ଆର୍ଷ ସାହିତ୍ୟ ପ୍ରଚାର ଟ୍ରଷ୍ଟର ସଂପାଦକ ଶ୍ରୀଯୁକ୍ତ ଧର୍ମପାଳ ଆର୍ଯ୍ୟ ଏ ପ୍ରକାଶନର ସକଳ ଦାୟିତ୍ୱ ନିଜେ ବହନକରି ଆମକୁ ଚିରଦିନପାଇଁ କୃତଜ୍ଞତାସୂତ୍ରରେ ଆବଦ୍ଧ କରି ରଖିଛନ୍ତି । ତେଣୁ ମୁଁ ତାଙ୍କୁ ହୃଦୟର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଅର୍ପଣ କରୁଅଛି ।

ଏ ପ୍ରକାଶନ ଦ୍ୱାରା ଅନେକ ଦିନରୁ ଅଭାବ ଥିବା ଆମର ଆଶା-ଆକାଂକ୍ଷା ଦୂରୀଭୂତ ହୋଇଅଛି । ଏହାଦ୍ୱାରା ଓଡ଼ିଶାର ଅଗଣିତ ଜନସାଧାରଣ ବିଶେଷଭାବେ ଯେ ଉପକୃତ ହେବେ ଏହା ନିଃସନ୍ଦେହରେ କୁହାଯାଇପାରେ । ପୁସ୍ତକର ବହୁଳ ପ୍ରଚାର ପ୍ରସାର ସର୍ବାନ୍ତଃକରଣରେ କାମନା କରୁଅଛି ॥ ଇତ୍ୟୋମ୍ ॥

ଗୁରୁକୁଳ ଆଶ୍ରମ ଆମସେନା } ବ୍ର° ବାମଦେବ ଆର୍ଯ୍ୟ

ଉପାଚାର୍ଯ୍ୟ

—* ଓଁନମ୍ *—

# ସଂସ୍କାରବିଧିବିଷୟ—ସୂଚୀ

| ବିଷୟଃ | ପୃଷ୍ଠା |
|---|---|







❊ ନମୋ ନମଃ ସର୍ବଶକ୍ତିମତେ ଜଗଦୀଶ୍ୱରାୟ ❊

# ଭୂ ମି କା

ସମସ୍ତ ସଜ୍ଜନମାନଙ୍କୁ ଜ୍ଞାନ ହେଉକି, ମୁଁ ଅନେକ ସଜ୍ଜନଙ୍କର ଅନୁରୋଧକ୍ରମେ "ସଂସ୍କାର ବିଧିଃ"ର ଶୁଭାରମ୍ଭ ଶ୍ରୀଯୁକ୍ତ ମହାରାଜେ ବିକ୍ରମାଦିତ୍ୟଙ୍କର ସଂବତ୍ ୧୯୩୨ କାର୍ତ୍ତିକ କୃଷ୍ଣପକ୍ଷ ୩୦ ଶନିବାର ଦିନ କରିଥିଲି । ସେଥିରେ ସଂସ୍କୃତପାଠ ଓ ଭାଷାପାଠ ଏକାଠି ଲେଖିଥିବାରୁ ସଂସ୍କାର କରୁଥିବା ମନୁଷ୍ୟମାନଙ୍କୁ, ସଂସ୍କୃତ ଓ ଭାଷା ଦୂର ଦୂର ଥିବାରୁ କଠିନ ପଡ଼ୁଥିଲା । କିନ୍ତୁ ଯେଉଁ ( ୧୦୦୦ ) ହଜାରେ ପୁସ୍ତକ ଆମ୍ଭ-ପ୍ରକାଶ କରିଥିଲି ସେଥିରୁ ଏବେ ଖଣ୍ଡେହେଲେ ମଧ୍ୟ ରହିନାହିଁ । ଏଣୁ ଶ୍ରୀଯୁକ୍ତ ମହାରାଜେ ବିକ୍ରମାଦିତ୍ୟଙ୍କର ସଂବତ୍ ୧୯୪୦ ଶୁକ୍ଳ ୨୩ ଶନିବାର ଦିନ ପୁଣି ସଂଶୋଧନ କରି ଛାପିବାପାଇଁ ବିସ୍ତରକଲି ।

ସଂସ୍କାରରେ ଯେଉଁ ଉପଦେଶାର୍ଥ, ପ୍ରମାଣବଚନ ଓ ପ୍ରୟୋଜନାଦି ରହିଅଛି ସେଗୁଡ଼ିକ ଏହିଥର ସଂସ୍କାରର ( କର୍ମର ) ପୂର୍ବରୁ ଲେଖାଅଛି । ତତ୍ପଶ୍ଚାତ୍ ସଂସ୍କାରର

କର୍ତ୍ତବ୍ୟ ବିଧି ଗୁଡ଼ିକ କ୍ରମାନୁସାରେ ଲେଖି ପୁଣି ସେହି ସଂସ୍କାରର ଶେଷ ବିଷୟ ଯାହାକି ଅନ୍ୟ ସଂସ୍କାର ପର୍ଯ୍ୟନ୍ତ କରିବା ଉଚିତ ତାହା ମଧ୍ୟ ଲେଖାଅଛି । ଯେଉଁ ଯେଉଁ ବିଷୟବସ୍ତୁ ପ୍ରଥମର୍ ଅଧିକ ଲେଖାଥିଲି ସେଥିର୍ କେତେକ ଅନୁପଯୋଗୀ ଭାବି ଛାଡ଼ିଦେଇଛି ଏବଂ ଯେଉଁ ଯେଉଁ ବିଷୟ ଅତ୍ୟନ୍ତ ଆବଶ୍ୟକ ଅଟେ ତାହା ଏଥିରେ ବିଶଦଭାବେ ଲେଖିଛି ।

ଏଥିରେ ଭ୍ରମହେବା ଉଚିତ ନୁହେଁକି, ପ୍ରଥମରେ ଉକ୍ତ ବିଷୟଗୁଡ଼ିକ ନଥିଲା ବା ଛାଡ଼ିଯାଇଥିଲି କିମ୍ବା ଏହାର ସଂଶୋଧନ କରାଯାଇଛି । ସେହି ବିଷୟ ଗୁଡ଼ିକ ପ୍ରଥମରେ ଯଥାସ୍ଥିତ କ୍ରମାନୁସାରେ ସଂସ୍କୃତ ସୂତ୍ରରେ ଲେଖିଥିଲି । କିନ୍ତୁ ତାହା ସମସ୍ତଙ୍କର ବୋଧଗମ୍ୟ ନଥିଲା କାରଣ ବିଦ୍ୱାନ୍ ଲୋକଙ୍କ ବ୍ୟତୀତ ସାଧାରଣ ଜନତା ସଂସ୍କୃତ ବିଷୟ ବୁଝି-ପାରୁନଥିଲେ । ଏଣୁ ଏବେ ଏହାକୁ ସରଳ କରିଦେଇଛି ।

ଏଥିରେ ସାମାନ୍ୟ ବିଷୟ ଯାହାକି ସବୁ ସଂସ୍କାରର ଆଦିରେ ଓ ଉଚିତ ସମୟରେ ଯଥା ସ୍ଥାନରେ କରିବା ଆବଶ୍ୟକ ତାହା ପ୍ରଥମ ସାମାନ୍ୟ ପ୍ରକରଣରେ ଲେଖିଦେଇଛି ସାମାନ୍ୟ ପ୍ରକରଣର ଯେଉଁ ମନ୍ତ୍ର ବା କ୍ରିୟାକରଣୀୟ ବିଧି ସଂସ୍କାର ମାନଙ୍କରେ ଆବଶ୍ୟକ ଅଟେ ତାହାର ପୃଷ୍ଠା ଓ ପଂକ୍ତିର ସୂଚନା ସେହି ସେହି ସଂସ୍କାରରେ ଲେଖିଅଛି, ଯାହାକୁ କି ଦେଖିକରି ସାମାନ୍ୟ ପ୍ରକରଣ କ୍ରିୟାକୁ ଜନ-ସାଧାରଣ ସେହିଠାରେ ( ସଂସ୍କାରରେ ଆବଶ୍ୟକସ୍ଥଳେ ) ସହଜରେ କରିପାରିବେ । ସାମାନ୍ୟ ପ୍ରକରଣର ବିଧି ମଧ୍ୟ ସାମାନ୍ୟ ପ୍ରକରଣରେ ଉଲ୍ଲେଖ କରିଅଛି, ଅର୍ଥାତ୍ ସେହିବିଧି କରି ସଂସ୍କାରର କର୍ତ୍ତବ୍ୟକର୍ମ କରିବା ଉଚିତ ।

ସାମାନ୍ୟ ପ୍ରକରଣରେ ଗୋଟିଏ ସ୍ଥାନରେ ଯେଉଁ ବିଧି ଲେଖିଛୁ ତାହା ଅନେକ ସ୍ଥଳରେ କରିବାକୁ ହେବ । ଯଥାଃ- ଅଗ୍ନ୍ୟାଧାନ ପ୍ରତ୍ୟେକ ସଂସ୍କାରରେ କରିବା ଉଚିତ ଅଟେ । ଏଣୁ ତାହାକୁ ( ଅଗ୍ନ୍ୟାଧାନ ) ଏକଥର ହିବନେ ସାମାନ୍ୟ ପ୍ରକରଣରେ ଲେଖିବାରୁ ଅନ୍ୟସବୁ ସଂସ୍କାରରେ ବାରମ୍ବାର ଲେଖିବାକୁ ହେବନାହିଁ ।

ଏଥିରେ ପ୍ରଥମରେ ଈଶ୍ୱରଙ୍କ ସ୍ତୁତି, ପ୍ରାର୍ଥନା, ପୁନଃ ସ୍ୱସ୍ତି ବାଚନ, ଶାନ୍ତିପାଠ, ତଦନନ୍ତର ସାମାନ୍ୟ ପ୍ରକରଣ ପଶ୍ଚାତ୍ ଗର୍ଭାଧାନାଦି ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ଷୋଡ଼ଶ ସଂସ୍କାର ଲେଖିଅଛୁ । କିନ୍ତୁ ଏଥିରେ ସମସ୍ତ ମନ୍ତ୍ରାର୍ଥ ଲେଖିନାହିଁ, କାହିଁକନା ଏଥିରେ କର୍ମକାଣ୍ଡର ବିଧାନ ଅଛି । ସେଥିପାଇଁ ବିଶେଷକରି କ୍ରିୟାବିଧାନ ଲେଖିଅଛୁ ଓ ଯେଉଁଠାରେ ଅର୍ଥ କରିବା ଆବଶ୍ୟକ ସେଠାରେ ଅର୍ଥ ମଧ୍ୟ କରିଦେଇଛୁ । ମନ୍ତ୍ର ଗୁଡ଼ିକର ଯଥାର୍ଥ ଅର୍ଥ ମୁଁ କରିଥିବା ବେଦଭାଷ୍ୟରେ ଲେଖିଅଛୁ । ଯେଉଁମାନେ ଦେଖିବାକୁ ଚାହାନ୍ତି ସେମାନେ ସେଠାରେ ( ବେଦଭାଷ୍ୟରେ ) ଦେଖିନଅନ୍ତୁ । ଏଠାରେ କେବଳ କ୍ରିୟା ମୁଖ୍ୟ ଅଟେ, ଯାହାର ପ୍ରତିପାଦନରେ ଶରୀର ଓ ଆତ୍ମା ସୁସଂସ୍କୃତ ହୋଇ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପାଇପାରିବ ଓ ସନ୍ତାନମାନେ ଅତ୍ୟନ୍ତ ଯୋଗ୍ୟ ହୋଇ-ପାରିବେ । ଏଣୁ ସମସ୍ତ ସଂସ୍କାର ପ୍ରତିପାଦନ କରିବା ସବୁ ମନୁଷ୍ୟଙ୍କର ଅତ୍ୟାବଶ୍ୟକ କର୍ମ ଅଟେ ।

ଇତି ଭୂମିକା —: ସ୍ୱାମୀ ଦୟାନନ୍ଦ ସରସ୍ୱତୀ

ଓ୩ମ୍ ନମୋ ନମଃ ସର୍ବବିଧାତ୍ରେ ଜଗଦୀଶ୍ୱରାୟ ।

# ଅଥ ସଂସ୍କାର ବିଧିଂ ବକ୍ଷ୍ୟାମଃ

ଓଁ ସହନାବବତୁ । ସହ ନୌ ଭୁନକ୍ତୁ । ସହ ବୀର୍ଯ୍ୟଂ କରବାବହୈ । ତେଜସ୍ୱିନାବଧୀତମସ୍ତୁ । ମା ବିଦ୍ୱିଷାବହୈ । ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ତୈତ୍ତିରୀୟ ଆରଣ୍ୟକେ । ଅଷ୍ଟମପ୍ରପାଠକେ । ପ୍ରଥମାନୁବାକେ ॥

ସର୍ବାତ୍ମା ସଚ୍ଚିଦାନନ୍ଦୋ ବିଶ୍ୱାଦିର୍ବିଶ୍ୱକୃଦ୍ ବିଭୁଃ ।
ଭୂୟାତ୍ତମାଂ ସହାୟୋ ନସ୍ସର୍ବେଶୋ ନ୍ୟାୟକୃଚ୍ଛୁଚିଃ ।୧।
ଗର୍ଭାଦ୍ୟା ମୃତ୍ୟୁପର୍ଯ୍ୟନ୍ତାଃ ସଂସ୍କାରାଃ ଷୋଡ଼ଶୈବ ହି ।
ବକ୍ଷ୍ୟନ୍ତେ ଽ ନମସ୍କୃତ୍ୟାନନ୍ତବିଦ୍ୟଂ ପରେଶ୍ୱରମ୍ ।୨।
ବେଦାଦିଶାସ୍ତ୍ରସିଦ୍ଧାନ୍ତମାଧାୟ ପରମାଦରାତ୍ ।
ଅର୍ଯ୍ୟୈତିହ୍ୟଂ ପୁରସ୍କୃତ୍ୟ ଶରୀରାତ୍ମବିଶୁଦ୍ଧୟେ ।୩।
ସଂସ୍କାରୈଃ ସଂସ୍କୃତଂ ଯଦ୍ୟନ୍ମେଧ୍ୟମତ୍ର ତଦୁଚ୍ୟତେ ।
ଅସଂସ୍କୃତଂ ତୁ ଯଲ୍ଲୋକେ ତଦମେଧ୍ୟଂ ପ୍ରକୀର୍ତ୍ତ୍ୟତେ ।୪।
ଅତଃ ସଂସ୍କାରକରଣେ କ୍ରିୟତାମୁଦ୍ୟମୋ ବୁଧୈଃ ।
ଶିକ୍ଷୟୌଷଧିଭିର୍ନିତ୍ୟଂ ସର୍ବଥା ସୁଖବର୍ଦ୍ଧନଃ ।୫।
କୃତାନୀହ ବିଧାନାନି ଗ୍ରନ୍ଥଗ୍ରନ୍ଥନତତ୍ପରୈଃ ।
ବେଦବିଜ୍ଞାନବିରହୈଃ ସ୍ୱାର୍ଥିଭିଃ ପରିମୋହିତୈଃ ।୬।
ପ୍ରମାଣୈସ୍ତାନ୍ୟନାଦୃତ୍ୟ କ୍ରିୟତେ ବେଦମାନତଃ ।
ଜନାନାଂ ସୁଖବୋଧାୟ ସଂସ୍କାରବିଧିରୁତ୍ତମଃ ।୭।
ବହୁଭିଃ ସଜ୍ଜନୈର୍ଧର୍ମ୍ୟଙ୍ମାନବପ୍ରିୟକାରକୈଃ ।
ପ୍ରବୃତ୍ତେ ଗ୍ରନ୍ଥକରଣେ ସମତେଶୋଽହଂ ନିୟୋଜିତଃ ।୮।



ଦୟାୟା ଆନନ୍ଦୋ ବିଳସତି ପରେ ବ୍ରହ୍ମବର୍ଦ୍ଧିତଃ
ସରସ୍ୱତ୍ୟସ୍ୟାଗ୍ରେ ନିବସତି ମୁଦା ସତ୍ୟନିଳୟା ।
ଇୟଂ ଖ୍ୟାତିର୍ଯସ୍ୟ ପ୍ରତତସୁଗୁଣା ହ୍ୟଶରଣାତ୍
ସ୍ତ୍ୟନେନାୟଂ ଗ୍ରନ୍ଥୋ ରଚିତ ଇତି ବୋଦ୍ଧବ୍ୟମନଘାଃ ।୯।
ଚକ୍ଷୁର୍ବ୍ରମାଙ୍କଚନ୍ଦ୍ରେଽବ୍ଦେ କାର୍ତ୍ତିକସ୍ୟାନ୍ତିମେ ଦଳେ ।
ଅମାୟାଂ ଶନିବାରେଽୟଂ ଗ୍ରନ୍ଥାରମ୍ଭଃ କୃତୋ ମୟା ।୧୦।
ବସୁବେଦାଙ୍କଚନ୍ଦ୍ରେଽବ୍ଦେ ଶୁଚୌ ମାସେଽସିତେ ଦଳେ ।
ତ୍ରୟୋଦଶ୍ୟାଂ ରବୌବାରେ ପୁନଃ ସଂସ୍କରଣଂ କୃତମ୍ ।୧୧।

ପ୍ରତ୍ୟେକ ସଂସ୍କାର ଆରମ୍ଭରେ କୌଣସି ବିଦ୍ୱାନ୍ ବା ବୁଦ୍ଧିମାନ୍ ପୁରୁଷ ନିମ୍ନ ଆଠଟି ମନ୍ତ୍ର ଅର୍ଥସହ ପାଠ କରିବେ । ପାଠ ସମୟରେ ଏକାଗ୍ର ଚିତ୍ତରେ ଈଶ୍ୱରଙ୍କର ଧ୍ୟାନରେ ମଗ୍ନ ହୋଇ ସ୍ତୁତି, ପ୍ରାର୍ଥନା ଓ ଉପାସନା କରିବେ ଏବଂ ଅନ୍ୟାନ୍ୟ ସମସ୍ତେ ତାହା ମନଯୋଗ ସହକାରେ ଶୁଣିବେ ଓ ଚିନ୍ତା କରିବେ ।

## ଅଥଈଶ୍ୱରସ୍ତୁତିପ୍ରାର୍ଥନୋପାସନାଃ

**ଓ୩ମ୍ ବିଶ୍ୱାନି ଦେବ ସବିତର୍ଦୁରିତାନି ପରା ସୁବ ।**
**ଯଦ୍ଭଦ୍ରନ୍ତନ୍ନ ଆ ସୁବ ॥୧॥**

ଯଜୁ. ଅ. ୩୦ । ମଂ ୩ ॥

**ଅର୍ଥ**—ହେ ( ସବିତଃ ) ସକଳ ଜଗତର ଉତ୍ପତ୍ତିକର୍ତ୍ତା, ସମଗ୍ର ଐଶ୍ୱର୍ଯ୍ୟଯୁକ୍ତ (ଦେବ) ଶୁଦ୍ଧସ୍ୱରୂପ, ସର୍ବସୁଖ ଦାତା ପରମେଶ୍ୱର ! ଆପଣ ଦୟାକରି (ନଃ) ଆମର (ବିଶ୍ୱାନି) ସମ୍ପୂର୍ଣ୍ଣ

(ଦୁରିତାନି) ଦୁର୍ଗୁଣ, ଦୁର୍ବ୍ୟସନ ଓ ଦୁଃଖ ଦୂର କରିଦିଅନ୍ତୁ । (ଯଦ୍) ଯାହା (ଭଦ୍ରମ୍) କଲ୍ୟାଣକାରକ ଗୁଣ, କର୍ମ, ସ୍ୱଭାବ ଓ ପଦାର୍ଥ (ତନ୍) ସେହି ସମସ୍ତ ଆମ୍ଭମାନଙ୍କୁ ( ଆ, ସୁବ ) ପ୍ରଦାନ କରନ୍ତୁ ॥୧॥

**ଓମ୍ ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସ ଦାଧାର ପୃଥିବୀଂ ଦ୍ୟାମୁ-ତେମାଂ କସ୍ମୈ ଦେବାୟ ହବିଷା ବିଧେମ ॥୨॥**

ଯଜୁ. ଅ. ୧୩ । ମ°-୪ ॥

**ଅର୍ଥ–** ଯେ (ହିରଣ୍ୟଗର୍ଭଃ) ସ୍ୱପ୍ରକାଶରୂପ ଏବଂ ଯେ ପ୍ରକାଶମୟ ସୂର୍ଯ୍ୟଚନ୍ଦ୍ରାଦି ପଦାର୍ଥ ଉତ୍ପନ୍ନ କରି ଧାରଣ କରିଛନ୍ତି, ଯେ (ଭୂତସ୍ୟ) ସମ୍ପୂର୍ଣ୍ଣ ସୃଷ୍ଟ ଜଗତର (ଜାତଃ) ପ୍ରସିଦ୍ଧ (ପତି) ସ୍ୱାମୀ ଏବଂ (ଏକଃ) ଏକମାତ୍ର ଚେତନ ସ୍ୱରୂପ (ଆସୀତ୍) ଥିଲେ, ଯେ (ଅଗ୍ରେ) ସମଗ୍ର ଜଗତ୍ ସୃଷ୍ଟିର ପୂର୍ବେ (ସମବର୍ତ୍ତତ) ବର୍ତ୍ତମାନ-ଥିଲେ, (ସଃ) ସେ (ଇମାମ୍) ଏହି (ପୃଥିବୀମ୍) ଭୂମି (ଉତ) ଓ (ଦ୍ୟାମ୍) ସୂର୍ଯ୍ୟାଦିଙ୍କୁ (ଦାଧାର) ଧାରଣ କରିଅଛନ୍ତି । ଆମ୍ଭେ-ମାନେ ସେହି (କସ୍ମୈ) ସୁଖସ୍ୱରୂପ (ଦେବାୟ) ଶୁଦ୍ଧ ପରମା-ତ୍ମାଙ୍କ ନିମନ୍ତେ (ହବିଷା) ଗ୍ରହଣଯୋଗ୍ୟ ଯୋଗାଭ୍ୟାସ ଓ ଗଭୀର ପ୍ରେମ ସହିତ ( ବିଧେମ ) ବିଶେଷ ଭାବରେ ଭକ୍ତି କରୁଁ ॥୨॥

**ଓମ୍ ଯ ଆତ୍ମଦା ବଳଦା ଯସ୍ୟ ବିଶ୍ୱ, ଉପାସତେ ପ୍ରଶିଷଂ ଯସ୍ୟ ଦେବାଃ । ଯସ୍ୟଚ୍ଛାୟାଽମୃତଂ ଯସ୍ୟ ମୃତ୍ୟୁଃ କସ୍ମୈ ଦେବାୟ ହବିଷା ବିଧେମ ॥୩॥**

ଯଜୁ. ଅ. ୨୫ । ମ° ୧୩ ॥

ଅର୍ଥ—(ଯଃ) ଯେ (ଆତ୍ମଦା) ଆତ୍ମଜ୍ଞାନର ଦାତା ଓ (ବଳଦା) ଶରୀର, ଆତ୍ମା ଓ ସମାଜର ବଳଦାତା, (ଯସ୍ୟ) ଯାହାର (ବିଶ୍ୱେ) ସମସ୍ତ (ଦେବାଃ) ବିଦ୍ୱାନ୍ ବ୍ୟକ୍ତିମାନେ (ଉପାସତେ) ଉପାସନା କରନ୍ତି ଏବଂ (ଯସ୍ୟ) ଯାହାର (ପ୍ରଶିଷମ୍) ପ୍ରତ୍ୟକ୍ଷ ସତ୍ୟସ୍ୱରୂପ ଶାସନ, ନ୍ୟାୟ ଅର୍ଥାତ୍ ଶିକ୍ଷାକୁ ମାନନ୍ତି (ଯସ୍ୟ) ଯାହାର (ଛାୟା) ଆଶ୍ରୟ ହିଁ (ଅମୃତମ୍) ମୋକ୍ଷସୁଖଦାୟକ, (ଯସ୍ୟ) ଯାହାର ଅମାନ୍ୟ ବା ଭକ୍ତି ନକରିବା (ମୃତ୍ୟୁ) ମୃତ୍ୟୁ-ଆଦି ଦୁଃଖର କାରଣ, ଆମେ ସେହି (କସ୍ମୈ) ସୁଖସ୍ୱରୂପ (ଦେବାୟ) ସକଳଜ୍ଞାନଦାତା ପରମାତ୍ମାଙ୍କ ପ୍ରାପ୍ତି ନିମିତ୍ତ (ହବିଷା) ଆତ୍ମା ଓ ଅନ୍ତଃକରଣଦ୍ୱାରା (ବିଧେମ) ଭକ୍ତିରେ ଅର୍ଥାତ୍ ତାଙ୍କର ଆଜ୍ଞାପାଳନ କରିବାରେ ତତ୍ପର ରହିବୁ ।

**ଓଁ ଯଃ ପ୍ରାଣତୋ ନିମିଷତୋ, ମହିତ୍ୱୈକ ଇଦ୍ରାଜା ଜଗତୋ ବଭୂବ । ଯଈଶେଅସ୍ୟ ଦ୍ୱିପଦଶ୍ଚତୁଷ୍ପଦଃ କସ୍ମୈ ଦେବାୟ ହବିଷା ବିଧେମ ॥୪॥**

ଯଜୁ. ଅ. ୨୩। ମଂ ୩ ॥

ଅର୍ଥ–(ଯଃ) ଯେ (ପ୍ରାଣତଃ) ପ୍ରାଣୀ ଓ (ନିମିଷତଃ) ଅପ୍ରାଣୀ-ରୂପ (ଜଗତଃ) ଜଗତର (ମହିତ୍ୱା) ସ୍ୱୀୟ ମହିମା ବଳରେ (ଏକ ଇତ୍) ଏକମାତ୍ର (ରାଜା) ବିରାଜମାନ ରାଜା (ବଭୂବ) ଅଟନ୍ତି, (ଯଃ) ଯେ (ଅସ୍ୟ) ଏହି (ଦ୍ୱିପଦଃ) ମନୁଷ୍ୟାଦି ଏବଂ (ଚତୁଷ୍ପଦଃ) ଗବାଦି ପ୍ରାଣିମାନଙ୍କର ଶରୀରର (ଈଶେ) ରଚନା କରନ୍ତି. ଆମ୍ଭେମାନେ ସେହି (କସ୍ମୈ) ସୁଖସ୍ୱରୂପ (ଦେବାୟ) ସର୍ବୈଶ୍ୱର୍ଯ୍ୟଦାତା ପରମାତ୍ମାଙ୍କର ଉପାସନା ଅର୍ଥାତ୍ (ହବିଷା) ନିଜସ୍ୱ ସମସ୍ତ ଉତ୍ତମ ବସ୍ତୁକୁ ତାହାଙ୍କ ଆଦେଶ ପାଳନାର୍ଥେ ସମର୍ପଣ କରି (ବିଧେମ) ବିଶେଷ ଭାବରେ ଭକ୍ତି କରୁଛୁଁ ॥୪॥

**ଓଁ ଯେନ ଦ୍ୟୌରୁଗ୍ରା ପୃଥିବୀ ଚ ଦୃଢ଼ା, ଯେନ ସ୍ୱଃ ସ୍ତଭିତଂ ଯେନ ନାକଃ । ଯୋଽନ୍ତରିକ୍ଷେ ରଜସୋ ବିମାନଃ, କସ୍ମୈ ଦେବାୟ ହବିଷା ବିଧେମ ॥ ୫ ॥**

ଯଜୁ ଅ ୩୨ । ମଂ ୬

ଅର୍ଥ – (ଯେନ) ଯେଉଁ ପରମାତ୍ମା (ଉଗ୍ରା) ତୀକ୍ଷ୍ଣ ସ୍ୱଭାବ (ଦ୍ୟୌଃ) ସୂର୍ଯ୍ୟାଦି (ଚ) ଏବଂ (ପୃଥିବୀ) ଭୂମିକୁ (ଦୃଢ଼ା) ଧାରଣ କରିଅଛନ୍ତି (ଯେନ) ଯେ ସ୍ୱର୍ଗ ( ନାକଃ ) ଦୁଃଖରହିତ ମୋକ୍ଷ ଧାରଣ କରିଅଛନ୍ତି, (ଯଃ) ଯେ (ଅନ୍ତରିକ୍ଷେ ଆକାଶରେ (ରଜସଃ) ସମସ୍ତ ଲୋକଲୋକାନ୍ତରକୁ (ବିମାନଃ) ବିଶେଷ ମାନ କରିଅଛନ୍ତି ଅର୍ଥାତ୍ ଯେପରି ପକ୍ଷୀ ଆକାଶରେ ଉଡ଼େ, ସେହିପରି ସବୁଲୋକର ନିର୍ମାଣ କରିଛନ୍ତି ଓ ଭ୍ରମଣ କରାଉଅଛନ୍ତି, ଆମେ ସମସ୍ତେ ସେଇ (କସ୍ମୈ ) ସୁଖଦାୟକ (ଦେବାୟ) କାମ୍ୟ ପରଂବ୍ରହ୍ମଙ୍କ ପ୍ରାପ୍ତି ପାଇଁ (ହବିଷା) ସ ମସ୍ତିଦ୍ୱାରା (ବିଧେମ) ବିଶେଷଭାବରେ ଭକ୍ତିକରୁଁ ।

**ଓଁ ପ୍ରଜାପତେ ନ ତ୍ୱଦେତାନ୍ୟନ୍ୟୋ, ବିଶ୍ୱା ଜାତାନି ପରିତା ବଭୂବ । ଯତ୍କାମାସ୍ତେ ଜୁହୁମସ୍ତନ୍ନୋଽସ୍ତୁ ବୟଂ ସ୍ୟାମ ପତୟୋ ରୟୀଣାମ୍ ॥ ୬ ॥**

ଋ ମଂ ୧୦ । ସୂ ୧୨୧ । ମଂ ୧୦

ଅର୍ଥ – ହେ (ପ୍ରଜାପତେ) ସମସ୍ତ ପ୍ରଜାଙ୍କର ସ୍ୱାମୀ ପରମାତ୍ମନ୍ (ତ୍ୱତ୍) ଆପଣଙ୍କ (ଅନ୍ୟଃ) ଭିନ୍ନ ଅନ୍ୟ କେହି (ତା) ଏ (ଏତାନି) ଏଇ (ବିଶ୍ୱା) ସମସ୍ତ (ଜାତାନି) ଉତ୍ପନ୍ନ ହୋଇଥିବା ଜଡ ଚେତନାଦିମାନଙ୍କର ନିର୍ମାତା ଏବଂ (ପରିତା) ବ୍ୟାପକ (ନ ବଭୂବ) ନୁହଁନ୍ତି । (ତେ) ସେଇ ଆପଣଙ୍କର ଭକ୍ତ ଆମ୍ଭେମାନେ, ଚୈତନ୍ୟ ସ୍ୱରୂପ ଆତ୍ମମାନଙ୍କୁ ଅନ୍ୟ କେହି (ପରି, ବଭୂବ) ତିରସ୍କାର କରେ

(ନ) ନା, ଅର୍ଥାତ୍ ଆପଣ ସବୁବେଳେ (ଯତ୍କାମା:) ଯେଉଁ ଯେଉଁ ପଦାର୍ଥର କାମନା କରି ଆମେ ଭକ୍ତି କରୁ (ତେ) ଆପଣଙ୍କର (ଜୁହୁମ:) ଆଶ୍ରୟ ଗ୍ରହଣ କରୁ ଓ ବାଞ୍ଛା କରୁ (ତତ୍) ସେଇ କାମନା (ନ:) ଆମମାନଙ୍କର ସିଦ୍ଧ (ଅସ୍ତୁ) ହେଉ, ଯଦ୍ୱାରା (ବୟମ୍) ଆମେ (ରୟୀଣାମ୍) ଧନୈଶ୍ୱର୍ଯ୍ୟର (ପତୟ:) ସ୍ୱାମୀ (ସ୍ୟାମ) ହେବୁ । ୬ ।

**ଓଁ ସ ନୋ ବନ୍ଧୁର୍ଜନିତା ସ ବିଧାତା, ଧାମାନି ବେଦ ଭୁବନାନି ବିଶ୍ୱା । ଯତ୍ର ଦେବା ଅମୃତମାନଶାନା-ସ୍ତୃତୀୟେ ଧାମନ୍ନଧ୍ୟୈରୟନ୍ତ ॥ ୭ ॥**

ଯଜୁ ୩୨।୧୦

ଅର୍ଥ—ହେ ମନୁଷ୍ୟଗଣ ! (ସ:) ସେଇ ପରମାତ୍ମା (ନ:) ଆମ ସମସ୍ତଙ୍କର (ବନ୍ଧୁ:) ଭ୍ରାତାଭଳି ସୁଖଦାୟକ (ଜନିତା) ସକଳ ଜଗତର ଉତ୍ପାଦକ । (ସ:) ସେ (ବିଧାତା) ସବୁକାମନାର ପୂରକ (ବିଶ୍ୱା) ସମ୍ପୂର୍ଣ୍ଣ (ଭୁବନାନି) ଲୋକଲୋକାନ୍ତରର (ଧାମାନି) ନାମ, ସ୍ଥାନ ଓ ଜନ୍ମକୁ (ବେଦ) ଜାଣନ୍ତି ଏବଂ (ଯତ୍ର) ଯେ (ତୃତୀୟେ) ସାଂସାରିକ ସୁଖଦୁ:ଖଶୂନ୍ୟ, ନିତ୍ୟାନନ୍ଦମୟ (ଧାମନ୍) ମୋକ୍ଷସ୍ୱରୂପର ଧାରଣକର୍ତ୍ତା ପରମେଶ୍ୱରଙ୍କଠାରେ (ଅମୃତମ୍) ମୋକ୍ଷ (ଆନଶାନା:) ପ୍ରାପ୍ତ ହୋଇ (ଦେବା:) ବିଦ୍ୱାନ୍ ବ୍ୟକ୍ତିମାନେ (ଅଧ୍ୟୈରୟନ୍ତ) ସ୍ୱେଚ୍ଛାରେ ବିଚରଣ କରନ୍ତି, ସେଇ ପରମାତ୍ମାହିଁ ଆମ୍ଭମାନଙ୍କର ଗୁରୁ, ଆଚାର୍ଯ୍ୟ, ରାଜା ଓ ନ୍ୟାୟାଧୀଶ । ଆମେ ସମସ୍ତେ ମିଳି ତାଙ୍କୁ ଭକ୍ତି କରିବା । ୭ ।

**ଓଁ ଅଗ୍ନେ ନୟ ସୁପଥା ରାୟେଽଅସ୍ମାନ୍ ବିଶ୍ୱାନି ଦେବ ବୟୁନାନି ବିଦ୍ୱାନ୍ । ଯୁୟୋଧ୍ୟସ୍ମଜ୍ଜୁହୁରାଣମେନୋ ଭୂୟିଷ୍ଠାନ୍ତେ ନମଽଉକ୍ତିଂ ବିଧେମ ॥ ୮ ॥**

ଯଜୁ ୪୦।୧୬

ଅର୍ଥ—ହେ (ଅଗ୍ନେ) ସ୍ୱ ପ୍ରକାଶ ଜ୍ଞାନ ସ୍ୱରୂପ, ସର୍ବଜଗତ୍‌ପ୍ରକାଶକ, (ଦେବ) ସର୍ବସୁଖଦାତା ପରମେଶ୍ୱର ! ଯେହେତୁ ଆପଣ (ବିଦ୍ୱାନ୍) ସମ୍ପୂର୍ଣ୍ଣ ବିଦ୍ୟାଯୁକ୍ତ କୃପାକର ( ଅସ୍ମାନ୍ ) ଆମ୍ଭମାନଙ୍କୁ (ରାୟେ) ବିଜ୍ଞାନ ବା ରାଜ୍ୟାଦି ଐଶ୍ୱର୍ଯ୍ୟ ପ୍ରାପ୍ତି ପାଇଁ (ସୁପଥା) ସୁନ୍ଦର ଓ ଧାର୍ମିକ ଆପ୍ତ ପୁରୁଷଙ୍କ ପଥରେ (ବିଶ୍ୱାନି) ସମ୍ପୂର୍ଣ୍ଣ (ବୟୁନାନି) ପ୍ରଜ୍ଞାନ ଓ ଉତ୍ତମକର୍ମ (ନୟ) ପ୍ରାପ୍ତ କରାନ୍ତୁ ଏବଂ (ଅସ୍ମତ୍) ଆମ ନିକଟରୁ (ଜୁହୁରାଣମ୍) କୁଟିଳ (ଏନଃ) ପାପରୂପ କର୍ମକୁ (ଯୁୟୋଧି) ଦୂରକରି ଦିଅନ୍ତୁ । ଏଥିପାଇଁ ଆମ୍ଭେମାନେ (ତେ) ଆପଣଙ୍କର (ଭୂୟିଷ୍ଠାମ୍) ବହୁବିଧ ସ୍ତୁତିରୂପ (ନମଃ ଉକ୍ତିମ୍ ) ବିନମ୍ର ପ୍ରଶଂସା (ବିଧେମ) ସର୍ବଦା କରୁଥିବୁ ଓ ସର୍ବଦା ଆନନ୍ଦରେ ଥିବୁ ।

ଇତୀଶ୍ୱରସ୍ତୁତି ପ୍ରାର୍ଥନୋପାସନା ପ୍ରକରଣମ୍ ।

—ః୦ః—

## ଅଥ ସ୍ୱସ୍ତିବାଚନମ୍

**ଓଁ ଅଗ୍ନିମୀଳେ ପୁରୋହିତଂ ଯଜ୍ଞସ୍ୟ ଦେବମୃତ୍ୱିଜମ୍ ।**
**ହୋତାରଂ ରତ୍ନଧାତମମ୍ ॥ ୧ ॥**

ଋଗ୍ ୧।୧।୧

**ଓଁ ସ ନଃ ପିତେବ ସୂନବେଽଗ୍ନେ ସୂପାୟନୋ ଭବ ।**
**ସଚସ୍ୱା ନଃ ସ୍ୱସ୍ତୟେ ॥ ୨ ॥**

ଋଗ୍ ୧।୧।୯

ଓଁ ସ୍ୱସ୍ତି ନୋ ମିମୀତାମଶ୍ୱିନା ଭଗଃ, ସ୍ୱସ୍ତି ଦେବ୍ୟ-ଦିତିରନର୍ବଣଃ । ସ୍ୱସ୍ତି ପୂଷା ଅସୁରୋ ଦଧାତୁ ନଃ ସ୍ୱସ୍ତି ଦ୍ୟାବା ପୃଥିବୀ ସୁଚେତୁନା । ୩ ।

ଋଗ୍ ୫।୫୧।୧୧

ଓଁ ସ୍ୱସ୍ତୟେ ବାୟୁମୁପବବାମହୈ, ସୋମଂ ସ୍ୱସ୍ତି ଭୁବନସ୍ୟ ଯସ୍ପତିଃ । ବୃହସ୍ପତିଂ ସର୍ବଗଣଂ ସ୍ୱସ୍ତୟେ ସ୍ୱସ୍ତୟ ଆଦିତ୍ୟାସୋ ଭବନ୍ତୁନଃ । ୪ ।

ଋଗ୍ ୫।୫୧।୧୨

ବିଶ୍ୱେ ଦେବା ନୋ ଅଦ୍ୟା ସ୍ୱସ୍ତୟେ ବୈଶ୍ୱାନରୋ ବସୁରଗ୍ନିଃ ସ୍ୱସ୍ତୟେ । ଦେବା ଅବନ୍ତୃଭବଃ ସ୍ୱସ୍ତୟେ ସ୍ୱସ୍ତିନୋରୁଦ୍ରଃ ପାତ୍ୱଂହସଃ । ୫ ।

ଋଗ୍ ୫।୫୧।୧୩

ଓଁ ସ୍ୱସ୍ତି ମିତ୍ରା ବରୁଣା ସ୍ୱସ୍ତି ପଥ୍ୟେରେବତି । ସ୍ୱସ୍ତି ନ ଇନ୍ଦ୍ରଶ୍ଚାଗ୍ନିଶ୍ଚ ସ୍ୱସ୍ତି ନୋ ଅଦିତେ କୃଧି । ୬ ।

ଋଗ ୫।୫୧।୧୪

ଓଁ ସ୍ୱସ୍ତି ପନ୍ଥାମନୁ ଚରେମ ସୂର୍ଯ୍ୟା, ଚନ୍ଦ୍ରମସାବିବ । ପୁନର୍ଦଦତାଘ୍ନତା ଜାନତା ସଂଗମେମହି । ୭ ।

ଋଗ ୫।୫୧।୧୫

ଓଁ ଯେ ଦେବାନାଂ ଯଜ୍ଞିୟା ଯଜ୍ଞିୟାନାଂ, ମନୋର୍ଯଜତ୍ରା ଅମୃତା ଋତଜ୍ଞାଃ । ତେ ନୋ ରାସନ୍ତାମୁରୁଗାୟମଦ୍ୟ-ଯୂୟଂ ପାତ ସ୍ୱସ୍ତିଭିଃ ସଦା ନଃ । ୮ ।

ଋଗ ୭।୩୫।୧୫

ଓଁ ଯେଭ୍ୟୋମାତା ମଧୁମତ୍ ପିନ୍ୱତେ ପୟଃ, ପୀୟୂଷଂ ଦ୍ୟୌରଦିତିରଦ୍ରିବର୍ହାଃ । ଉକ୍‌ଥଶୁଷ୍ମାନ୍ ବୃଷଭରାନ-ସ୍ୱପ୍ନସସ୍ତାଁ ଆଦିତ୍ୟାଁ ଅନୁ ମଦା ସ୍ୱସ୍ତୟେ ॥ ୯ ॥

ଋଗ୍‌ବେଦ ୧୦।୬୩।୩

ଓଁ ନୃଚକ୍ଷସୋ ଅନିମିଷନ୍ତୋ ଅର୍ହଣା, ବୃହଦ୍ଦେବାସୋ ଅମୃତତ୍ୱ ମାନଶୁଃ । ଜ୍ୟୋତୀରଥା ଅହିମାୟା ଅନାଗସୋ, ଦିବୋ ବର୍ଷ୍ମାଣଂ ବସତେ ସ୍ୱସ୍ତୟେ ॥୧୦॥

ଋଗ୍ ୧୦।୬୩।୪

ଓଁ ସମ୍ରାଜୋ ଯେ ସୁବୃଧୋ ଯଜ୍ଞମାୟୟୁରପରିହ୍ବୃତା ଦଧିରେ ଦିବିକ୍ଷୟମ୍ । ତାଁ ଆ ବିବାସ ନମସା ସୁବୃକ୍ତିଭିର୍ମହୋ ଆଦିତ୍ୟାଁ ଅଦିତିଂ ସ୍ୱସ୍ତୟେ ॥ ୧୧ ।

ଋଗ୍ ୧୦।୬୩।୫

ଓଁ କୋ ବଃ ସ୍ତୋମଂ ରାଧତି ଯଂ ଜୁଜୋଷଥ ବିଶ୍ୱେ-ଦେବାସୋ ମନୁଷୋ ଯତିଷ୍ଠନ । କୋ ବୋଽଧ୍ୱରଂ ତୁବିଜାତା ଅରଂ କରଦ୍ୟୋ ନଃ ପର୍ଷଦତ୍ୟଂ ହଃ ସ୍ୱସ୍ତୟେ ॥ ୧୨ ॥

ଓଁ ଯେଭ୍ୟୋ ହୋତ୍ରାଂ ପ୍ରଥମାମାୟେଜେ ମନୁଃ ସମିଦ୍ଧାଗ୍ନିର୍ମନସା ସପ୍ତ ହୋତୃଭିଃ । ତ ଆଦିତ୍ୟା ଅଭୟଂ ଶର୍ମ ଯଚ୍ଛତ ସୁଗା ନଃ କର୍ତ୍ତ ସୁପଥା ସ୍ୱସ୍ତୟେ ॥ ୧୩ ॥

ଓଁ ଯ ଈଶେରେ ଭୁବନସ୍ୟ ପ୍ରଚେତସୋ ବିଶ୍ୱସ୍ୟ ସ୍ଥାତୁର୍ଜଗତଶ୍ଚ ମନ୍ତବଃ । ତେ ନଃ କୃତାଦକୃତାଦେନସସ୍ପର୍ଯ୍ୟଦ୍ୟା ଦେବାସଃ ପିପୃତା ସ୍ୱସ୍ତୟେ ॥ ୧୪ ।

ଓଁ ଭରେଷ୍ୱିନ୍ଦ୍ରଂ ସୁହବଂ ହବାମହେଂଽହୋମୁଚଂ ସୁକୃତଂ ଦୈବ୍ୟଂ ଜନମ୍ । ଅଗ୍ନିଂ ମିତ୍ରଂ ବରୁଣଂ ସାତୟେ ଭଗଂ ଦ୍ୟାବାପୃଥିବୀ ମରୁତ ସ୍ୱସ୍ତୟେ ॥ ୧୫ ॥

ଓଁ ସୁତ୍ରାମାଣଂ ପୃଥିବୀଂ ଦ୍ୟାମନେହସଂ ସୁଶର୍ମାଣମଦିତିଂ ସୁପ୍ରଣୀତିମ୍ । ଦୈବୀଂ ନାବଂ ସ୍ୱରିତ୍ରାମନାଗସମସ୍ରବନ୍ତୀମା ରୁହେମା ସ୍ୱସ୍ତୟେ ॥ ୧୬ ॥

ଓଁ ବିଶ୍ୱେ ଯଜତ୍ରା ଅଧି ବୋଚତୋତୟେ ତ୍ରାୟଧ୍ୱଂ ନୋ ଦୁରେବାୟା ଅଭିହ୍ରୁତଃ । ସତ୍ୟୟା ବୋ ଦେବହୂତ୍ୟା ହୁବେମ ଶୃଣ୍ୱତୋ ଦେବା ଅବସେ ସ୍ୱସ୍ତୟେ ୧୭॥

ଓଁ ଅପାମୀବାମପ ବିଶ୍ୱାମନାହୁତିମପାରାତିଂ ଦୁର୍ବିଦତ୍ରାମଘାୟତଃ । ଆରେ ଦେବା ଦ୍ୱେଷୋ ଅସ୍ମଦ୍ୟୁୟୋତନୋରୁ ଣଃ ଶର୍ମ ଯଚ୍ଛତା ସ୍ୱସ୍ତୟେ ॥ ୧୮ ॥

ଓଁ ଅରିଷ୍ଟଃ ସ ମର୍ତ୍ତୋ ବିଶ୍ୱ ଏଧତେ ପ୍ର ପ୍ରଜାଭିର୍ଜାୟତେ ଧର୍ମଣସ୍ପରି । ଯମାଦିତ୍ୟାସୋ ନୟଥା ସୁନୀତିଭିରତି ବିଶ୍ୱାନି ଦୁରିତା ସ୍ୱସ୍ତୟେ ॥ ୧୯ ॥

ଓଁ ଯଂ ଦେବାସୋଽବଥ ବାଜସତ୍ତୌ ଯଂ ଶୂରସାତା ମରୁତୋ ହିତେ ଧନେ । ପ୍ରାତର୍ଯାବାଣଂ ରଥମିନ୍ଦ୍ର ସାନସିମରିଷ୍ୟନ୍ତମା ରୁହେମ ସ୍ୱସ୍ତୟେ ॥ ୨୦ ॥

ଓଁ ସ୍ୱସ୍ତି ନଃ ପଥ୍ୟାସୁ ଧନ୍ୱସ୍ୱ ସ୍ୱସ୍ତ୍ୟଽପ୍ସୁ ବୃଜନେ ସ୍ୱର୍ବତି । ସ୍ୱସ୍ତି ନଃ ପୁତ୍ରକୃଥେଷୁ ଯୋନିଷୁ

ସ୍ୱସ୍ତି ରାୟେ ମରୁତୋ ଦଧାତନ ॥ ୨୧ ॥

ସ୍ୱସ୍ତିରିଦ୍ଧି ପ୍ରପଥେ ଶ୍ରେଷ୍ଠା ରେକ୍ଣସ୍ୱସ୍ତ୍ୟଭି ଯା ବାମମେତି । ସା ନୋ ଅମା ସୋ ଅରଣେ ନି ପାତୁ ସ୍ୱାବେଶା ଭବତୁ ଦେବଗୋପା ॥ ୨୨ ॥

ଋଗ୍ ମଂ ୧୦ । ସୂ ୬୩ । ମଂ ୭—୧୬

ଇଷେ ତ୍ୱୋର୍ଜେ ତ୍ୱା ବାୟବ ସ୍ଥ ଦେବୋ ବଃ ସବିତା ପ୍ରାର୍ପୟତୁ ଶ୍ରେଷ୍ଠତମାୟ କର୍ମଣ ଆପ୍ୟାୟଧ୍ୱମଘ୍ନ୍ୟା ଇନ୍ଦ୍ରାୟ ଭାଗଂ ପ୍ରଜାବତୀରନମୀବା ଅୟକ୍ଷ୍ମା ମା ବ ସ୍ତେନ ଈଶତ ମାଘଶଁସୋ ଧ୍ରୁବା ଅସ୍ମିନ୍ ଗୋପତୌ ସ୍ୟାତ ବହ୍ୱୀର୍ଯଜମାନସ୍ୟ ପଶୂନ୍ ପାହି ॥ ୨୩ ॥

ଯଜୁ ଅ ୧ । ମଂ ୧

ଆ ନୋ ଭଦ୍ରାଃ କ୍ରତବୋ ଯନ୍ତୁ ବିଶ୍ୱତୋଽଦବ୍ଧାସୋଽ-ଅପରୀତାସ ଉଦ୍ଭିଦଃ । ଦେବା ନୋ ଯଥା ସଦମିଦ୍ ବୃଧେ-ଽଅସନ୍ନପ୍ରାୟୁବୋ ରକ୍ଷିତାରୋ ଦିବେଦିବେ ॥ ୨୪ ॥

ଦେବାନାଂ ଭଦ୍ରା ସୁମତିରୃଜୁୟତାଂ ଦେବାନାଂ ରାତିରଭି
ନୋ ନିବର୍ତ୍ତତାମ୍ । ଦେବାନାଂ ସଖ୍ୟମୁପସେଦିମା
ବୟଂ ଦେବା ନ ଆୟୁଃ ପ୍ରତିରନ୍ତୁ ଜୀବସେ ॥ ୨୫ ॥

ତମୀଶାନଂ ଜଗତସ୍ତସ୍ଥୁଷସ୍ପତିଂ ଧିୟଞ୍ଜିନ୍ୱମବସେ
ହୂମହେ ବୟମ୍ । ପୂଷା ନୋ ଯଥା ବେଦସାମସଦ୍‌ବୃଧେ
ରକ୍ଷିତାପାୟୁରଦବ୍ଧଃ ସ୍ୱସ୍ତୟେ ॥ ୨୬ ॥

ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବା ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ
ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ
ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ ॥ ୨୭ ॥

ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା ଭଦ୍ରଂ ପଶ୍ୟେମାକ୍ଷଭି-
ର୍ୟଜତ୍ରାଃ । ସ୍ଥିରୈରଙ୍ଗୈସ୍ତୁଷ୍ଟୁବାଂସସ୍ତନୂଭିର୍ବ୍ୟଶେମହି
ଦେବହିତଂ ଯଦାୟୁଃ ॥ ୨୮ ॥

ଯଜୁ ଅ ୨୫ । ମଂ ୧୪—୧୯।୨୧

ଅଗ୍ନ ଆ ଯାହି ବୀତୟେ ଗୃଣାନୋ ହବ୍ୟଦାତୟେ ।
ନି ହୋତା ସତ୍ସି ବର୍ହିଷି ॥ ୨୯ ॥ (ସାମବେଦ ୧।୧।୧)

ତ୍ୱମଗ୍ନେ ଯଜ୍ଞାନାଂ ହୋତା ବିଶ୍ୱେଷାଂ ହିତଃ ।
ଦେବେଭିର୍ମାନୁଷେ ଜନେ ॥ ୩୦ ॥ (ସାମବେଦ ୧।୧।୨)

ଯେ ତ୍ରିଷପ୍ତାଃ ପରିୟନ୍ତି ବିଶ୍ୱା ରୂପାଣି ବିଭ୍ରତଃ ।
ବାଚସ୍ପତିର୍ବଳା ତେଷାଂ ତନ୍ୱୋ ଅଦ୍ୟ ଦଧାତୁ ମେ ॥୩୧॥

ଅଥର୍ବ ୧।୧।୧

ଇତି ସ୍ୱସ୍ତି ବାଚନମ୍ ।

—ଃ୦ଃ—

## ଅଥ ଶାନ୍ତିକରଣମ୍

ଓଁ ଶନ୍ନ ଇନ୍ଦ୍ରାଗ୍ନୀ ଭବତାମବୋଭିଃ, ଶନ୍ନ ଇନ୍ଦ୍ରାବରୁଣା ରାତହବ୍ୟା । ଶମିନ୍ଦ୍ରାସୋମା ସୁବିତାୟ ଶଂ ଯୋଃ, ଶନ୍ନ ଇନ୍ଦ୍ରାପୂଷଣା ବାଜସାତୌ ॥ ୧ ॥

ଓଁ ଶନ୍ନୋ ଭଗଃ ଶମୁ ନଃ ଶଂସୋ ଅସ୍ତୁ, ଶନ୍ନଃ ପୁରନ୍ଧିଃ ଶମୁ ସନ୍ତୁ ରାୟଃ । ଶନ୍ନଃ ସତ୍ୟସ୍ୟ ସୁଯମସ୍ୟ ଶଂସଃ ଶନ୍ନୋ ଅର୍ଯ୍ୟମା ପୁରୁଜାତୋ ଅସ୍ତୁ ॥ ୨ ॥

ଓଁ ଶଂ ନୋ ଧାତା ଶମୁ ଧର୍ତ୍ତା ନୋ ଅସ୍ତୁ, ଶନ୍ନ ଉରୂଚୀ ଭବତୁ ସ୍ୱଧାଭିଃ । ଶଂ ରୋଦସୀ ବୃହତୀ ଶଂ ନୋ ଅଦ୍ରିଃ, ଶଂ ନୋ ଦେବାନାଂ ସୁହବାନି ସନ୍ତୁ ॥ ୩ ॥

ଓଁ ଶଂ ନୋ ଅଗ୍ନିର୍ଜ୍ୟୋତିରନୀକୋ ଅସ୍ତୁ, ଶନ୍ନୋ ମିତ୍ରା ବରୁଣାବଶ୍ୱିନା ଶମ୍ । ଶଂ ନଃ ସୁକୃତାଂ ସୁକୃତାନି ସନ୍ତୁ ଶଂ ନ ଇଷିରୋ ଅଭିବାତୁ ବାତଃ ॥ ୪ ॥

ଓଁ ଶଂ ନୋ ଦ୍ୟାବାପୃଥିବୀ ପୂର୍ବହୂତୌ, ଶମନ୍ତରିକ୍ଷଂ ଦୃଶୟେ ନୋ ଅସ୍ତୁ । ଶଂ ନ ଓଷଧୀର୍ବନିନୋ ଭବନ୍ତୁ ଶଂ ନୋ ରଜସସ୍ପତିରସ୍ତୁ ଜିଷ୍ଣୁଃ ॥ ୫ ॥

ଓଁ ଶନ୍ନ ଇନ୍ଦ୍ରୋ ବସୁଭିର୍ଦେବୋ ଅସ୍ତୁ, ଶମାଦିତ୍ୟେଭି-ର୍ବରୁଣଃ ସୁଶଂସଃ । ଶଂ ନୋ ରୁଦ୍ରୋ ରୁଦ୍ରେଭିର୍ଜଲାଷଃ ଶଂ ନସ୍ତ୍ୱଷ୍ଟା ଗ୍ନାଭିରିହ ଶୃଣୋତୁ ॥ ୬ ॥

ଓଁ ଶଂ ନଃ ସୋମୋ ଭବତୁ ବ୍ରହ୍ମ ଶଂ ନଃ, ଶଂ ନୋ ଗ୍ରାବାଣଃ ଶମୁ ସନ୍ତୁ ଯଜ୍ଞାଃ । ଶନ୍ନଃ ସ୍ୱରୂଣାଂ ମିତୟୋ ଭବନ୍ତୁ, ଶଂ ନଃ ପ୍ରସ୍ୱଃ ଶମ୍ୱସ୍ତୁ ବେଦିଃ ॥ ୭ ॥

ଓଁ ଶଂ ନଃ ସୂର୍ଯ୍ୟ ଉରୁଚକ୍ଷା ଉଦେତୁ, ଶଂ ନଶ୍ଚତସ୍ରଃ ପ୍ରଦିଶା ଭବନ୍ତୁ । ଶଂ ନଃ ପର୍ବତା ଧ୍ରୁବୟୋ ଭବନ୍ତୁ ଶଂ ନଃ ସିନ୍ଧବଃ ଶମୁ ସନ୍ତ୍ୱାପଃ ॥ ୮ ॥

ଓଁ ଶଂ ନୋ ଅଦିତିର୍ଭବତୁ ବ୍ରତେଭିଃ, ଶଂ ନୋ ଭବନ୍ତୁ ମରୁତଃ ସ୍ୱର୍କାଃ । ଶଂ ନୋ ବିଷ୍ଣୁଃ ଶମୁ ପୂଷା ନୋ ଅସ୍ତୁ ଶଂ ନୋ ଭବିତ୍ରଂ ଶମ୍ୱସ୍ତୁ ବାୟୁଃ ॥ ୯ ॥

ଓଁ ଶନ୍ନୋ ଦେବଃ ସବିତା ତ୍ରାୟମାଣଃ, ଶଂ ନୋ ଭବନ୍ତୁଷସୋ ବିଭାତୀଃ । ଶଂ ନଃ ପର୍ଜନ୍ୟୋ ଭବତୁ ପ୍ରଜାଭ୍ୟଃ, ଶଂ ନଃ କ୍ଷେତ୍ରସ୍ୟ ପତିରସ୍ତୁ ଶମ୍ଭୁଃ॥୧୦॥

ଶଂ ନୋ ଦେବା ବିଶ୍ୱଦେବା ଭବନ୍ତୁ ,ଶନ୍ନୋ ସରସ୍ୱତୀ ସହ ଧୀଭିରସ୍ତୁ । ଶମଭିଷାଚଃ ଶମୁ ରାତିଷାଚଃ ଶଂ ନୋ ଦିବ୍ୟାଃ ପାର୍ଥିବାଃ ଶଂ ନୋ ଅପ୍ୟାଃ ॥ ୧୧ ॥

ଓଁ ଶଂ ନଃ ସତ୍ୟସ୍ୟ ପତୟୋ ଭବନ୍ତୁ, ଶନ୍ନୋ ଅର୍ବନ୍ତଃ ଶମୁ ସନ୍ତୁ ଗାବଃ । ଶଂ ନ ଋଭବଃ ସୁକୃତଃ ସୁହସ୍ତାଃ ଶଂ ନୋ ଭବନ୍ତୁ ପିତରୋ ହବେଷୁ ॥ ୧୨ ॥

ଓଁ ଶଂ ନୋ ଅଜ ଏକପାଦ୍ ଦେବୋ ଅସ୍ତୁ, ଶଂ ନୋ-ଽହିର୍ବୁଧ୍ନ୍ୟଃ ଶଂ ସମୁଦ୍ରଃ । ଶଂ ନୋ ଅପାଂ ନପାତ୍ପେରୁରସ୍ତୁ, ଶଂ ନଃ ପୃଶ୍ନିର୍ଭବତୁ ଦେବଗୋପା ॥ ୧୩ ॥

ଋଗ୍ ମଂ ୭ । ସୂ ୩୫ । ମଂ ୧—୧୩

ଓଁ ଇନ୍ଦ୍ରୋ ବିଶ୍ୱସ୍ୟ ରାଜତି ।
ଶଂ ନୋଽଅସ୍ତୁ ଦ୍ୱିପଦେ ଶଂ ଚତୁଷ୍ପଦେ ॥ ୧୪ ॥

ଶଂ ନୋ ବାତଃ ପବତାଂ ଶଂ ନସ୍ତପତୁ ସୂର୍ଯ୍ୟଃ ।
ଶଂ ନଃ କନିକ୍ରଦଦ୍ଦେବ ପର୍ଜନ୍ୟୋଽଅଭି ବର୍ଷତୁ ॥୧୫॥

ଅହାନି ଶଂ ଭବନ୍ତୁ ନଃ ଶଁ ରାତ୍ରୀଃ ପ୍ରତି ଧୀୟତାମ୍ । ଶଂ ନ ଇନ୍ଦ୍ରାଗ୍ନୀ ଭବତାମବୋଭିଃ ଶଂ ନ ଇନ୍ଦ୍ରାବରୁଣା ରାତହବ୍ୟା । ଶନ୍ନ ଇନ୍ଦ୍ରାପୂଷଣା ବାଜସାତୌ ଶମିନ୍ଦ୍ରା-ସୋମା ସୁବିତାୟ ଶଂ ୟୋଃ ॥ ୧୬ ॥

ଶଂ ନୋ ଦେବୀ ରଭିଷ୍ଟୟ ଆପୋ ଭବନ୍ତୁ ପୀତୟେ ଶଂ ୟୋ ରଭି ସ୍ରବନ୍ତୁ ନଃ ॥ ୧୭ ॥

ଓଁ ଦ୍ୟୌଃ ଶାନ୍ତି ରନ୍ତରିକ୍ଷଁ ଶାନ୍ତିଃ ପୃଥିବୀ ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିଃ । ବନସ୍ପତୟଃ ଶାନ୍ତିର୍ବିଶ୍ୱେ ଦେବାଃ ଶାନ୍ତିର୍ବ୍ରହ୍ମ ଶାନ୍ତିଃ ସର୍ବମ୍ ଶାନ୍ତିଃ ଶାନ୍ତିରେବ ଶାନ୍ତିଃ ସା ମା ଶାନ୍ତିରେଧି ॥ ୧୮ ॥

ଓଁ ତଚ୍ଚକ୍ଷୁର୍ଦ୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ । ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଁ ଶୃଣୁୟାମ ଶରଦଃ ଶତଂ ପ୍ରବ୍ରବାମ ଶରଦଃ ଶତମଦୀନାଃ ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ॥ ୧୯ ॥

ଯଜୁ ଅ ୩୬ । ମଂ ୮।୧୦।୧୧।୧୨।୧୭।୨୪

ଓଁ ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବମ୍, ତଦୁ ସୁପ୍ତସ୍ୟ ତଥୈବୈତି । ଦୂରଂଗମଂ ଜ୍ୟୋତିଷାଂ ଜ୍ୟୋତିରେକମ୍- ତନ୍ମେ ମନଃ ଶ୍ରିବସଂକଳ୍ପମସ୍ତୁ ॥ ୨୦ ॥

ଓଁ ଯେନ କର୍ମାଣ୍ୟପସୋ ମନୀଷିଣୋ ଯଜ୍ଞେ କୃଣ୍ୱନ୍ତି ବିଦଥେଷୁ ଧୀରାଃ । ଯଦପୂର୍ବଂ ଯକ୍ଷମନ୍ତଃ ପ୍ରଜାନାଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ।୨୧।

ଓଁ ଯତ୍ପ୍ରଜ୍ଞାନମୁତ ଚେତୋ ଧୃତିଶ୍ଚ ଯଜ୍ଜ୍ୟୋତିରନ୍ତର- ମୃତଂ ପ୍ରଜାସୁ । ଯସ୍ମାନ୍ନଽଋତେ କିଞ୍ଚନ କର୍ମ କ୍ରିୟତେ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୨୨ ॥

ଓଁ ଯେନେଦଂ ଭୂତଂ ଭୁବନଂ, ଭବିଷ୍ୟତ୍ପରିଗୃହୀତମ- ମୃତେନ ସର୍ବମ୍ । ଯେନ ଯଜ୍ଞସ୍ତାୟତେ ସପ୍ତହୋତା ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୨୩ ॥

ଓଁ ଯସ୍ମିନ୍ନୃଚଃ ସାମ ଯଜୁଂଷି ଯସ୍ମିନ୍ ପ୍ରତିଷ୍ଠିତା ରଥନାଭାବିବାରାଃ । ଯସ୍ମିଁଶ୍ଚିତ୍ତଂ ସର୍ବମୋତଂ ପ୍ରଜାନାମ୍ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ।୨୪।

ଓଁ ସୁଷାରଥିରଶ୍ୱାନିବ ଯନ୍ମନୁଷ୍ୟାନ୍ନେନୀୟତେଽଭୀ- ଶୁଭିର୍ବାଜିନଽଇବ । ହୃତ୍ପ୍ରତିଷ୍ଠଂ ଯଦଜିରଂ ଜବିଷ୍ଠଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୨୫ ॥

ଯଜୁ ଅଃ ୩୪ । ମଂ ୧—୬

ଓଁ ସ ନଃ ପବସ୍ୱ ଶଂ ଗବେ ଶଂ ଜନାୟ ଶମର୍ବତେ ।
ଶଂ ରାଜନ୍ନୋଷଧୀଭ୍ୟଃ ।୬୭ ।

ସାମ ଉତ୍ତରାର୍ଚ୍ଚିକେ ପ୍ରପା: ୧ । ମଂ ୩ ।

ଓଁ ଅଭୟଂ ନଃ କରତ୍ୟନ୍ତରିକ୍ଷମଭୟଂ ଦ୍ୟାବାପୃଥିବୀ ଉଭେ ଇମେ । ଅଭୟଂ ପଶ୍ଚାଦଭୟଂ ପୁରସ୍ତାଦୁତ୍ତରା-ଦଧରାଦଭୟଂ ନୋ ଅସ୍ତୁ ।୬୭।

ଓଁ ଅଭୟଂ ମିତ୍ରାଦଭୟମମିତ୍ରାଦଭୟଂ ଜ୍ଞାତାଦଭୟଂ ପରୋକ୍ଷାତ୍ । ଅଭୟଂ ନକ୍ତମଭୟଂ ଦିବା ନଃ ସର୍ବା ଆଶା ମମ ମିତ୍ରଂ ଭବନ୍ତୁ ।୬୮।

ଅଥର୍ବ କା: ୧୯ । ସୂ ୧୫ । ମଂ ୫,୬

ଇତି ଶାନ୍ତିକରଣମ୍

—ঃ ০ ঃ—

# ଅଥ ସାମାନ୍ୟପ୍ରକରଣମ୍

ନିମ୍ନଲିଖିତ କ୍ରିୟା ସମସ୍ତ ସଂସ୍କାରରେ କରିବାକୁ ହେବ । ପରନ୍ତୁ ଯେଉଁଠାରେ ବିଶେଷ କିଛି କରଣୀୟ ଥିବ, ସେଠାରେ ନିର୍ଦ୍ଦେଶ ଦିଆଯିବ ଯେ, ଅମୁକ ସ୍ଥଳେ ଅମୁକ କର୍ମ କରିବାକୁ ହେବ ଏବଂ ଏତିକି ବେଶୀ କରିବାକୁ ହେବ । ନିର୍ଦ୍ଦେଶଗୁଡ଼ିକ ଯଥାସ୍ଥାନରେ ଲିଖିତ ଥିବ ।

## ଯଜ୍ଞଦେଶ

ଯେଉଁ ସ୍ଥାନରେ ମୃତ୍ତିକା ଓ ବାୟୁ ଶୁଦ୍ଧ ହୋଇଥିବ । କୌଣସି ପ୍ରକାର ଉପଦ୍ରବ ନଥିବ, ସେହି ପବିତ୍ରସ୍ଥାନ ହିଁ ଯଜ୍ଞଦେଶ ହେବ ।

## ଯଜ୍ଞଶାଳା

ଏହାକୁ ଯଜ୍ଞମଣ୍ଡପ ବି କୁହାଯାଏ । ଏହା ଅଧିକତମ ୧୬ (ଷୋହଳ) ହାତ ଏବଂ ନ୍ୟୁନତମ ୮ (ଆଠ) ହାତ ସମଚତୁର୍ଭୁଜ ଓ ସମଚତୁଷ୍କୋଣ ହେବ । ଯଦି ଭୂମି ଅଶୁଦ୍ଧ ଥିବ, ତେବେ ଯଜ୍ଞଶାଳାର ମୃତ୍ତିକା ଓ ଯଜ୍ଞକୁଣ୍ଡ ଯେତେ ଗଭୀର କରାହେବ, ସେତେ ମାଟି ଦୁଇହାତ ଯାଏଁ ଖୋଳି ଅଶୁଦ୍ଧ ମୃତ୍ତିକା ବାହାର କରି ଶୁଦ୍ଧ ମୃତ୍ତିକା ଭରିବାକୁ ହେବ । ଯଜ୍ଞ ମଣ୍ଡପ ୧୬ (ଷୋହଳ) ହାତ ସମଚତୁଷ୍କୋଣ ହେବ, ତେବେ ଚତୁଃଦିଗରେ କୋଡ଼ିଏଟି ଖୁଣ୍ଟି ଏବଂ ଆଠହାତ ହେଲେ, ବାରଟି ଖୁଣ୍ଟି ପୋତି ତା ଉପରେ ଛପର କରିବାକୁ ହେବ । ସେହି ଛପର ବା ଛାଉଣୀର ଛାତ ଯଜ୍ଞ-କୁଣ୍ଡର ମେଖଳାଠାରୁ ଅବଶ୍ୟ ଦଶହାତ ଉପରେ ରହିବ । ଯଜ୍ଞ-ଶାଳାର ଚତୁଃଦିଗରେ ଚାରିଟିଦ୍ୱାର ରହିବ ଏବଂ ଚତୁଃଦିଗରେ ଧ୍ୱଜା

ପତାକା ଓ ପଲ୍ଲବାଦି ବନ୍ଧାଯିବ । ଏହାକୁ କୁଙ୍କୁମ, ହରିଦ୍ରା ଓ ମଇଦାର (ମୁରଜ) ରେଖାଦ୍ୱାରା ଉତ୍ତମରୂପେ ଭୂଷିତ କରିବ । ମନୁଷ୍ୟମାନେ ସମସ୍ତ ମାଙ୍ଗଳିକ କାର୍ଯ୍ୟରେ ନିଜର ଓ ଅନ୍ୟର କଲ୍ୟାଣ ନିମିତ୍ତ ଯଜ୍ଞଦ୍ୱାରା ଈଶ୍ୱରୋପାସନା କରିବେ । ଏଥିପାଇଁ ନିମ୍ନଲିଖିତ ସୁଗନ୍ଧ ଦ୍ରବ୍ୟାଦି ଯଜ୍ଞକୁଣ୍ଡରେ ଆହୁତି ଦେବେ ।

## ଯଜ୍ଞକୁଣ୍ଡର ପରିମାଣ

ଯଦି ଲକ୍ଷେ ଆହୁତି ଦେବାକୁ ହୁଏ, ତେବେ କୁଣ୍ଡର ଉପରି ଭାଗରେ ପ୍ରତିଦିଗରେ ଚାରିହାତ ହିସାବରେ ସମଚତୁର୍ଭୁଜ ଓ ସମଚତୁଷ୍କୋଣ, ଗଭୀରତା ମଧ୍ୟ ଚାରିହାତ, ସେହି ଅନୁସାରେ ତଳ-ଦେଶର ପରିମାଣ ଅର୍ଥାତ୍ ନିମ୍ନଭାଗେ ପ୍ରତିଦିଗରେ ଏକହାତ ହିସାବରେ ସମଚତୁଷ୍କୋଣ ଲମ୍ବା ଚୌଡ଼ା ହେବ । ଏହିଭଳି ଯେଉଁ ପରିମାଣରେ ଆହୁତି ଦିଆଯିବ, ସେଇ ଅନୁସାରେ କୁଣ୍ଡ ଗଭୀର ଓ ଚଉଡ଼ା ହେବ । କିନ୍ତୁ ଆଉ ଅଧିକ ଆହୁତି ଦେବାକୁ ହେଲେ, ଦୁଇ ଦୁଇହାତ ବଢ଼ାଇବାକୁ ହେବ ଅର୍ଥାତ୍ ଦୁଇଲକ୍ଷ ଆହୁତିରେ ଛଅହାତ ପରିମାଣ ଚଉଡ଼ା ଓ ସମ ଚତୁର୍ଭୁଜ କୁଣ୍ଡ ନିର୍ମାଣ କରିବାକୁ ହେବ । ପଚିଶ ହଜାର ଆହୁତି ଦେବାକୁ ହେଲେ, ଦୁଇ ହାତ ଗଭୀର ଓ ଚଉଡ଼ା ସମଚତୁର୍ଭୁଜ ଏବଂ ନିମ୍ନରେ ଅଧହାତ ହେବ । ପାଞ୍ଚହଜାର ଆହୁତି ପର୍ଯ୍ୟନ୍ତ ଦେଢ଼ହାତ ଗଭୀର ଓ ଚଉଡ଼ା ସମଚତୁର୍ଭୁଜ ଏବଂ ନିମ୍ନରେ ସାଢ଼େ ଆଠଆଙ୍ଗୁଳ ହେବ । ବିଶେଷ ଭାବରେ ଘୃତାହୁତି ଦେଲେ କୁଣ୍ଡର ପରିମାଣ ଏହିପରି ହେବ । ଯଦି ଏଥିରେ ୨୫୦୦ (ଅଢ଼େଇ ହଜାର) ଆହୁତି ମୋହନଭୋଗ ଓ ଖିରିରେ ଏବଂ ୨୫୦୦ (ଅଢ଼େଇ ହଜାର) ଆହୁତି ଘିଅରେ ଦେବାକୁ ହୁଏ, ତେବେ ଦୁଇହାତ ଗଭୀର ଓ ଚଉଡ଼ା ସମଚତୁର୍ଭୁଜ ଏବଂ

ତଳେ ଅଧହାତ, ଏଇଭଳି କୁଣ୍ଡ କରିବ । ଘିଅର ଏକହଜାର ଆହୁତି ଦେବାକୁ ହେଲେ ବି ଏକହାତର ଏକ ଚତୁର୍ଥାଂଶ (ଅଧ-ବିଘଣ୍ଡ) ଗଭୀର ଓ ଚଉଡ଼ା ସମଚତୁର୍ଭୂଜ ଏବଂ ନିମ୍ନରେ ଅଧବିଘଣ୍ଡ —ଏହାଠାରୁ କମ୍ କରିବ ନାହିଁ । ଏଇ ସମସ୍ତ କୁଣ୍ଡର ଚାରିଦିଗରେ ୧୫ 'ପଦର' ଆଙ୍ଗୁଳି ପରିମିତ ମେଖଳା ଅର୍ଥାତ୍ ପାଞ୍ଚ ପାଞ୍ଚ ଆଙ୍ଗୁଳି ଉଚ୍ଚ ତିନୋଟି ମେଖଳା ପ୍ରସ୍ତୁତ କରିବ । ଏଇ ତିନୋଟି ମେଖଳା ଯଜ୍ଞଶାଳାର ଭୂମିଦେଶଠାରୁ ଉଚ୍ଚରେ ବା ଉପରେ ରହିବ । ପ୍ରଥମଟି ପାଞ୍ଚ ଆଙ୍ଗୁଳି ଉଚ୍ଚ ଓ ପାଞ୍ଚଆଙ୍ଗୁଳି ଚଉଡ଼ା, ଏଇପରି ଦ୍ୱିତୀୟ ମେଖଳା ଓ ତୃତୀୟ ମେଖଳା ପ୍ରସ୍ତୁତ କରିବ ।

## ଯଜ୍ଞ ସମିଧା

ପଳାଶ, ଶମୀ, ଅଶ୍ୱତ୍ଥ, ବଟ, ଯଜ୍ଞଡୁମ୍ବୁରି, ଆମ୍ବ ଓ ବିଲ୍ୱାଦି କାଷ୍ଠ ଯଜ୍ଞକୁଣ୍ଡର ପରିମାଣ ଅନୁସାରେ ଶ୍ରେଷ୍ଠଦଣ୍ଡକରି କାଟିନେବ । କିନ୍ତୁ ଏ ସବୁ ସମିଧା, କାଠଦଣ୍ଡ, ମଳଯୁକ୍ତ ସ୍ଥାନୋତ୍ପନ୍ନ ଏବଂ ଅପବିତ୍ର ପଦାର୍ଥାଦି ଦ୍ୱାରା ଯେପରି ଦୂଷିତ ନ ହୋଇଥାଏ, ତାହା ଦେଖିବାକୁ ହେବ ଏବଂ ସମିଧାଗୁଡ଼ିକ କୁଣ୍ଡର ଚାରିପଟେ ଓ ମଧ୍ୟ ଭାଗରେ ପରିମାଣ ଅନୁସାରେ ସମାନ କରି ଚାରିଆଡେ ସଜାଇବ ।

## ହୋମର ଦ୍ରବ୍ୟ ଚାରିପ୍ରକାର

(ପ୍ରଥମ—ସୁଗନ୍ଧି) କସ୍ତୁରୀ, କେଶର, ଅଗୁରୁ, ତଗର, ଶ୍ୱେତଚନ୍ଦନ, ଅଳେଇଚ, ଜାଇଫଳ ଓ ଜାୟିତ୍ରୀ ଆଦି । (ଦ୍ୱିତୀୟ —ପୁଷ୍ଟିକାରକ) ଘୃତ, ଦୁଗ୍ଧ, ଫଳ, କନ୍ଦ, ଅନ୍ନ, ତଣ୍ଡୁଳ, ଗୋଧୂମ ଓ ବିରି । (ତୃତୀୟ—ମିଷ୍ଟ) ଶର୍କରା, ମଧୁ, କିସ୍‌ମିସ୍ ଆଦି । (ଚତୁର୍ଥ— ରୋଗନାଶକ) ସୋମଲତା ଅର୍ଥାତ୍ ଗୁଳୁଞ୍ଚାଦି ଔଷଧି ।

## ସ୍ଥାଲୀପାକ

ନିମ୍ନଲିଖିତ ବିଧି ଅନୁସାରେ ଅନ୍ନ, ଖେଚେଡ଼ି ଅନ୍ନ, କ୍ଷୀର ଲଡ୍ଡୁ ଓ ମୋହନଭୋଗାଦି ସମସ୍ତ ଉତ୍ତମ ପଦାର୍ଥ ପ୍ରସ୍ତୁତ କରିବ । ଏହାର ପ୍ରମାଣ —

**ଓଁ ଦେବସ୍ତ୍ୱା ସବିତା ପୁନାତ୍ୱଚ୍ଛିଦ୍ରେଣ**
**ପବିତ୍ରେଣ ବସୋଃ ସୂର୍ଯ୍ୟସ୍ୟ ରଶ୍ମିଭିଃ ।**

ଗୋଭିଲ ଗୃ: ପ୍ର: ୧ । ଖଣ୍ଡ ୭ । ସୂ ୨୪

ହୋମର ସମସ୍ତ ଦ୍ରବ୍ୟ ଯଥାଶକ୍ତି ଶୁଦ୍ଧ କରିଦେବ—ଏହାହିଁ ମନ୍ତ୍ରର ଉଦ୍ଦେଶ୍ୟ ଅର୍ଥାତ୍ ସମସ୍ତ ଦ୍ରବ୍ୟକୁ ଯଥାଶକ୍ତି ଶୋଧନ କରି, ଛାଣି, ଭଲଭାବେ ସଜାଡ଼ିବ । ତାପରେ ଏକତ୍ର ସମସ୍ତ ଦ୍ରବ୍ୟ ଯଥା-ଯଥ ଭାବେ ମିଶାଇ ପାକ କରିବ । ଯେପରି ଏକ ସେର ଘିଅର ମୋହନଭୋଗରେ ଏକ ରତି କସ୍ତୁରୀ, ଏକ ମସା କେଶର, ଏକ ମସା ଜାଇଫଳ, ଏକ ମସା ଜାଇତ୍ରୀ ଓ ଏକ ସେର ମିଠା— ଏଇ ସବୁକୁ ମିଶାଇ ମୋହନଭୋଗ ପ୍ରସ୍ତୁତ କରିବ । ଏଇପରି ହୋମପାଇଁ ଅନ୍ୟପ୍ରକାର ମିଷ୍ଟାନ୍ନ, କ୍ଷୀରୀ, ଖେଚେଡ଼ି ଏବଂ ଅନ୍ୟାନ୍ୟ ଲଡ୍ଡୁ ଆଦି ପ୍ରସ୍ତୁତ କରିବ ।

## ଚରୁ ଅର୍ଥାତ୍ ହୋମ ନିମନ୍ତେ ପାକ୍ୟସାନ୍ନ ପ୍ରସ୍ତୁତ ପ୍ରଣାଳୀ

**ଓଁ ଅଗ୍ନୟେ ତ୍ୱା ଜୁଷ୍ଟଂ ନିର୍ବପାମି**

ଆଶ୍ୱ. ଗୃ: ୧।୧୦।୬ ॥

ଅର୍ଥାତ୍ ଯେତେ ଆହୁତି ଦେବାକୁ ହେବ । ତାହାର ପ୍ରତ୍ୟେକର ଆହୁତିପାଇଁ ୪ମୁଠା କରି ଚାଉଳ ନେବ ।

ଓଁ ଅଗ୍ନେୟେ ତ୍ୱା ଜୁଷ୍ଟଂ ପ୍ରୋକ୍ଷାମି

ଅଶ୍ୱ, ଗୃ ଅ ୧

ଅର୍ଥାତ୍ ତଣ୍ଡୁଳାଦ ଜଳରେ ଉତ୍ତମରୂପେ ଧୌତ କର ପାକସ୍ଥାଳୀରେ ରଖି ପାକ କରନେବ । ହୋମ କରବାପାଇଁ ଯେତେ-ବେଳେ ଚରୁକୁ ଅନ୍ୟ ପାତ୍ରରେ ନେବାକୁ ହେବ, ସେତେବେଳେ ଏହାକୁ ନମ୍ନଲିଖିତ ଆଜ୍ୟସ୍ଥାଳୀ ବା ଶାକଲ୍ୟସ୍ଥାଳୀରେ ବାହାର କର ଯଥାବଧି ସୁରକ୍ଷିତ ରଖିବ ଓ ତାହା ଉପରେ ଘୃତ ସିଞ୍ଚନ କରବ ।

ଯଜ୍ଞପାତ୍ର

(ଯଜ୍ଞପାତ୍ର) ବିଶେଷଭାବେ ରୌପ୍ୟ ବା କାଷ୍ଠ ନିର୍ମିତ ହେବା ଉଚିତ୍ । ପ୍ରମାଣ ତଳେ ଲେଖାଯାଉଛି—

**ଅଥ ପାତ୍ରଲକ୍ଷଣାନ୍ୟୁଚ୍ୟନ୍ତେ— ବାହୁମାତ୍ର୍ୟଃ ପଣି ମାତ୍ରପୁଷ୍କରାଃ, ଷଡଙ୍ଗୁଲଖାତାସ୍ତ୍ୱଗ୍ବିଲା ହଂସମୁଖ-ପ୍ରସେକାଃ, ମୂଳଦଣ୍ଡାଶ୍ଚ ତସ୍ରଃ ସ୍ରୁଚୋ ଭବନ୍ତି । ତଦ୍ଧ ପାଲାଶୀ ଜୁହୂଃ, ଆଶ୍ୱତ୍ଥ୍ୟୁପଭୃତ୍, ବୈକଙ୍କତୀ ଧ୍ରୁବା, ଅଗ୍ନିହୋତ୍ରହବଣୀ ଚ ।**

**ଅରତ୍ନିମାତ୍ରଃ ଖାଦିରଃ ସ୍ରୁବଃ, ଅଙ୍ଗୁଷ୍ଠପର୍ବମାତ୍ର-ପୁଷ୍କରଃ । ତଥାବଧୋ ଦ୍ୱିତୀୟୋ ବୈକଙ୍କତଃ ସ୍ରୁବଃ । ବାରଣଂ ବାହୁମାତ୍ରଂ ମକରାକାରମଗ୍ନିହୋତ୍ରହବଣୀ-ନିଧାନାର୍ଥଂ କୂର୍ଚ୍ଚମ୍ ।**

**ଅରତ୍ନିମାତ୍ରଂ ଖାଦିରଂ ଖଡ୍ଗାକୃତି ବଜ୍ରମ୍ ॥**

ବାରଣାନ୍ୟହୋମସଂଯୁକ୍ତାନି । ତତ୍ରୋଲୂଖଳଂ ନାଭିମାତ୍ରମ୍, ମୁସଲଂ ଶିରୋମାତ୍ରମ୍, ଅଥବା ମୁସଳୋ-ଲୂଖଳେ ବାର୍କ୍ଷେ ସାରଦାରୁମୟେ ଶୁଭେ ଇଚ୍ଛାପ୍ରମାଣେ ଭବତଃ । ତଥା –

ଖାଦିରଂ ମୁସଳଂ କାର୍ଯ୍ୟଂ ପାଲାଶଃ ସ୍ୟାଦୁଲୂଖଳଃ ।
ଯଦ୍ବୋଭୌ ବାରଣୌ କାର୍ଯ୍ୟୌ
ତଦଭାବେଽନ୍ୟବୃକ୍ଷଜୌ

ଶୂର୍ପଂ ବୈଣବମେବ ବା, ଐଷୀକଂ ନଳମୟଂ
ବାଽଚର୍ମବଦ୍ଧମ୍

ପ୍ରାଦେଶମାତ୍ରୀ ବାରଣୀ ଶମ୍ୟା ।

କୃଷ୍ଣାଜିନମଖଣ୍ଡମ୍ ।

ଦୃଷଦୁପଳେ ଅଶ୍ମମୟେ । ବାରଣୀଂ ୨୪ ହସ୍ତ-ମାତ୍ରୀଂ, ୨୨ ଅରତ୍ନିମାତ୍ରୀଂ ଖାତମଧ୍ୟାଂ ମଧ୍ୟସଂଗୃହୀତା-ମିଡାପାତ୍ରୀମ୍ ।

ଅରତ୍ନିମାତ୍ରାଣି ବ୍ରହ୍ମଯଜମାନହୋତୃପତ୍ନ୍ୟାସନାନି ।
ମୁଞ୍ଜମୟଂ ତ୍ରିବୃତଂ ବ୍ୟାମମାତ୍ରମଂ ଯୋକ୍ତ୍ରମ୍ ।

ପ୍ରାଦେଶଦୀର୍ଘେ ଅଷ୍ଟାଙ୍ଗୁଳାୟତେ ଷଡଙ୍ଗୁଳଖାତ-ମଣ୍ଡଳମଧ୍ୟେ ପୁରୋଡାଶପାତ୍ରୌ ।

ପ୍ରାଦେଶମାତ୍ରଂ ଦ୍ୱ୍ୟଙ୍ଗୁଳପରୀଣାହଂ ତୀକ୍ଷ୍ଣାଗ୍ରଂ ଶୃତାବଦାନମ୍

ଆଦର୍ଶାକାରେ ଚତୁରସ୍ରେ ବା ପ୍ରାଶିତ୍ରହରଣେ ।
ତଦ୍ୟୋରେକମୀଷତ୍ଖାତମଧ୍ୟମ୍ ।
ଷଡଙ୍ଗୁଲ କଙ୍କତକାକାରମୁଭୟତଃ ଖାତଂ ଷଡବତ୍ତମ୍ ।
ଦ୍ୱାଦଶାଙ୍ଗୁଳମର୍ଦ୍ଧଚନ୍ଦ୍ରାକାରମଷ୍ଟାଙ୍ଗୁଳୋତ୍ସେଧମନ୍ତର୍ଦ୍ଧାନ-
କଟମ୍ ।

ଉପବେଶନାଦିରଚନ୍ଦ୍ରମାଦ୍ରଃ ।

ମୁଞ୍ଜମୟୀ ରଜ୍ଜୁଃ ।

ଖାଦିରାନ୍ ଦ୍ୱାଦଶାଙ୍ଗୁଳଦୀର୍ଘାନ୍ ଚତୁରଙ୍ଗୁଳମସ୍ତକାନ୍
ତୀକ୍ଷ୍ଣାଗ୍ରାନ୍ ଶଙ୍କୂନ୍ ।

ଯଜମାନ ପୂର୍ଣ୍ଣପାତ୍ରଂ ପତ୍ନୀପୂର୍ଣ୍ଣପାତ୍ରଂ ଚ ଦ୍ୱାଦଶାଙ୍ଗୁଳ-
ଦୀର୍ଘଂ ଚତୁରଙ୍ଗୁଳବିସ୍ତାରଂ ଚତୁରଙ୍ଗୁଳଖାତମ୍ ।

ତଥା ପ୍ରଣୀତା ପାତ୍ରଞ୍ଚ ।

ଆଜ୍ୟସ୍ଥାଲୀ ଦ୍ୱାଦଶାଙ୍ଗୁଳବିସ୍ତୃତା ପ୍ରାଦେଶୋଚ୍ଚା ।

ତଥୈବ ଚରୁସ୍ଥାଲୀ ।

ଅନ୍ୱାହାର୍ଯ୍ୟପାତ୍ରଂ ପୁରୁଷଚତୁଷ୍ଟୟାହାରପାକପର୍ଯ୍ୟାପ୍ତମ୍ ।
ସମିଦ୍ଧ୍ୟାର୍ଥଂ ପଳାଶଶାଖାମନ୍ୟମ୍ ।

କୌଶଂ ବର୍ହିଃ ।

ଋତ୍ୱିଗ୍ବରଣାର୍ଥଂ କୁଣ୍ଡଳାଙ୍ଗୁଳୀୟକବାସାଂସି ।
ପତ୍ନୀଯଜମାନପରିଧାନାର୍ଥଂ କ୍ଷୌମବାସଚତୁଷ୍ଟୟମ୍ ।

ଅଗ୍ନ୍ୟାଧେୟସ୍ୟ ଦକ୍ଷିଣାର୍ଥଂ ଚତୁର୍ବିଂଶତପକ୍ଷେ ଏକୋନ-
ପଞ୍ଚାଶଦ୍ ଗାବଃ, ଦ୍ୱାଦଶପକ୍ଷେ ପଞ୍ଚବିଂଶତିଃ, ଷଟ୍ପକ୍ଷେ

ତ୍ରୟୋଦଶ, ସର୍ବେଷୁ ପକ୍ଷେଷୁ ଆଦର୍ଶେଽଷ୍ଟୌ ଧେନୁଃ ।
ବର୍ଦ୍ଧଂ ଚଲତ୍ୱୋ ଗାବଃ ।

## ଅଥ ଋତ୍ୱିଗ୍‌ବରଣମ୍

**ଯଜମାନଉକ୍ତିଃ**—"ଓମାବସୋଃ ସଦନେସୀଦ"— ଏହି ମନ୍ତ୍ର ଉଚ୍ଚାରଣ କରି କର୍ମକରାଇବାପାଇଁ (ଯଜମାନ) ଋତ୍ୱିକଙ୍କ ନିକଟରେ ତାଙ୍କ ସ୍ୱୀକୃତି ପ୍ରାର୍ଥନା କରିବେ । ଋତ୍ୱିଗୁକ୍ତି "ଓଁ ସୀଦାମି" ଏହି କହି (ଋତ୍ୱିକ୍) ତାଙ୍କର ନିର୍ଦ୍ଦିଷ୍ଟ ଆସନରେ ବସିବେ ।

**ଯଜମାନୋକ୍ତିଃ**—

"ଅହମଦେ୍ୟାକ୍ତକର୍ମକରଣାୟ ଭବନ୍ତଂ ବୃଣେ" ।

**ଋତ ଗୁକ୍ତିଃ**—"ବୃତୋଽସ୍ମି" ।

## ଋତ୍ୱିଗ୍‌ଗଣଙ୍କର ଲକ୍ଷଣ

ଉତ୍କୃଷ୍ଟ ବିଦ୍ୱାନ୍, ଧାର୍ମିକ, ଜିତେନ୍ଦ୍ରିୟ, କର୍ମକୁଶଳ, ନିର୍ଲୋଭ, ପରୋପକାରୀ, ଦୁର୍ବ୍ୟସନଶୂନ୍ୟ, କୁଳୀନ (ସଦ୍‌ବଂଶଜାତ, ଯେଉଁ ବଂଶରେ କେହି ଦୁଷ୍କର୍ମ କରେ ନାହିଁ) ସୁଶୀଳ, ବୈଦିକମତ,ବଲମ୍ବୀ ଓ ବେଦବିତ୍—ଏହିପରି ଜଣେ, ଦୁଇଜଣ, ତିନିଜଣ ବା ଚାରିଜଣଙ୍କୁ ଋତ୍ୱିଗ୍‌ପଦରେ ବରଣ କରିବ । ଜଣେହେଲେ "ପୁରୋହିତ", ଦୁଇଜଣ ହେଲେ "ଋତ୍ୱିକ୍ ଓ ପୁରୋହିତ", ତିନିଜଣ ହେଲେ "ଋତ୍ୱିକ୍, ପୁରୋହିତ ଓ ଅଧ୍ୟକ୍ଷ" ଏବଂ ଚାରିଜଣ ହେଲେ "ହୋତା ଅଧ୍ୱର୍ୟୁ, ଉଦ୍‌ଗାତା ଓ ବ୍ରହ୍ମା" ହେବେ । ଏମାନଙ୍କର ଆସନ ବେଦୀର (ଯଜ୍ଞକୁଣ୍ଡର) ଚାରିଦିଗରେ ଅର୍ଥାତ୍ ହୋତାର ଆସନ

ବେଦୀର ପଶ୍ଚିମଦିଗରେ ପୂର୍ବମୁଖରେ, ଅଧ୍ୱର୍ଯ୍ୟୁଙ୍କ ଉତ୍ତର ଆସନ ଦକ୍ଷିଣମୁଖ, ଉଦ୍‌ଗାତାର ପୂର୍ବଆସନ ପଶ୍ଚିମ ମୁଖ ଏବଂ ବ୍ରହ୍ମାଙ୍କର ଦକ୍ଷିଣ ଆସନ ଉତ୍ତରମୁଖ ହେବା ଉଚିତ। ଏହି ଋତ୍ୱିକ୍‌ମାନଙ୍କୁ ସତ୍କାରପୂର୍ବକ ଆସନରେ ଉପବେଶନ କରାଇବ ଏବଂ ସେମାନେ ପ୍ରସନ୍ନତାରସହ ଆସନ ଗ୍ରହଣ କରିବେ। ସେମାନେ ଉପସ୍ଥିତ କର୍ମ ବ୍ୟତୀତ ଅନ୍ୟ କୌଣସି କର୍ମ କରିବେ ନାହିଁ ବା ଅନ୍ୟ କୌଣସି କଥା କହିବେ ନାହିଁ।

ଯେଉଁମାନେ ଯଜ୍ଞକରିବାକୁ କରିବାକୁ ଉପବିଷ୍ଟ ହୋଇଛନ୍ତି, ସେମାନେ ସମସ୍ତେ ସ୍ୱ ସ୍ୱ ଜଳପାତ୍ରରୁ (ଦକ୍ଷିଣ ହସ୍ତରେ) ଜଳ ନେଇ ଏଇ ସମସ୍ତ ମନ୍ତ୍ରରେ ତିନିତିନୋଟି ଆଚମନ କରିବେ ଅର୍ଥାତ୍ ଗୋଟିଏ ମନ୍ତ୍ରରେ ଥରେ ଥରେ ଆଚମନ କରିବେ। ମନ୍ତ୍ରଗୁଡ଼ିକ ହେଉଛି—

## ଆଚମନ ମନ୍ତ୍ର

**ଓଁ ଅମୃତୋପସ୍ତରଣମସି ସ୍ୱାହା ।୧।** ଏଥିରେ ଗୋଟିଏ
**ଓଁ ଅମୃତାପିଧାନମସି ସ୍ୱାହା ।୨।** ଏଥିରେ ଗୋଟିଏ
**ଓଁ ସତ୍ୟଂ ଯଶଃ ଶ୍ରୀର୍ମୟି ଶ୍ରୀଃ ଶ୍ରୟତାଂ ସ୍ୱାହା ।୩।**

(ତୈତ୍ତିରୀୟ ଆରଣ୍ୟକ ପ୍ର ୧୦। ଅନୁ ୩୨, ୩୫

ଏହି ମନ୍ତ୍ରରେ ତୃତୀୟ ଆଚମନ କରିବ। ତାପରେ (ବାମ ହାତ ତଳରେ) ଜଳନେଇ ନିମ୍ନମନ୍ତ୍ରରେ (ଦକ୍ଷିଣହାତର ମଧ୍ୟମା ଓ ଅନାମିକା ଅଙ୍ଗୁଳିଦ୍ୱାରା ଜଳସ୍ପର୍ଶ କରି ମୁଖାଦି) ଅଙ୍ଗସ୍ପର୍ଶ କରିବ।

**ଓଁ ବାଙ୍‌ମଃଆସ୍ୟେଽସ୍ତୁ ।** ଏ ମନ୍ତ୍ରରେ ମୁହଁ
**ଓଁ ନସୋର୍ମେ ପ୍ରାଣୋଽସ୍ତୁ ।** ଏ ମନ୍ତ୍ରରେ ନାସାରନ୍ଧ୍ର ଦୁଇଟି

**ଓଁ ଅକ୍ଷ୍‌ଣୋର୍ମେ ଚକ୍ଷୁରସ୍ତୁ ।** ଏ ମନ୍ତ୍ରରେ ଦୁଇଆଖି

**ଓଁ କର୍ଣ୍ଣୟୋର୍ମେ ଶ୍ରୋତ୍ରମସ୍ତୁ ।** ଏ ମନ୍ତ୍ରରେ ଦୁଇକାନ

**ଓଁ ବାହ୍ୱୋର୍ମେ ବଳମସ୍ତୁ ।** ଏ ମନ୍ତ୍ରରେ ଦୁଇବାହୁ

**ଓଁ ଊର୍ବୋର୍ମେ ଓଜୋଽସ୍ତୁ ।** ଏ ମନ୍ତ୍ରରେ ଦୁଇଜଙ୍ଘ ଓ

**ଓଁ ଅରିଷ୍ଟାନି ମେଽଙ୍ଗାନି ତନୂସ୍ତନ୍ୱା ମେ ସହ ସନ୍ତୁ ।**

ଏହି ମନ୍ତ୍ରରେ (ସର୍ବାଙ୍ଗ) ମାର୍ଜନ କରିବ ।

(ପାରସ୍କର ଗୃ କା ୧ କଣ୍ଡିକା ୩ । ସୂ ୨୫)

## ସମିଧାଚୟନ ଓ ଅଗ୍ନିପ୍ରଜ୍ୱାଳନ

ତତ୍ପରେ ବେଦୀରେ (ଯଜ୍ଞକୁଣ୍ଡରେ) ପୂର୍ବୋକ୍ତ ସମିଧା ଚୟନ କରିବେ । ପୁଣି —

**ଓଁ ଭୂର୍ଭୁବଃ ସ୍ୱଃ ।।**

(ଗୋଭିଲ ଗୃ: ପ୍ର: ୧ । ଖଂ ୧ । ସୂ ୧୧

ଏହି ମନ୍ତ୍ର ଉଚ୍ଚାରଣ କରି ବ୍ରାହ୍ମଣ, କ୍ଷତ୍ରିୟ ବା ବୈଶ୍ୟର ଗୃହରୁ ଅଗ୍ନି ଆନୟନ କରିବ ଅଥବା ଘୃତଦୀପ ପ୍ରଜ୍ୱାଳନପୂର୍ବକ ତଦ୍ୱାରା କର୍ପୂର ପ୍ରଦୀପିତ କରି ତାହା କୌଣସି ଗୋଟିଏ ପାତ୍ରରେ ସ୍ଥାପନ କରିବ ଏବଂ ସେଥିରେ କ୍ଷୁଦ୍ର କ୍ଷୁଦ୍ର କାଷ୍ଠଖଣ୍ଡ ସଂଯୋଗ କରି ଯଜମାନ ବା ପୁରୋହିତ ସେଇ ପାତ୍ର ଦୁଇହାତରେ ଉତ୍ତୋଳନ ପୂର୍ବକ, ତପ୍ତ ହେଲେ ଚିମୁଟାଦ୍ୱାରା ଧାରଣ କରି ପରବର୍ତ୍ତୀ ମନ୍ତ୍ରରେ ଆଧାନ କରିବ । ସେ ମନ୍ତ୍ର ହେଉଛି—

## ଅଗ୍ନ୍ୟାଧାନ

**ଓଁ ଭୂର୍ଭୁବଃ ସ୍ୱର୍ଦ୍ୟୌରିବ ଭୂମ୍ନା ପୃଥିବୀବ ବରିମ୍ଣା । ତସ୍ୟାସ୍ତେ ପୃଥିବୀ ଦେବଯଜନି ପୃଷ୍ଠେଽଗ୍ନିମନ୍ନାଦମନ୍ନାଦ୍ୟାୟାଦଧେ ॥ ୧ ॥**

ଯଜୁ ଅ ୩ । ମ° ୫

ଏହି ମନ୍ତ୍ରରେ ବେଦୀର ( ଯଜ୍ଞକୁଣ୍ଡର ) ମଧ୍ୟଭାଗରେ ଅଗ୍ନି ସ୍ଥାପନ କରି ସେଥିରେ ଛୋଟ ଛୋଟ ଖଣ୍ଡ କାଠ ଏବଂ ଅଳ୍ପକିଛି କର୍ପୂର ରଖି ଧୀରେ ଧୀରେ ପଙ୍ଖାକରି ଅଗ୍ନି ପ୍ରଦୀପ୍ତ କରିବା ସମୟରେ ନିମ୍ନ ମନ୍ତ୍ର ପାଠ କରିବ ।

**ଓଁ ଉଦ୍‌ବୁଧ୍ୟସ୍ୱାଗ୍ନେ ପ୍ରତି ଜାଗୃହି ତ୍ୱମିଷ୍ଟାପୂର୍ତ୍ତେ ସଁ ସୃଜେଥାମୟଂ ଚ । ଅସ୍ମିନ୍ତ୍ସଧସ୍ଥେ ଅଧ୍ୟୁତ୍ତରସ୍ମିନ୍ ବିଶ୍ୱେ ଦେବା ଯଜମାନଶ୍ଚ ସୀଦତ ॥ ୨ ॥**

ଯଜୁ ଅ ୧୫ । ମ° ୫୪

ଯେତେବେଳେ ଅଗ୍ନି ସାହାଯ୍ୟରେ ସମିଧା ଜଳିବାକୁ ଆରମ୍ଭ କରିବ, ସେତେବେଳେ ଚନ୍ଦନକାଷ୍ଠ କମ୍ବା ଉପରୋଲ୍ଲିଖିତ ପଳାଶାଦିର ତିନୋଟି ଆଠଆଙ୍ଗୁଳ ଲମ୍ବ କାଷ୍ଠକୁ ଘୃତ ଲେପନ କରି ନିମ୍ନଲିଖିତ ମନ୍ତ୍ର ପାଠସହ ଗୋଟିଏ ଗୋଟିଏ କରି ଅଗ୍ନି ଉପରେ ସ୍ଥାପନ କରିବ । ପ୍ରଥମ ସମିଧାଦାନର ମନ୍ତ୍ର—

**ଓଁ ଅୟନ୍ତ ଇଧ୍ମ ଆତ୍ମା ଜାତବେଦସ୍ତେନେଧ୍ୟସ୍ୱ ବର୍ଦ୍ଧସ୍ୱ ଚେଦ୍ଧ ବର୍ଦ୍ଧୟ ଚାସ୍ମାନ୍ ପ୍ରଜୟା ପଶୁଭିର୍ବ୍ରହ୍ମବର୍ଚ୍ଚସେନା-ନ୍ନାଦ୍ୟେନ ସମେଧୟସ୍ୱାହା । ଇଦମଗ୍ନୟେ ଜ ତବେଦସେ ଇଦନ୍ନ ମମ । ୧ ।**

ଦ୍ୱିତୀୟ ସମିଧାଦାନର ମନ୍ତ୍ର—

**ଓଁ ସମିଦ୍ଧାଗ୍ନିଂ ଦୁବସ୍ୟତ ଘୃତୈର୍ବୋଧୟତାତିଥିମ୍ । ଅସ୍ମିନ୍ ହବ୍ୟା ଜୁହୋତନ ସ୍ୱାହା । ଇଦମଗ୍ନୟେ— ଇଦନ୍ନ ମମ ॥ ୨ ॥**

**ଓଁ ସୁସମିଦ୍ଧାୟ ଶୋଚିଷେ ଘୃତଂ ତୀବ୍ରଂ ଜୁହୋତନ । ଅଗ୍ନୟେ ଜାତବେଦସେ ସ୍ୱାହା ॥ ଇଦମଗ୍ନୟେ ଜାତବେଦସେ—ଇଦନ୍ନ ମମ ॥୩॥**

(ଆଶ୍ୱଳା ଗୃ ସୂ ଅ ୧ । କ: ୧୦ । ସୂ ୧୨)

ତୃତୀୟ ସମିଧାଦାନର ମନ୍ତ୍ର—

**ଓଁ ତନ୍ତ୍ୱା ସମଦ୍ଭିରଙ୍ଗିରୋ ଘୃତେନ ବର୍ଦ୍ଧୟାମସି । ବୃହଚ୍ଛୋଚା ଯବିଷ୍ଠ୍ୟ ସ୍ୱାହା ॥ ଇଦମଗ୍ନୟେଽଙ୍ଗିରସେ- ଇଦନ୍ନ ମମ ॥ ୪ ॥**

ଯଜୁ ଅ: ୩ । ମଂ ୧,୨,୩

ଏହି ମନ୍ତ୍ରମାନଙ୍କରେ ସମିଧାଦାନ କରିସିବା ପରେ ହୋମ ନିମନ୍ତେ ଯଥାବିଧି ପ୍ରସ୍ତୁତ କରାଯାଇଥିବା ଶାକଲ୍ୟକୁ ସୁବର୍ଣ୍ଣ, ରୌପ୍ୟ ବା କଂସା ପ୍ରଭୃତି ଧାତୁରେ ତିଆରି ପାତ୍ରରେ ବା କାଷ୍ଠ ପାତ୍ରରେ ରଖି ବେଦୀ ନିକଟରେ ରଖିବ । ତତ୍ପରେ ଉପରଲିଖିତ ଘୃତାଦି (ଯାହାକି ଉଷ୍ମ କରିସିବାପରେ ଛଣାଯାଇ ପୂର୍ବୋକ୍ତ ସୁଗନ୍ଧ ଦ୍ରବ୍ୟାଦି ମିଶ୍ରିତ କରାଯାଇ ପାତ୍ରରେ ରଖାଯାଇଥିବ)ରୁ ଅତି କମ୍‌ରେ ଛଅ ମସା ଘୃତ ଏବଂ ତା' ସହିତ ଅନ୍ୟ ମହନଭୋଗାଦି ଯଦଥିବ ସେଥିରୁ ଖୁବ୍ ବେଶୀରେ ଏକ ଛଟାଙ୍କି ନେଇ ଆହୁତି ଦେବ । ଏହାହିଁ ଆହୁତି ଦେବାର ନିୟମ ଅଟେ ।

ଛ' ମସା ଘିଅ ଧରୁଥିବା ଦ୍ରବ୍ୟ ସାହାଯ୍ୟରେ ନିମ୍ନଲିଖିତ ମନ୍ତ୍ରକୁ ପାଠକରି ପାଞ୍ଚଥର ଆହୁତି ଦେବ ।

**ଓଁ ଅୟନ୍ତ ଇଧ୍ମ ଆତ୍ମା ଜାତବେଦସ୍ତେନେଧ୍ୟସ୍ୱ ବର୍ଦ୍ଧସ୍ୱ ଚେଦ୍ଧ ବର୍ଦ୍ଧୟ ଚାସ୍ମାନ୍ ପ୍ରଜୟା ପଶୁଭିର୍ବ୍ରହ୍ମବର୍ଚ୍ଚସେନା-ନ୍ନାଦ୍ୟେନ ସମେଧୟ ସ୍ୱାହା ॥ ଇଦମଗ୍ନୟେ ଜାତ-ବେଦସେ—ଇଦନ୍ନ ମମ ॥ ୧ ॥**

(ଆଶ୍ୱଳା ଗୃ: ସୂ: ଅ: ୧। କଂ ୧୦। ସୂ ୧୨)

## ଜଳସିଞ୍ଚନ

ତତ୍ପରେ ଆଞ୍ଜୁଳିରେ ଜଳ ନେଇ ପୂର୍ବଦିଗାଦି ଚତୁର୍ଦ୍ଦିଗରେ ସିଞ୍ଚନ କରିବ । ଏହାର ମନ୍ତ୍ରଗୁଡ଼ିକ ହେଉଛି—

**ଓଁ ଅଦିତେଽନୁମନ୍ୟସ୍ୱ** । ଏହି ମନ୍ତ୍ରଦ୍ୱାରା ପୂର୍ବଦିଗରେ
**ଓଁ ଅନୁମତେଽନୁମନ୍ୟସ୍ୱ** ॥ ଏହି ମନ୍ତ୍ରଦ୍ୱାରା ପଶ୍ଚିମ ଦିଗରେ
**ଓଁ ସରସ୍ୱତ୍ୟନୁମନ୍ୟସ୍ୱ** ॥ ଏହି ମନ୍ତ୍ରରେ ଉତ୍ତର ଏବଂ

(ଗୋଭିଲ ଗୃ: ପ୍ର: ୧ । ଖଂ ୩ । ସୂ ୧—୩)

**ଓଁ ଦେବ ସବିତଃ ପ୍ର ସୁବ ଯଜ୍ଞଂ ପ୍ର ସୁବ ଯଜ୍ଞପତିଂ ଭଗାୟ । ଦିବ୍ୟୋ ଗନ୍ଧର୍ବଃ କେତପୂଃ କେତଂ ନଃ ପୁନାତୁ ବାଚସ୍ପତିର୍ବାଚଂ ନଃ ସ୍ୱଦତୁ ।**

(ଯଜୁ ଅ: ୩୦ । ମଂ ୧)

ଏହି ମନ୍ତ୍ରଦ୍ୱାରା ବେଦିର ଚତୁର୍ଦ୍ଦିଗରେ ଜଳସିଞ୍ଚନ କରିବ ।

ଏହାପରେ ସାମାନ୍ୟ ହୋମାହୁତି ଗର୍ଭାଧାନାଦି ପ୍ରଧାନ ପ୍ରଧାନ ସଂସ୍କାରରେ ଅବଶ୍ୟ କରିବ । ଏଥିରେ ମୁଖ୍ୟ ହୋମର ଆରମ୍ଭରେ ଓ ଶେଷରେ ଯେଉଁ ସମସ୍ତ ଆହୁତି ପ୍ରଦତ୍ତ ହୁଏ, ତନ୍ମଧ୍ୟେ ଯଜ୍ଞକୁଣ୍ଡର ଉତ୍ତରଭାଗେ ଏକ ଆହୁତି ଓ ଦକ୍ଷିଣଭାଗରେ ଅନ୍ୟ ଏକ ଆହୁତି ଦେବାକୁ ହେବ, ଏହାର ନାମ "ଆଘାରାବାଜ୍ୟାହୁତି" । କୁଣ୍ଡର ମଧ୍ୟ ଭାଗରେ ଯେଉଁ ସମସ୍ତ ଆହୁତି ପ୍ରଦତ୍ତ ହୁଏ, ସେ ସମୁଦାୟକୁ "ଆଜ୍ୟଭାଗାହୁତି" କହନ୍ତି ।

ଘୃତପାତ୍ରରୁ ସ୍ରୁବା ପୂର୍ଣ୍ଣକରି ଅଙ୍ଗୁଷ୍ଠ ମଧ୍ୟମା ଓ ଅନାମିକା ଦ୍ୱାରା ସ୍ରୁବା ଧାରଣ ପୂର୍ବକ —

## ଆଘାରାବାଜ୍ୟାହୁତି

ନିମ୍ନୋକ୍ତ ମନ୍ତ୍ରରେ ବେଦୀର ଉତ୍ତରଭାଗସ୍ଥ ଅଗ୍ନିରେ —

**ଓଁ ଅଗ୍ନୟେ ସ୍ୱାହା ॥ ଇଦମଗ୍ନୟେ — ଇଦନ୍ନ ମମ ॥ ୧ ॥**

(ଯଜୁ ୨୨।୨୭)

**ଓଁ ସୋମାୟ ସ୍ୱାହା ॥ ଇଦଂ ସୋମାୟ-ଇଦନ୍ନ ମମ ॥୨॥**

( ଗୋ: ଗୃ: ୧ । ଖ ୮ ସୂ ୩,୧)

ଏହି ମନ୍ତ୍ରରେ ବେଦୀର ଦକ୍ଷିଣଭାଗସ୍ଥ ଅଗ୍ନିରେ ପ୍ରଜ୍ୱଳିତ ସମିଧା ଉପରେ ଆହୁତି ଦେବ । ତତ୍ପରେ —

## ଆଜ୍ୟଭାଗାହୁତି

ନିମ୍ନୋକ୍ତ ଦୁଇଟି ମନ୍ତ୍ରରେ ବେଦୀର ମଧ୍ୟଭାଗରେ ଦୁଇଟି ଆହୁତି ଦେବ —

**ଓଁ ପ୍ରଜାପତୟେ ସ୍ୱାହା ॥ ଇଦଂ ପ୍ରଜାପତୟେ — ଇଦନ୍ନ ମମ ॥ ୩ ॥** (କାତ୍ୟା: ଶ୍ରୌ: ଅ ୩ । ସୂ ୧୨)

**ଓଁ ଇନ୍ଦ୍ରାଗ୍ନୀ ସ୍ୱାହା ॥ ଇଦମିନ୍ଦ୍ରାଗ୍ନୀ—ଇଦନ୍ନ ମମ ॥ ୪ ॥**

(କାତ୍ୟା ଶ୍ରୌ: ଅ ୩ । ସୂ ୧୯)

ଉପରୋକ୍ତ ଚାରିଟି ଆହୁତି ଅର୍ଥାତ୍ ଆଘାରବାଜ୍ୟଭାଗାହୁତି ପ୍ରଦାନ ପରେ ଯେତେବେଳେ ପ୍ରଧାନ ହୋମ ଅର୍ଥାତ୍ ଯେଉଁ ଯେଉଁ କର୍ମରେ ଯେଉଁ ଯେଉଁ ହୋମ କରିବାକୁ ହେବ, ତାହାକର ପୂର୍ବୋକ୍ତ ଚାରିଟି ପୂର୍ଣ୍ଣାହୁତି (ଆଘାରବାଜ୍ୟଭାଗାହୁତି) ଦେବ । ପୁନରପି ସେହି ସଂଶୋଧିତ ଘୃତରେ ସ୍ରୁବା ପୂର୍ଣ୍ଣକରି ପ୍ରଜ୍ଜ୍ୱଳିତ ସମିଧା ଉପରେ ନିମ୍ନୋକ୍ତ ମନ୍ତ୍ରରେ ଚାରିଟି ବ୍ୟାହୃତି ଆହୁତି ଦେବ—

## ବ୍ୟାହୃତି ଆହୁତି

**ଓଁ ଭୂରଗ୍ନୟେ ସ୍ୱାହା ॥ ଇଦମଗ୍ନୟେ--ଇଦନ୍ନ ମମ ॥୧॥**
**ଓଁ ଭୁବର୍ବାୟବେ ସ୍ୱାହା । ଇଦଂ ବାୟବେ-ଇଦନ୍ନ ମମ ।୨।**
**ଓଁ ସ୍ୱରାଦିତ୍ୟାୟ ସ୍ୱାହା ॥ ଇଦମାଦିତ୍ୟାୟ-ଇଦନ୍ନ ମମ ।୩।**
**ଓଁ ଭୂର୍ଭୁବଃ ସ୍ୱରଗ୍ନିବାୟ୍ୱାଦିତ୍ୟେଭ୍ୟଃ ସ୍ୱାହା ॥ ଇଦମଗ୍ନିବାୟ୍ୱାଦିତ୍ୟେଭ୍ୟଃ-ଇଦନ୍ନ ମମ ॥ ୪ ॥**

(ଗୋଭିଲ ଗୃ: କା: ୧ । ୮ । ୧୫)

ଘୃତର ଚାରିଟି ଆହୁତି ଦାନପରେ ମାତ୍ର ଗୋଟିଏ ସ୍ୱିଷ୍ଟକୃତ୍ ହୋମାହୁତି ଦେବ । ଏହା ଘୃତ ବା ଅନ୍ନଦ୍ୱାରା ଦେବାକୁ ହେବ । ଏହାର ମନ୍ତ୍ର ଏପରି—

## ସ୍ୱିଷ୍ଟକୃତ୍ ହୋମାହୁତି

**ଓଁ ଯଦସ୍ୟ କର୍ମଣୋଽତ୍ୟରୀରିଚଂ ଯଦ୍ୱା ନ୍ୟୂନମିହାକରମ୍ । ଅଗ୍ନିଷ୍ଟତ୍ସ୍ୱିଷ୍ଟକୃଦ୍ୱିଦ୍ୟାତ୍ସର୍ବଂ ସ୍ୱିଷ୍ଟଂ ସୁହୁତଂ କରୋତୁ ମେ । ଅଗ୍ନୟେ ସ୍ୱିଷ୍ଟକୃତେ ସୁହୁତହୁତେ**

ସର୍ବପ୍ରାୟଶ୍ଚିତ୍ତାହୁତୀନାଂ କାମାନାଂ ସମର୍ଦ୍ଧୟିତ୍ରେ ସର୍ବାନ୍ନଃ କାମାନ୍ତ୍ସମର୍ଦ୍ଧୟ ସ୍ୱାହା ॥ ଇଦମଗ୍ନୟେ ସ୍ୱିଷ୍ଟକୃତେ— ଇଦନ୍ନ ମମ ॥ (ଆ: ଗୃ: ୧।୧୦।୨୨)

ଏହାଦ୍ୱାରା ଗୋଟିଏ ଆହୁତି ଦେଇ ନିମ୍ନଲିଖିତ ମନ୍ତ୍ରରେ ମୌନଭାବରେ ପ୍ରାଜାପତ୍ୟାହୁତି ଦେବାକୁ ହେବ ।

## ପ୍ରାଜାପତ୍ୟାହୁତି

ଓଁ ପ୍ରଜାପତୟେ ସ୍ୱାହା ॥ ଇଦଂ ପ୍ରଜାପତୟେ—ଇଦନ୍ନ ମମ ॥ (ପାରସ୍କର ଗୃ: ୧।୧।୩)

ଏହାଦ୍ୱାରା ମୌନଭାବରେ ଗୋଟିଏ ଆହୁତି ଦେଇ ନିମ୍ନୋକ୍ତ ମନ୍ତ୍ରରେ ଚାରିଟି ଆଜ୍ୟାହୁତି ଦେବ । କିନ୍ତୁ ନିମ୍ନଲିଖିତ ଏଇ ଚାରିଟି ଆହୁତି ଚୂଡ଼ାକରଣ, ସମାବର୍ତ୍ତନ ଓ ବିବାହ ସଂସ୍କାରରେ ମୁଖ୍ୟବୋଲି ଜାଣିବ—

## ପ୍ରଧାନ ଚତୁରାଜ୍ୟାହୁତି

ଓଁ ଭୂର୍ଭୁବଃ ସ୍ୱଃ । ଅଗ୍ନ ଆୟୂଂଷି ପବସ ଆ ସୁବୋର୍ଜମିଷଂ ଚ ନଃ । ଆରେ ବାଧସ୍ୱ ଦୁଚ୍ଛୁନାଂ ସ୍ୱାହା ॥ ଇଦମଗ୍ନୟେ ପବମାନାୟ—ଇଦନ୍ନ ମମ ॥ ୧ ॥

ଓଁ ଭୂର୍ଭୁବଃ ସ୍ୱଃ । ଅଗ୍ନିଋଷି ପବମାନଃ ପାଞ୍ଚଜନ୍ୟଃ ପୁରୋହିତଃ । ତମୀମହେ ମହାଗୟଂ ସ୍ୱାହା ॥ଇଦମଗ୍ନୟେ ପବମାନାୟ ଇଦନ୍ନ ମମ ॥ ୨ ॥

ଓଁ ଭୂର୍ଭୁବଃ ସ୍ୱଃ । ଅଗ୍ନେ ପବସ୍ୱ ସ୍ୱପା ଅସ୍ମେ ବର୍ଚ୍ଚଃ ସୁବୀର୍ଯ୍ୟମ୍ । ଦଧଦ୍ରୟିଂ ମୟି ପୋଷଂ ସ୍ୱାହା ॥ ଇଦମଗ୍ନୟେ ପବମାନାୟ-ଇଦନ୍ନ ମମ ॥ ୩ ॥

(ଋ: ମ: ୯। ସୂ ୬୬ । ମ ୧୯—୨୧)

ଓଁ ଭୂର୍ଭୁବଃ ସ୍ୱଃ । ପ୍ରଜାପତେ ନ ତ୍ୱଦେତାନ୍ୟନ୍ୟୋ ବିଶ୍ୱା ଜାତାନି ପରି ତା ବଭୂବ । ଯତ୍କାମାସ୍ତେ ଜୁହୁମ-ସ୍ତନ୍ନୋ ଅସ୍ତୁ ବୟଂ ସ୍ୟାମ ପତୟୋ ରୟୀଣାଂ ସ୍ୱାହା ॥ ଇଦଂ ପ୍ରଜାପତୟେ-ଇଦନ୍ନ ମମ ॥ ୪ ॥

( ଋ ମଂ ୧୦ । ସୂ ୧୨୧ । ମଂ ୧୦)

ଏଇସବୁ ମନ୍ତ୍ରରେ ଘୃତର ଚାରୋଟି ଆହୁତି ଦାନପରେ ସବୁ ମାଙ୍ଗଳିକ କାର୍ଯ୍ୟରେ "ଅଷ୍ଟାଜ୍ୟାହୁତିର" ନିମ୍ନଲିଖିତ ମନ୍ତ୍ରଗୁଡ଼ିକଦ୍ୱାରା ଆଠଟି ଆହୁତି ଦେବ, କିନ୍ତୁ ଯେଉଁ ଯେଉଁ ସଂସ୍କାରରେ ଯେଉଁ ଯେଉଁ ସ୍ଥଳରେ ଦେବାକୁ ହେବ, ସେଇ ସେଇ ସଂସ୍କାରରେ ତାହା ଲିଖିତ ହେବ । ସେଇ ଆଠଟି ଆହୁତିର ମନ୍ତ୍ର ହେଉଛି—

## ଅଷ୍ଟାଜ୍ୟାହୁତି

ଓଁ ତ୍ୱଂ ନୋ ଅଗ୍ନେ ବରୁଣସ୍ୟ ବିଦ୍ୱାନ୍ ଦେବସ୍ୟ ହେଳୋଽବ ଯାସିସୀଷ୍ଠାଃ । ଯଜିଷ୍ଠୋ ବହ୍ନିତମଃ ଶୋଶୁଚାନୋ ବିଶ୍ୱା ଦ୍ୱେଷାଂସି ପ୍ର ମୁମୁଗ୍ଧ୍ୟସ୍ମତ୍ ସ୍ୱାହା । ଇଦମଗ୍ନିବରୁଣାଭ୍ୟାମ୍-ଇଦନ୍ନ ମମ ॥ ୧ ॥ (ଯଜୁ ୨୧।୩)

ଓଁ ସ ତ୍ୱଂ ନୋ ଅଗ୍ନେଽବମୋ ଭବୋତୀ ନେଦିଷ୍ଠୋ ଅସ୍ୟା ଉଷସୋ ବ୍ୟୁଷ୍ଟୌ । ଅବ ଯକ୍ଷ୍ୱ ନୋ ବରୁଣଂ

ରବାଣୋ ବୀହ୍ନି ମୃଳୀକଂ ସୁହବୋ ନ ଏଧି ସ୍ୱାହା ॥
ଇଦମଗ୍ନୀ ବରୁଣାଭ୍ୟାମ୍-ଇଦନ୍ନ ମମ ॥ ୨ ॥
(ଋ: ମଂ: ୪ । ସୂ ୧ । ମଂ: ୪,୫)

ଓଁ ଇମଂ ମେ ବରୁଣ ଶ୍ରୁଧୀ ହବମଦ୍ୟା ଚ ମୃଡୟ ।
ତ୍ୱାମବସ୍ୟୁରା ଚକେ ସ୍ୱାହା । ଇଦଂ ବରୁଣାୟ—ଇଦନ୍ନ
ମମ ॥ ୩ ॥ (ଋ: ମଂ: ୧ । ସୂ ୨୫ । ମଂ ୧୯)

ଓଁ ତତ୍ତ୍ୱା ଯାମି ବ୍ରହ୍ମଣା ବନ୍ଦମାନସ୍ତଦା ଶାସ୍ତେ ଯଜମାନୋ
ହବିର୍ଭିଃ। ଅହେଡମାନୋ ବରୁଣେହ ବୋଧ୍ୟୁରୁଶଂସ ମା
ନ ଆୟୁଃ ପ୍ର ମୋଷୀଃ ସ୍ୱାହା । ଇଦଂ ବରୁଣାୟ-ଇଦନ୍ନ
ମମ ॥ ୪ ॥ (ଋଗ୍ ୧।୨୪।୧୧)

ଓଁ ଯେତେ ଶତଂ ବରୁଣ ଯେ ସହସ୍ରଂ ଯଜ୍ଞିୟାଃ ପାଶା
ବିତତା ମହାନ୍ତଃ । ତେଭିର୍ନୋ ଅଦ୍ୟ ସବିତୋତ ବିଷ୍ଣୁ-
ର୍ବିଶ୍ୱେ ମୁଞ୍ଚନ୍ତୁ ମରୁତଃ ସ୍ୱର୍କାଃ ସ୍ୱାହା । ଇଦଂ ବରୁଣାୟ
ସବିତ୍ରେ ବିଷ୍ଣବେ ବିଶ୍ୱେଭ୍ୟୋ ଦେବେଭ୍ୟୋ ମରୁଦ୍‌ଭ୍ୟଃ
ସ୍ୱର୍କେଭ୍ୟଃ – ଇଦନ୍ନ ମମ ॥ ୫ ॥
(କାତ୍ୟାୟନ ଶ୍ରୌତ ସୂତ୍ର ୨୫।୧୧)

ଓଁ ଅୟାଶ୍ଚାଗ୍ନେଽସ୍ୟନଭିଶସ୍ତିପାଶ୍ଚ ସତ୍ୟମିତ୍ତ୍ୱମୟାଽସି ।
ଅୟା ନୋ ଯଜ୍ଞଂ ବହାସ୍ୟୟା ନୋ ଧେହି ଭେଷଜଂ ସ୍ୱାହା
ଇଦମଗ୍ନୟେ ଅୟସେ· ଇଦନ୍ନ ମମ ॥ ୬ ॥
(କାତ୍ୟାୟନ ଶ୍ରୌତ ଅ: ୨୫ । ମଂ: ୧୧)

**ଓଁ ଉଦୁତ୍ତମଂ ବରୁଣ ପାଶମସ୍ମଦ୍‌ବାଧମଂ ବି ମଧ୍ୟମଂ ଶ୍ରଥାୟ । ଅଥା ବୟମାଦିତ୍ୟ ବ୍ରତେ ତବାନାଗସୋ ଅଦିତୟେ ସ୍ୟାମ ସ୍ୱାହା ॥ ଇଦଂ ବରୁଣାୟାଽଽଦିତ୍ୟାୟାଽ-ଦିତୟେ ଚ-ଇଦନ୍ନ ମମ ॥ ୭ ॥**

(ଋଗ୍‌ବେଦ ମଂ: ୧ । ସୂ: ୨୪ । ୧୫)

**ଓଁ ଭବତଂ ନଃ ସମନସୌ ସଚେତସାବରେପସୌ । ମା ଯଜ୍ଞଁ ହିଁସିଷ୍ଟଂ ମା ଯଜ୍ଞପତିଂ ଜାତବେଦସୌ ଶିବୌ ଭବତମଦ୍ୟ ନଃ ସ୍ୱାହା ॥ ଇଦଂ ଜାତବେଦୋଭ୍ୟଂ ଇଦନ୍ନ ମମ ॥ ୮ ॥** (ଯଜୁ ଅ: ୫ । ମଂ: ୩)

ସମସ୍ତ ସଂସ୍କାରରେ ଯଜମାନହିଁ ମଧୁର ସ୍ୱରରେ ମନ୍ତ୍ରୋଚ୍ଚାରଣ କରିବେ, ଦ୍ରୁତ ବା ମନ୍ଥର ଗତିରେ ଉଚ୍ଚାରଣ କରିବେ ନାହିଁ । ଯେଉଁ ବେଦର ଉଚ୍ଚାରଣ ଯେପରି, ସେହି ଅନୁସାରେ ମଧ୍ୟମ ଗତିରେ ଉଚ୍ଚାରଣ କରିବେ । ଯଜମାନ ଯଦି ପଢ଼ି ନ ଜାଣନ୍ତି, ତେବେ ଏହି ମନ୍ତ୍ରଗୁଡ଼ିକ ତ ଅବଶ୍ୟ ଶୁଣି ପଢ଼ିବେ । ଯଦି କେହି କାର୍ଯ୍ୟକର୍ତ୍ତା ଜଡ଼, ମନ୍ଦମତି ଓ ଅତିମୂର୍ଖ ହୁଅନ୍ତି, ତେବେ ସେ ଶୂଦ୍ର । ଶୂଦ୍ର ମନ୍ତ୍ର ଉଚ୍ଚାରଣରେ ଅସମର୍ଥ ହେଲେ, ପୁରୋହିତ ଓ ଋତ୍ୱିକ୍ ମନ୍ତ୍ରୋଚ୍ଚାରଣ କରିବେ । କିନ୍ତୁ କର୍ମ ସେହି ମୂର୍ଖ ଯଜମାନ ଦ୍ୱାରାହିଁ କରାଇବେ ।

ପରେ ସ୍ରୁବା ଘୃତପୂର୍ଣ୍ଣ କରି ନିମ୍ନଲିଖିତ ମନ୍ତ୍ରରେ ପୂର୍ଣ୍ଣାହୁତି ପ୍ରଦାନ କରିବେ—

## ପୂର୍ଣ୍ଣାହୁତି

**ଓଁ ସର୍ବଂ ବୈ ପୂର୍ଣ୍ଣଂ ସ୍ୱାହା ॥**

ଏହି ମନ୍ତ୍ରରେ ଗୋଟିଏ ଆହୁତି ଦେବେ । ଏହାପରେ ଦ୍ୱିତୀୟ ଓ ତୃତୀୟ ଆହୁତି ଦେବେ ।

## ଭୋଜନ ଓ ଦକ୍ଷିଣା

ଯାହାଙ୍କୁ ଦକ୍ଷିଣା ଦେବା ଦରକାର ଦେବେ। ଯାହାଙ୍କୁ ଭୋଜନ କରାଇବା ଦରକାର କରାଇବେ । ଦକ୍ଷିଣାନ୍ତେ ସମସ୍ତଙ୍କୁ ବିଦାୟ ଦେଇ ସ୍ୱାମୀ ଓ ସ୍ତ୍ରୀ ପ୍ରଥମେ ସଜ୍ଞାବଶିଷ୍ଟ ଘୃତ, ଅନ୍ନ ବା ମୋହନଭୋଗ ସେବନ କରି ପରେ ତୃପ୍ତି ସହକାରେ ଉତ୍ତମାନ୍ନ ଭୋଜନ କରିବେ ।

## ମାଙ୍ଗଳିକ କାର୍ଯ୍ୟ

ଗର୍ଭାଧାନଠାରୁ ସନ୍ନ୍ୟାସ ପର୍ଯ୍ୟନ୍ତ ସମସ୍ତ ସଂସ୍କାରରେ ନିମ୍ନଲିଖିତ ସାମବେଦୋକ୍ତ ବାମଦେବ୍ୟ ଗାନ ନିଶ୍ଚୟ କରିବେ । ସେ ମନ୍ତ୍ରଗୁଡ଼ିକ ନିମ୍ନରେ ଦିଆଗଲା—

**ଓଁ ଭୂର୍ଭୁବଃ ସ୍ୱଃ । କୟା ନଶ୍ଚିତ୍ର ଆ ଭୁବଦୂତୀ ସଦାବୃଧଃ ସଖା । କୟା ଶଚିଷ୍ଠୟା ବୃତା ॥ ୧ ॥**

**ଓଁ ଭୂର୍ଭୁବଃ ସ୍ୱଃ । କସ୍ତ୍ୱା ସତ୍ୟୋ ମଦାନାଂ ମଁହିଷ୍ଠୋ ମତ୍ସଦନ୍ଧସଃ । ଦୃଢ଼ା ଚିଦାରୁଜେ ବସୁ ॥ ୨ ॥**

**ଓଁ ଭୂର୍ଭୁବଃ ସ୍ୱଃ । ଅଭୀ ଷୁ ଣଃ ସଖୀନାମବିତା ଜରିତୃଣାମ୍ । ଶତଂ ଭବାସ୍ୟୂତୟେ ॥ ୩ ॥**

**ମହାବାମଦେବ୍ୟମ୍ - କା୨ଽ୪ୟା । ନଶ୍ଚା୩ ଇତ୍ରା ୩ ଆଭୁବାତ୍ । ଊ । ତୀ ସଦାବୃଧଃ ସ । ଖା । ଔ୩ହୋହାୟି । କୟା ୨୩ ଶଚ୍ଛିୟି । ଷ୍ଠଯୌହୋ୩ । ହୁମ୍ମା୨ । ବା୨ର୍ତ୍ତୋ- ୩ା୨ଽ୪ହାୟି ॥ (୧) ॥**

କା୨୪୫ସ୍ତ୍ୱା । । ସଚେତ୍ୟାଗ ମା୩ଦାନାମ୍ । ମା । ହ୍ୱିଷ୍ଟୋ
ମାସ୍ରାଦନ୍ଧ । ଯା । ଔ୬ ହୋହ୍ୱାଇ । ଦୃଢ଼ା ୨୩ ଚଦା ।
ରୁକୌହୋ୩ । ହୁମ୍ମା୨ । ବା୨୩ସୋ୩୨୪ ହ୍ୱାୟି ॥ (୨)॥
ଆ୨୪୫ଭୀ । ଷୁ ଣା୪୩ ସା୬ ଖୀନାମ୍ । ଆ । ବତା
କରସ୍ୱିତୃଣାମ୍ । ଔ୩ ହୋ ହାୟି । ଶତା ୨୩ ମୂବା ।
ସିଷ୍ୱୌହୋ୩ ହୁମ୍ମା୨ । ଭା୨୨ ଯୋ୩୨୪ହାୟି ॥ ୩ ॥

(ସାମ: ଉତ୍ତରାର୍ଚ୍ଚିକେ ଅଧ୍ୟାୟ ୧ । ଖଂ ୪ । ମଂ ୧,୨,୩)

## ବିଦାୟ ସମ୍ଭାଷଣ

ଏହି ବାମଦେବ ଗାନ ହେବାପରେ ଗୃହସ୍ଥ ସ୍ତ୍ରୀ, ପୁରୁଷ ଓ କାର୍ଯ୍ୟକର୍ତ୍ତା ସଦ୍ଧର୍ମୀ, ଲୋକପ୍ରିୟ, ପରୋପକାରୀ ସଜ୍ଜନ ବିଦ୍ୱାନ୍ ବା ତ୍ୟାଗୀ ପକ୍ଷପାତ ରହିତ, ବିଦ୍ୟାପ୍ରଚାର ଓ ବିଶ୍ୱକଲ୍ୟାଣ ପାଇଁ ଉତ୍ସର୍ଗୀକୃତ ପ୍ରାଣ ସନ୍ନ୍ୟାସୀମାନଙ୍କୁ ନମସ୍କାର, ଆସନ, ଅନ୍ନ, ଜଳ, ବସ୍ତ୍ର, ପାତ୍ର ଓ ଧନଦାନାଦିଦ୍ୱାରା ଉତ୍ତମ ରୂପେ ଯଥାଶକ୍ତି ସତ୍କାର କରିବେ । ଦର୍ଶନାର୍ଥୀମାନଙ୍କୁ ମଧ୍ୟ ଆଦର ଅଭ୍ୟର୍ଥନା କରି ବିଦାୟ କରିବେ । ଯେଉଁମାନେ ସଂସ୍କାର କାର୍ଯ୍ୟ ଦେଖିବାକୁ ଚାହାଁନ୍ତି, ସେମାନେ ପୃଥକ୍ ପୃଥକ୍ ମୌନଭାବେ ଉପବେଶନ କରିବେ । କେହି ଅନ୍ଦରକାରୀ କଥାବାର୍ତ୍ତା ବା ଅଯଥା ଗଣ୍ଡଗୋଳ କରିବେ ନାହିଁ । ସମସ୍ତେ ମନଯୋଗୀ, ପ୍ରସନ୍ନ ମୁଖ ଥିବେ । ବିଶେଷଭାବରେ କର୍ମକର୍ତ୍ତା ଓ ପୁରୋହିତ ଶାନ୍ତି, ଧୈର୍ଯ୍ୟ ଏ ବିଚାରପୂର୍ବକ କ୍ରମାନୁସାରେ କର୍ମ କରିବେ ବା କରାଇବେ । ଏହି ସାମାନ୍ୟ ବିଧି ସମସ୍ତ ସଂସ୍କାରରେ କରିବା କର୍ତ୍ତବ୍ୟ ।

ଇତି ସାମାନ୍ୟପ୍ରକରଣମ୍ ।

—:o:—

# ଅଥ ଗର୍ଭାଧାନବିଧିଂ ବକ୍ଷାମଃ

**ନିଷେକାଦିଶ୍ମଶାନାନ୍ତୋ ମନ୍ତ୍ରୈର୍ଯସ୍ୟୋଦିତୋ ବିଧିଃ ॥**

(ମନୁସ୍ମୃତି ଦ୍ୱିତୀୟାଧ୍ୟାୟେ ଶ୍ଳୋକ ୧୬)

**ଅର୍ଥ**— ମନୁଷ୍ୟର ଶରୀର ଓ ଆତ୍ମାର କଲ୍ୟାଣ ନିମନ୍ତେ ନିଷେକ ଅର୍ଥାତ୍ ଗର୍ଭାଧାନ ଠାରୁ ଆରମ୍ଭ କରି ଶ୍ମଶାନାନ୍ତ ଅର୍ଥାତ୍ ଅନ୍ତ୍ୟେଷ୍ଟି ମୃତ୍ୟୁର ପଶ୍ଚାତ୍ ମୃତ ଶରୀରର ବିଧି ପୂର୍ବକ ଦାହ କରିବା ପର୍ଯ୍ୟନ୍ତ ୧୬ ସଂସ୍କାର ।

ଶରୀରର ଆରମ୍ଭ ଗର୍ଭାଧାନ ଓ ଶରୀର ଅନ୍ତରେ ଏହାକୁ ଭସ୍ମ କରିଦେବା ପର୍ଯ୍ୟନ୍ତ ଷୋହଳ ସଂସ୍କାରବିଧି ଉତ୍ତମ ରୂପେ କରିବାକୁ ହୁଏ । ସେମାନଙ୍କ ମଧ୍ୟରୁ ପ୍ରଥମ —ଗର୍ଭାଧାନ ସଂସ୍କାର— ଗର୍ଭାଧାନ ସଂସ୍କାର ତାହାକୁ କୁହାଯାଏ ଯେ —"**ଗର୍ଭସ୍ୟାଽଽଧାନଂ ବୀର୍ଯ୍ୟସ୍ଥାପନଂ ସ୍ଥିରୀକରଣଂ ଯସ୍ମିନ୍ ଯେନ ବା କର୍ମଣା ତଦ୍ ଗର୍ଭାଧାନମ୍**" ଗର୍ଭ ଧାରଣ ଅର୍ଥାତ୍ ଗର୍ଭାଶୟରେ ବୀର୍ଯ୍ୟ-ସ୍ଥାପନ ସ୍ଥିରୀକରଣ ଯେଉଁ କ୍ରିୟାଦ୍ୱାରା ହୁଏ, ତାହାକୁ ଗର୍ଭାଧାନ ସଂସ୍କାର କୁହାଯାଏ ।

ବୀଜ ଏବଂ କ୍ଷେତ୍ର ଉତ୍ତମ ହେବାଦ୍ୱାରା ଯେପରି ଅନ୍ନାଦି ପଦାର୍ଥ ମଧ୍ୟ ଉତ୍ତମ ହୁଏ, ସେପରି ଉତ୍ତମ ବଳବାନ ସ୍ତ୍ରୀ ପୁରୁଷଙ୍କ ଦ୍ୱାରା ସନ୍ତାନ ମଧ୍ୟ ଉତ୍ତମ ହୁଏ । ଏଥି ନିମନ୍ତେ ପୂର୍ଣ୍ଣ ଯୁବାବସ୍ଥା ପର୍ଯ୍ୟନ୍ତ ଅର୍ଥାତ୍ କନ୍ୟା ବୟସ ୧୬ ( ଷୋହଳ ) ଓ ପୁରୁଷ ୨୫ ( ପଚିଶ ) ବର୍ଷ ଯଥାବିଧି ବ୍ରହ୍ମଚର୍ଯ୍ୟ ପାଳନ ଓ ବିଦ୍ୟାଭ୍ୟାସ କରିବେ ଏବଂ ତଦପେକ୍ଷା ଅଧିକ ବୟସର ହେଲେ ଉତ୍ତମ । କାରଣ ଷୋହଳ ବର୍ଷ ଅତୀତ ନହେଲେ ଗର୍ଭାଶୟରେ ସନ୍ତାନର ଶରୀର ଯଥୋପଯୁକ୍ତଭାବେ

ବର୍ଦ୍ଧିତ ହେବାପାଇଁ ସ୍ଥାନ ହୁଏନାହିଁ ଏବଂ ସ୍ତ୍ରୀର ଶରୀରରେ ଗର୍ଭ ଧାରଣର ତଥା ପୋଷଣର ସାମର୍ଥ୍ୟ ନଥାଏ । ୨୫ (ପଚିଶ) ବର୍ଷ ଅତୀତ ନ ହେଲେ ପୁରୁଷର ବୀର୍ଯ୍ୟ ମଧ୍ୟ ଉତ୍ତମ ହୁଏନାହିଁ ।

## ବିବାହୋଚିତ କାଳ

**ପଞ୍ଚବିଂଶେ ତତୋ ବର୍ଷେ ପୁମାନ୍ନାରୀ ତୁ ଷୋଡଶେ ।**
**ସମତ୍ୱାଗତବୀର୍ଯ୍ୟୌ ତୌ ଜାନୀୟାତ୍ କୁଶଲୋ ଭିଷକ୍ ।୧।**

(ସୁଶ୍ରୁତେ ସୂତ୍ରସ୍ଥାନେ ଅ: ୩୫ । ଶ୍ଳୋକ ୧୩)

**ଊନଷୋଡଶବର୍ଷାୟାମପ୍ରାପ୍ତଃ ପଞ୍ଚବିଂଶତିମ୍ ।**
**ଯଦ୍ୟାଧତ୍ତେ ପୁମାନ୍ ଗର୍ଭଂ କୁକ୍ଷିସ୍ଥଃ ସ ବିପଦ୍ୟତେ ।। ୨।।**
**ଜାତୋ ବା ନ ଚିରଂ ଜୀବେଜ୍ଜୀବେଦ୍ୱା ଦୁର୍ବଳେନ୍ଦ୍ରିୟଃ ।**
**ତସ୍ମାଦତ୍ୟନ୍ତବାଳାୟାଂ ଗର୍ଭାଧାନଂ ନ କାରୟେତ୍ ।। ୩ ।।**

(ସୁଶ୍ରୁତେ ଶାରୀରସ୍ଥାନେ ଅ: ୧୦ । ଶ୍ଳୋ ୪୬,୪୭)

ଏ ଗୁଡ଼ିକ ସୁଶ୍ରୁତର ଶ୍ଳୋକ । ଶରୀରର ଉନ୍ନତି ବା ଅବନତିର ବିଧି ବୈଦ୍ୟକ ଶାସ୍ତ୍ରରେ ଯେପରି ଅଛି,ଅନ୍ୟତ୍ର ସେପରି ନାହିଁ । ଏହାର ମୂଳ ବିଧାନ, ପରେ ବେଦାରମ୍ଭ ସଂସ୍କାରରେ ଲେଖାଯିବ, ଅର୍ଥାତ୍ କେଉଁ କେଉଁ ବୟସରେ କେଉଁ କେଉଁ ଧାତୁ କି କି ପ୍ରକାରେ କଞ୍ଚା ବା ପକ୍ୱ ହୁଏ ବୃଦ୍ଧି ବା କ୍ଷୟ ହୁଏ, ଏ ସମସ୍ତ ବିଷୟ ବୈଦ୍ୟକ ଶାସ୍ତ୍ରରେ ଲିଖିତ ଅଛି । ସେଥିପାଇଁ ଗର୍ଭାଧାନ ସଂସ୍କାରାଦି କରିବା ନିମନ୍ତେ ବୈଦ୍ୟକ ଶାସ୍ତ୍ରର ଆଶ୍ରୟ ନେବା ବିଶେଷ ପ୍ରୟୋଜନ ।

ବର୍ତ୍ତମାନ ଦେଖନ୍ତୁ--ସମଗ୍ର ବିଦ୍ୱାନ୍ ମଣ୍ଡଳୀ ଯେଉଁ ବୈଦ୍ୟଶ୍ରେଷ୍ଠ ସୁଶ୍ରୁତକାରଙ୍କର ପ୍ରାମାଣିକତା ସ୍ୱୀକାର କରନ୍ତି, ସେ ବିବାହ ଏବଂ

ଗର୍ଭାଧାନର ସମୟ ଅନ୍ୟୂନ କନ୍ୟା ପାଇଁ ୧୬ ବର୍ଷ ଏବଂ ପୁରୁଷ ପାଇଁ ୨୫ ବର୍ଷ ହେବା ଆବଶ୍ୟକ ବୋଲି ଲେଖିଛନ୍ତି । ଯେତିକି ସାମର୍ଥ୍ୟ ୨୫ ବର୍ଷ ବୟସରେ ପୁରୁଷର ଶରୀରରେ ଜନ୍ମେ, ସେହି ସାମର୍ଥ୍ୟ ୧୬ ବର୍ଷ ବୟସରେ କନ୍ୟା ଶରୀରରେ ଜନ୍ମେ । ଏହି କାରଣରୁ ବୈଦ୍ୟଗଣ ପୂର୍ବୋକ୍ତ ଅବସ୍ଥାରେ ଉଭୟଙ୍କୁ ସମବୀର୍ଯ୍ୟ ଅର୍ଥାତ୍ ତୁଲ୍ୟ ସାମର୍ଥ୍ୟ ବା ସମ-ସାମର୍ଥ୍ୟବାନ ବୋଲି ଜାଣନ୍ତି ।

ଯଦି ୧୬ ବର୍ଷରୁ ନ୍ୟୂନବୟସର ସ୍ତ୍ରୀର ଗର୍ଭାଶୟରେ ୨୫ବର୍ଷରୁ ନ୍ୟୂନ ବୟସର ପୁରୁଷ ଗର୍ଭାଧାନ କରେ ତେବେ ସେହି ଗର୍ଭ ଉଦରରେ ହିଁ ବିନଷ୍ଟ ହୁଏ । ଯଦିଓ ସନ୍ତାନ ଜନ୍ମ ନିଏ, ଅଧିକ ଦିନ ଜୀବିତ ରହିପାରେ ନାହିଁ ଜୀବିତ ରହିଲେ ମଧ୍ୟ ତାହାର ଶରୀର ଓ ଇନ୍ଦ୍ରିୟ ଅତ୍ୟନ୍ତ ଦୁର୍ବଳ ହୋଇ ରହେ । ସୁତରାଂ ଅଳ୍ପ ବୟସର ବାଳିକା ଅର୍ଥାତ୍ ୧୬ବର୍ଷ ବୟସରୁ କମ୍ ବୟସର ସ୍ତ୍ରୀଠାରେ କଦାପି ଗର୍ଭାଧାନ କରିବା ଉଚିତ ନୁହେଁ । ସେହି ସୁଶ୍ରୁତରେ ଏହା ମଧ୍ୟ ଲେଖାଅଛି—

**ଚତସ୍ରୋଽବସ୍ଥାଃ ଶରୀରସ୍ୟ ବୃଦ୍ଧିର୍ଯୌବନଂ ସଂପୂର୍ଣ୍ଣତା କିଞ୍ଚିତ୍ପରିହାଣିଶ୍ଚେତି । ଆଷୋଡଶାଦ୍ବୃଦ୍ଧିଃ ଆଚତୁର୍ବିଂଶତେ ର୍ଯୌବନମାଚତ୍ୱାରିଂଶତଃ ସମ୍ପୂର୍ଣ୍ଣତା ତତଃ କିଞ୍ଚିତ୍ପରିହାଣିଶ୍ଚେତି** ।(ସୁ: ସୂତ୍ରସ୍ଥାନ ଅ:୩୫ । ସୂ ୨୯)

ଅର୍ଥ—ଷୋହଳ ବର୍ଷ ପରେ ମନୁଷ୍ୟ ଶରୀରରେ ସମସ୍ତ ଧାତୁର ବୃଦ୍ଧି, ପଚିଶ ବର୍ଷରେ ଯୁବାବସ୍ଥାର ଆରମ୍ଭ, ଚାଳିଶ ବର୍ଷରେ ଯୁବାବସ୍ଥାର ପୂର୍ଣ୍ଣତା ଅର୍ଥାତ୍ ସମସ୍ତ ଧାତୁର ପୂର୍ଣ୍ଣ ପୁଷ୍ଟି ହୁଏ ଏବଂ ତାହା ପରେ କିଛି କିଛି ଧାତୁ, ବୀର୍ଯ୍ୟର ହାନି ହୁଏ । ଚାଳିଶ ବର୍ଷରେ

ସମସ୍ତ ଅବୟବ ପୂର୍ଣ୍ଣ ହୋଇଯାଏ । ପରେ ପାନାହାର ଦ୍ୱାରା ଯେଉଁ ଧାତୁ ବୀର୍ଯ୍ୟ ଉତ୍ପନ୍ନ ହୁଏ ତାହା କଣ୍ଟୁ କଣ୍ଟୁ କ୍ଷୀଣ ହୋଇଯାଏ ।

ଏହାଦ୍ୱାରା ସିଦ୍ଧ ହେଲା ଯେ, ଯଦି ଶୀଘ୍ର ବିବାହ ଦିଆଯାଏ କନ୍ୟାର ବୟସ ଅନ୍ତତଃ ୧୬ ଷୋହଳ ବର୍ଷ ଏବଂ ପୁରୁଷର ବୟସ ଅନ୍ତତଃ ୨୫ ବର୍ଷ ଅବଶ୍ୟ ହେବା ଉଚିତ । କନ୍ୟାର ବୟସ ୨୦ (କୋଡ଼ିଏ) ବର୍ଷ ଏବଂ ପୁରୁଷର ୪୦ ବର୍ଷ ପର୍ଯ୍ୟନ୍ତ "ମଧ୍ୟମ ଅବସ୍ଥା" ଏବଂ କନ୍ୟାର ବୟସ ୨୪ (ଚବିଶ) ଏବଂ ପୁରୁଷର ୪୮ (ଅଠଚାଳିଶ) ବର୍ଷ ପର୍ଯ୍ୟନ୍ତ ଉତ୍ତମ ଅବସ୍ଥା ।

ଯେଉଁମାନେ ଦୀର୍ଘାୟୁ, ସୁଶୀଳ, ବୁଦ୍ଧିମାନ, ବଳବାନ୍, ପରାକ୍ରମଶାଳୀ, ବିଦ୍ୱାନ ଓ ଶ୍ରୀମାନ ସନ୍ତତି ଲାଭକରି ବଂଶର ଉନ୍ନତି କାମନା କରନ୍ତି, ସେମାନେ ୧୬ ବର୍ଷ ପୂର୍ବରୁ କନ୍ୟା ଏବଂ ପଚିଶ ବର୍ଷ ପୂର୍ବରୁ ପୁତ୍ରର ବିବାହ କଦାଚିତ ଦେବେ ନାହିଁ । ଏହାହିଁ ସମସ୍ତ ସଂସ୍କାର ମଧ୍ୟରେ ପ୍ରକୃତ ସଂସ୍କାର, ସର୍ବ ସୌଭାଗ୍ୟ ମଧ୍ୟରେ ପ୍ରକୃତ ସୌଭାଗ୍ୟ, ସମସ୍ତ ଉନ୍ନତି ମଧ୍ୟରେ ପ୍ରକୃତ ଉନ୍ନତି କରିବାଯୁକ୍ତ କର୍ମ । ଏହି ଅବସ୍ଥାରେ ବ୍ରହ୍ମଚର୍ଯ୍ୟ ପାଳନ ଦ୍ୱାରା ନିଜର ପୁତ୍ର କନ୍ୟା ଗଣଙ୍କର ବିଦ୍ୟା ଓ ସୁଶିକ୍ଷା ଦାନର ବ୍ୟବସ୍ଥା କରିବେ, ଯଦ୍ୱାରା ସୁସନ୍ତାନ ଲାଭହେବ ।

## ଋତୁଦାନ କାଳ

**ଋତୁକାଲାଭିଗାମୀସ୍ୟାତ୍ ସ୍ୱଦାରନିରତଃସଦା ।**
**ପର୍ବବର୍ଜଂ ବ୍ରଜେଚ୍ଚୈନାଂ ତଦ୍‌ବ୍ରତୋ ରତିକାମ୍ୟୟା ॥୧॥**
**ଋତୁଃ ସ୍ୱାଭାବିକଃ ସ୍ତ୍ରୀଣାଂ ରାତ୍ରୟଃ ଷୋଡଶ ସ୍ମୃତାଃ ।**
**ଚତୁର୍ଭିରିତରୈଃ ସାର୍ଦ୍ଧମହୋଭିଃ ସଦ୍ବିଗର୍ହିତୈଃ ॥ ୨ ॥**

ତାସାମାଦ୍ୟାଶ୍ଚତସ୍ରସ୍ତୁ ନିନ୍ଦିତୈକାଦଶୀ ଚ ଯା ।
ତ୍ରୟୋଦଶୀ ଚ ଶେଷାସ୍ତୁ ପ୍ରଶସ୍ତା ଦଶ ରାତ୍ରୟଃ ।। ୩ ।।
ଯୁଗ୍ମାସୁ ପୁତ୍ରା ଜାୟନ୍ତେ ସ୍ତ୍ରିୟୋଽଯୁଗ୍ମାସୁ ରାତ୍ରିଷୁ ।
ତସ୍ମାତ୍ ଯୁଗ୍ମାସୁ ପୁତ୍ରାର୍ଥୀ ସଂବିଶେଦାର୍ତ୍ତବେ ସ୍ତ୍ରିୟମ୍ ।୪ ।
ପୁମାନ୍ ପୁଂସୋଽଧିକେ ଶୁକ୍ରେ ସ୍ତ୍ରୀ ଭବତ୍ୟଧିକେ ସ୍ତ୍ରିୟାଃ ।
ସମେ ପୁମାନ୍ ପୁଂସ୍ତ୍ରିୟୌ ବା କ୍ଷୀଣେଽଲ୍ପେ ଚ ବିପର୍ଯ୍ୟୟଃ ।।
ନିନ୍ଦ୍ୟାସ୍ୱଷ୍ଟାସୁ ଚାନ୍ୟାସୁ ସ୍ତ୍ରିୟୋ ରାତ୍ରିଷୁ ବର୍ଜୟନ୍ ।
ବ୍ରହ୍ମଚାର୍ଯ୍ୟେବ ଭବତି ଯତ୍ର ତତ୍ରାଶ୍ରମେ ବସନ୍ ।। ୨ ।।
(ମନୁସ୍ମୃତି ଅ: ୩ । ଶ୍ଳୋ ୪୫ – ୫୦)

**ଅର୍ଥ** ମନୁ ଆଦି ମହର୍ଷିଗଣ ଋତୁଦାନର ସମୟ ନିମ୍ନଲିଖିତ ଭାବେ ନିର୍ଣ୍ଣୟ କରିଛନ୍ତି—

ପୁରୁଷ ସର୍ବଦା ଋତୁକାଳରେହିଁ ସ୍ତ୍ରୀ ସମାଗମ କରିବ ଏବଂ ନିଜ ସ୍ତ୍ରୀ ବ୍ୟତୀତ ପର ସ୍ତ୍ରୀ ସର୍ବଦା ପରିତ୍ୟାଗ କରିବ । ସେହିପରି ସ୍ତ୍ରୀ ମଧ୍ୟ ନିଜର ବିବାହିତ ସ୍ୱାମୀ ବ୍ୟତୀତ ପରପୁରୁଷ ଠାରୁ ସର୍ବଦା ପୃଥକ ରହିବ । ଯେପରି ପତିବ୍ରତା ସ୍ତ୍ରୀ ସ୍ୱୀୟ ବିବାହିତ ସ୍ୱାମୀ ବ୍ୟତୀତ କେବେ ମଧ୍ୟ ପରପୁରୁଷ ସଙ୍ଗ କରିବନାହିଁ, ସେହିପରି ସ୍ତ୍ରୀବ୍ରତ ପୁରୁଷ ମଧ୍ୟ ନିଜ ବିବାହିତ ସ୍ତ୍ରୀଠାରେ ପ୍ରସନ୍ନ ରହିବ । ଋତୁଦାନର ସମୟରେ ପୁରୁଷ, ପର୍ବ ଅର୍ଥାତ୍ ୧୬ (ଷୋହଳ) ଦିନ ମଧ୍ୟରେ ଯଦି ପୂର୍ଣ୍ଣିମା, ଅମାବାସ୍ୟା, ଚତୁର୍ଦ୍ଦଶୀ ବା ଅଷ୍ଟମୀ ପଡ଼େ ତାହାହେଲେ ଏ ତିଥିଗୁଡ଼ିକ ପରିତ୍ୟାଗ କରିବେ । ଏଇ ସବୁ ତିଥିରେ ସ୍ତ୍ରୀ ପୁରୁଷ କଦାଚିତ ରତିକ୍ରିୟା କରିବେ ନାହିଁ । ୧ ।

ନାରୀର ସ୍ୱାଭାବିକ ଋତୁକାଳ ୧୬ ରାତ୍ରୀ ଅର୍ଥାତ୍ ରଜୋଦର୍ଶନ ଦିନଠାରୁ ପରବର୍ତ୍ତୀ ୧୬ ଦିନ ପର୍ଯ୍ୟନ୍ତ ଋତୁ ସମୟ । ଏହା ମଧ୍ୟରେ

ପ୍ରଥମ ୪ ଚାରି ରାତ୍ରି ରଜସ୍ୱଳା ହେବା ଦିନଠାରୁ ଚାରିଦିନ ନିନ୍ଦିତ ଅର୍ଥାତ୍ ନିଷିଦ୍ଧ । ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ରାତ୍ରିରେ ପୁରୁଷ ସ୍ତ୍ରୀକୁ ସ୍ପର୍ଶ କରିବନାହିଁ ଏବଂ ସ୍ତ୍ରୀ ମଧ୍ୟ ପୁରୁଷ ସଂସ୍ପର୍ଶରେ ଆସିବ ନାହିଁ । ରଜସ୍ୱଳା ସ୍ତ୍ରୀ ହାତରୁ ଜଳ ମଧ୍ୟ ପାନ କରିବନାହିଁ । ରଜସ୍ୱଳା ସ୍ତ୍ରୀ କୌଣସି କାମ କରିବ ନାହିଁ କେବଳ ଏକାନ୍ତ ନିର୍ଜନ ସ୍ଥାନରେ ବସି ରହିବ । କାରଣ ଏହି ଚାରି ରାତ୍ରିରେ ସମାଗମ ନିରର୍ଥକ ଓ ମହାରୋଗୋତ୍ପାଦକ, ଯେପରି ବଥ ହେଲେ ପୂଜ ବା ରକ୍ତ ବାହାରେ, ସେହିପରି ସ୍ତ୍ରୀର ଶରୀରରୁ ରଜଃ ଅର୍ଥାତ୍ ଏକପ୍ରକାର ବିକୃତ ଉଷ୍ଣ ରକ୍ତ ନିର୍ଗତ ହୁଏ । ୨ ।

ଋତୁଦାନ ସମ୍ବନ୍ଧରେ ଯେପରି ପ୍ରଥମ ଚାରି ରାତ୍ରି ନିନ୍ଦିତ ବା ନିଷିଦ୍ଧ । ସେହିପରି ଏକାଦଶ ଏବଂ ତ୍ରୟୋଦଶ ରାତ୍ରୀ ମଧ୍ୟ ନିନ୍ଦିତ ଓ ଅବଶିଷ୍ଟ ଦଶରାତ୍ରୀ ଋତୁଦାନ ପକ୍ଷେ ଶ୍ରେଷ୍ଠ । ୩ ।

ପୁତ୍ର କାମୀ ବ୍ୟକ୍ତି ଷଷ୍ଠ, ଅଷ୍ଟମ, ଦଶମ, ଦ୍ୱାଦଶ, ଚତୁର୍ଦ୍ଦଶ ଷୋଡ଼ଶ ଏହି ଛ' ରାତ୍ରି ଋତୁଦାନ ନିମନ୍ତେ ଉତ୍କୃଷ୍ଟ, କିନ୍ତୁ ଉଲ୍ଲିଖିତ ରାତ୍ରୀଗୁଡ଼ିକ ଉତ୍ତରୋତ୍ତର ଅର୍ଥାତ୍ ଛ' ଅପେକ୍ଷା ୮, ଆଠ ଅପେକ୍ଷା ୧୦, ଦଶ ଅପେକ୍ଷା ୧୨ ଇତ୍ୟାଦି କ୍ରମେ ଶ୍ରେଷ୍ଠ । କନ୍ୟାଲାଭ ଇଚ୍ଛୁକ ବ୍ୟକ୍ତି ପକ୍ଷେ, ପଞ୍ଚମ, ସପ୍ତମ, ନବମ, ପଞ୍ଚଦଶ ଏଇ ଚାରି ରାତ୍ରୀ * ଉତ୍କୃଷ୍ଟ, ପୁତ୍ରାର୍ଥୀ ଯୁଗ୍ମ ରାତ୍ରୀରେ ଋତୁଦାନ କରିବେ । ୪ ।

ପୁରୁଷର ବୀର୍ଯ୍ୟ ଅଧିକ ହେଲେ ପୁତ୍ର, ସ୍ତ୍ରୀର ରଜଃ ଅଧିକ ହେଲେ କନ୍ୟା ଏବଂ ରଜୋବୀର୍ଯ୍ୟ ସମାନ ହେଲେ ନପୁଂସକ ପୁରୁଷ ବା ବନ୍ଧ୍ୟା ସ୍ତ୍ରୀ ଜନ୍ମେ । ପୁରୁଷର ବୀର୍ଯ୍ୟ ଅଳ୍ପ ବା କ୍ଷୀଣ ହେଲେ ଗର୍ଭ ସଞ୍ଚାର ହେବନାହିଁ, ହେଲେ ମଧ୍ୟ ଗର୍ଭପାତ ହୋଇଯାଇ ପାରେ । ୫ ।

---

* ରାତ୍ରୀ ଗଣନାର କାରଣ—ଦିବାଭାଗେ ଋତୁଦାନ ନିଷେଧ ।

ଯେଉଁ ପୂର୍ବ ନିନ୍ଦିତ ଆଠରାତ୍ରୀ କଥା କୁହାଯାଇଛି, ଯେଉଁ ବ୍ୟକ୍ତି ଏଇ ନିର୍ଦ୍ଦିଷ୍ଟ ଆଠ ରାତ୍ରୀରେ ସ୍ତ୍ରୀ ସଂଗ ପରିତ୍ୟାଗ କରେ, ସେ ଗୃହାଶ୍ରମରେ ଥିଲେ ମଧ୍ୟ ବ୍ରହ୍ମଚାରୀ ନାମରେ ଅଭିହିତ ହୁଏ । ୬।

**ଉପନିଷଦ୍ ଗର୍ଭଲମ୍ଭନମ୍ ।। ୧ ।।** [ଆଶ୍ୱ: ଗୃ: ୧।୧୩।୧]

ଏହା ଆଶ୍ୱଳାୟନ ଗୃହ୍ୟସୂତ୍ରର ବଚନ । ଉପନିଷଦରେ ଗର୍ଭସ୍ଥାପନ ବିଧି ଯେପରି ଲେଖାଅଛି, ସେହିପରି କରିବା ଉଚିତ । ଅର୍ଥାତ୍ ପୂର୍ବୋକ୍ତ ସମୟରେ ବିବାହ କରି (ଯେପରି ୧୬ ଓ ୨୫ ବର୍ଷରେ) ଋତୁଦାନ କରିବା କଥା, ଯେପରି ଅନ୍ୟାନ୍ୟ ଗ୍ରନ୍ଥରେ ଲିଖିତ ଅଛି, ସେପରି ଉପନିଷଦରେ ମଧ୍ୟ ବିଧାନ ଅଛି ।

[ ବ: ଦ୍ର:—ବୃ: ଆ: ଉପ: କାଣ୍ୱ ପାଠ ଅ: ୬ । ବ୍ରା: ୪; ମାଧ୍ୟନ୍ଦିନ ଶତପଥ କାଂ ୧୪ । ପ୍ରପା: ୭ । ବ୍ରା: ୫]

**ଅଥ ଗର୍ଭାଧାନଂ ସ୍ତ୍ରିୟାଃ । ପୁଷ୍ପବତ୍ୟାଶ୍ଚତୁରହାଦୂର୍ଦ୍ଧ୍ୱଂ ସ୍ନାତ୍ୱା ବିରୁଜାୟାସ୍ତସ୍ମିନ୍ନେବ ଦିବା 'ଆଦିତ୍ୟଂ ଗର୍ଭମିତି' ।। ୨ ।।** [କାତ୍ୟା ଗୃ: ସୂ:]

ଏହା ପାରସ୍କର ଗୃହ୍ୟସୂତ୍ରର ବଚନ । ଗୋଭିଲୀୟ ଓ ଶୌନକ ଗୃହ୍ୟସୂତ୍ରରେ ମଧ୍ୟ ଏହିପରି ବିଧାନ ଅଛି ।

## ବିଧି

ତତଃପର ସ୍ତ୍ରୀ ରଜସ୍ୱଳା ହେବାର ଚତୁର୍ଥ ଦିନପରେ ପଞ୍ଚମ ଦିବସରେ ସ୍ନାନକରି ରଜୋରୋଗ ରହିତ ହେଲେ ସେହି ଦିନଇ "ଆଦିତ୍ୟଂ ଗର୍ଭମ୍" ଇତ୍ୟାଦି ମନ୍ତ୍ରରେ– ଯେଉଁ ରାତ୍ରୀରେ ଗର୍ଭସ୍ଥାପନ କରିବାର ଇଚ୍ଛା ହେବ ତାହାର ପୂର୍ବ ଦିବାଭାଗେ ସୁଗନ୍ଧାଦି ପଦାର୍ଥ ଦ୍ୱାରା ସାମାନ୍ୟ ପ୍ରକରଣରେ ଲିଖିତ ବ୍ୟବସ୍ଥାନୁସାରେ ହବନ କରି ନିମ୍ନଲିଖିତ ମନ୍ତ୍ରଗୁଡ଼ିକରେ ଆହୁତି ଦାନ କରିବେ—

ଏଇ ସଂସ୍କାରରେ ପତ୍ନୀ ପତିର ବାମ ପାର୍ଶ୍ୱରେ ଉପବେଶନ କରିବେ । ପତି ବେଦୀର ପଶ୍ଚିମାଭିମୁଖେ ପୂର୍ବ, ଦକ୍ଷିଣ ବା ଉତ୍ତର ଦିଗକୁ ଇଚ୍ଛାନୁସାରେ ମୁଖ କରି ବସିବେ ଏବଂ ଋତ୍ୱିଗ୍‌ଗଣ ମଧ୍ୟ ବେଦୀର ଚତୁର୍ଦ୍ଦିଗରେ ଯଥାବଶ୍ୟ ମୁଖ କରି ଉପବେଶନ କରିବେ । ଆହୁତି ପ୍ରଦାନ କାଳରେ ବଧୂ ସ୍ୱୀୟ ଦକ୍ଷିଣ ହସ୍ତଦ୍ୱାରା ବରର ଦକ୍ଷିଣ ସ୍କନ୍ଧ ସ୍ପର୍ଶ କରି ରହିଥିବେ ।

## ବଂଶତି ଘୃତାହୁତି

**ଓଁ ଅଗ୍ନେ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା । ନ ଥକାମ ଉପଧାବାମି ଯାଽସ୍ୟାଃ ପାପୀ ଲକ୍ଷ୍ମୀ ସ୍ତନୂସ୍ତାମସ୍ୟା ଅପଜହି ସ୍ୱାହା ॥ ଇଦମଗ୍ନୟେ - ଇଦନ୍ନ ମମ ॥ ୧ ॥**

**ଓଁ ବାୟୋ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା । ନାଥକାମ ଉପଧାବାମି ଯାସ୍ୟାଃ ପାପୀ ଲକ୍ଷ୍ମୀସ୍ତନୂସ୍ତାମସ୍ୟା ଅପଜହି ସ୍ୱାହା ॥ ଇଦଂ ବାୟବେ— ଇଦନ୍ନ ମମ ॥ ୨ ॥**

**ଓଁ ଚନ୍ଦ୍ର ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା । ନାଥକାମ ଉପଧାବାମି ଯାଽସ୍ୟାଃ ପାପୀ ଲକ୍ଷ୍ମୀ- ସ୍ତନୂସ୍ତାମସ୍ୟା ଅପଜହି ସ୍ୱାହା ॥ ଇଦଂ ଚନ୍ଦ୍ରାୟ - ଇଦନ୍ନ ମମ ॥ ୩ ॥**

**ଓଁ ସୂର୍ଯ୍ୟ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା । ନାଥକାମ ଉପଧାବାମି ଯାସ୍ୟାଃ ପାପୀ**

ଲକ୍ଷ୍ମୀସ୍ତନୂ ସ୍ତାମସ୍ୟା ଅପଜହ୍ନ ସ୍ୱାହା ॥ ଇଦଂ ସୂର୍ଯ୍ୟାୟ—ଇଦନ୍ନ ମମ ॥ ୪ ॥

ଓଁ ଅଗ୍ନିବାୟୁଚନ୍ଦ୍ରସୂର୍ଯ୍ୟାଃ ପ୍ରାୟଶ୍ଚିତ୍ତୟୋ ଯୂୟଂ ଦେବାନାଂ ପ୍ରାୟଶ୍ଚିତ୍ତୟଃ ସ୍ଥ ବ୍ରାହ୍ମଣ ବୋ ନାଥକାମ ଉପଧାବାମି ଯାସ୍ୟାଃ ପାପୀ ଲକ୍ଷ୍ମୀସ୍ତନୂସ୍ତାମସ୍ୟା ଅପହନ୍ତ ସ୍ୱାହା ॥ ଇଦମଗ୍ନିବାୟୁଚନ୍ଦ୍ରସୂର୍ଯ୍ୟେଭ୍ୟଃ-ଇଦନ୍ନ ମମ ।୫।

ଓଁ ଅଗ୍ନେ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟାଃ ପତିଘ୍ନୀ ତନୂସ୍ତାମସ୍ୟା ଅପଜହ୍ନ ସ୍ୱାହା ॥ ଇଦମଗ୍ନୟେ—ଇଦନ୍ନ ମମ ॥ ୬ ॥

ଓଁ ବାୟୋ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟାଃ ପତିଘ୍ନୀ ତନୂସ୍ତାମସ୍ୟା ଅପଜହ୍ନ ସ୍ୱାହା ॥ ଇଦଂ ବାୟବେ-ଇଦନ୍ନ ମମ ॥ ୭ ॥

ଓଁ ଚନ୍ଦ୍ର ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟାଃ ପତିଘ୍ନୀ ତନୂସ୍ତାମସ୍ୟା ଅପଜହ୍ନ ସ୍ୱାହା ॥ ଇଦଂ ଚନ୍ଦ୍ରାୟ—ଇଦନ୍ନ ମମ ॥ ୮ ॥

ଓଁ ସୂର୍ଯ୍ୟ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟାଃ ପତିଘ୍ନୀ

ତନୂସ୍ତ୍ରାମସ୍ୟା ଅପଜହି ସ୍ୱାହା ॥ ଇଦଂ ସୂର୍ଯ୍ୟାୟ—ଇଦନ୍ନ ମମ ॥ ୯ ॥

ଓଁ ଅଗ୍ନିବାୟୁଚନ୍ଦ୍ରସୂର୍ଯ୍ୟାଃ ପ୍ରାୟଶ୍ଚିତ୍ତୟୋ ଯୁୟଂ ଦେବାନାଂ ପ୍ରାୟଶ୍ଚିତ୍ତୟଃ ସ୍ଥ ବ୍ରାହ୍ମଣୋ ବୋ ନାଥକାମ ଉପଧାବାମି ଯାସ୍ୟାଃ ପତିଘ୍ନୀ ତନୂସ୍ତ୍ରାମସ୍ୟା ଅପହତ ସ୍ୱାହା ॥ ଇଦମଗ୍ନିବାୟୁଚନ୍ଦ୍ରସୂର୍ଯ୍ୟେଭ୍ୟଃ-ଇଦନ୍ନ ମମ ।୧୦।

ଓଁ ଅଗ୍ନେ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପୁତ୍ର୍ୟା ତନୂସ୍ତ୍ରାମସ୍ୟା ଅପଜହି ସ୍ୱାହା ॥ ଇଦମଗ୍ନୟେ—ଇଦନ୍ନ ମମ ।୧୧ ॥

ଓଁ ବାୟୋ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପୁତ୍ର୍ୟା ତନୂସ୍ତ୍ରାମସ୍ୟା ଅପଜହି ସ୍ୱାହା ॥ ଇଦଂ ବାୟବେ – ଇଦନ୍ନ ମମ ॥ ୧୨ ॥

ଓଁ ଚନ୍ଦ୍ର ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପୁତ୍ର୍ୟା ତନୂସ୍ତ୍ରାମସ୍ୟା ଅପଜହି ସ୍ୱାହା ॥ ଇଦଂ ଚନ୍ଦ୍ରାୟ—ଇଦନ୍ନ ମମ ॥ ୧୩ ॥

ଓଁ ସୂର୍ଯ୍ୟ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପୁତ୍ର୍ୟା ତନୂସ୍ତ୍ରାମସ୍ୟା ଅପଜହି ସ୍ୱାହା ॥ ଇଦଂ ସୂର୍ଯ୍ୟାୟ—ଇଦନ୍ନ ମମ ॥ ୧୪ ॥

ଓଁ ଅଗ୍ନି ବାୟୁଚନ୍ଦ୍ରସୂର୍ଯ୍ୟାଃ ପ୍ରାୟଶ୍ଚିତ୍ତୟୋ ଯୂୟଂ ଦେବାନାଂ ପ୍ରାୟଶ୍ଚିତ୍ତୟଃ ସ୍ଥ ବ୍ରାହ୍ମଣୋ ବୋ ନାଥକାମ ଉପଧାବାମି ଯାସ୍ୟା ଅପୁତ୍ର୍ୟା ତନୂସ୍ତାମସ୍ୟା ଅପହତ ସ୍ୱାହା ॥ ଇଦମଗ୍ନି ବାୟୁଚନ୍ଦ୍ରସୂର୍ଯ୍ୟେଭ୍ୟଃ--ଇଦନ୍ନମମ ।୧୫।

ଓଁ ଅଗ୍ନେ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତି-ରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପସବ୍ୟା ତନୂସ୍ତାମସ୍ୟା ଅପଜହି ସ୍ୱାହା ॥ ଇଦମଗ୍ନୟେ —ଇଦନ୍ନ ମମ ॥ ୧୬ ॥

ଓଁ ବାୟୋ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତି-ରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପସବ୍ୟା ତନୂସ୍ତାମସ୍ୟା ଅପଜହି ସ୍ୱାହା ॥ ଇଦଂ ବାୟବେ-ଇଦନ୍ନ ମମ ॥ ୧୭ ॥

ଓଁ ଚନ୍ଦ୍ର ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପସବ୍ୟା ତନୂସ୍ତାମସ୍ୟା ଅପଜହି ସ୍ୱାହା ॥ ଇଦଂ ଚନ୍ଦ୍ରାୟ—ଇଦନ୍ନ ମମ ॥ ୧୮ ॥

ଓଁ ସୂର୍ଯ୍ୟ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱା ନାଥକାମ ଉପଧାବାମି ଯାସ୍ୟା ଅପସବ୍ୟା ତନୂସ୍ତାମସ୍ୟା ଅପଜହି ସ୍ୱାହା ॥ ଇଦଂ ସୂର୍ଯ୍ୟାୟ--ଇଦନ୍ନ ମମ ॥ ୧୯ ॥

7

**ଓଁ ଅଗ୍ନି ବାୟୁଚନ୍ଦ୍ରସୂର୍ଯ୍ୟାଃ ପ୍ରାୟଶ୍ଚିତ୍ତୟୋ ଯୂୟଂ ଦେବାନାଂ ପ୍ରାୟଶ୍ଚିତ୍ତୟଃ ସ୍ଥ ବ୍ରାହ୍ମଣୋ ବୋ ନାଥକାମ ଉପଧାବାମ ଯାସ୍ୟା ଅପସବ୍ୟା ତନୂସ୍ତାମସ୍ୟ ଅପହତ ସ୍ୱାହା ।। ଇଦମଗ୍ନିବାୟୁଚନ୍ଦ୍ରସୂର୍ଯେଭ୍ୟଃ-ଇଦନ୍ନ ମମ ।୨୦।**

[ବି: ଦ୍ର:—ଗୋଭିଲ୍ ଗୃ: ପ୍ରପା: ୨ । ଖ: ୫ । ସୂ ୨-୬, ପାର: ଗୃ: କା: ୧ । କଂ: ୧୧ । ସୂ: ୧,୨]

ଏଇ କୋଡ଼ିଏଟି ମନ୍ତ୍ରରେ କୋଡ଼ିଏଟି ଆହୁତ ଦେବାକୁ ହେବ ଏବଂ ଏଇ କୋଡ଼ିଏଟି ଆହୁତ ପରେ ଯଦି କିଛି ଘୃତ ଅବଶିଷ୍ଟ ରହେ, ତାହା କଂସା ପାତ୍ରରେ ଆଚ୍ଛାଦିତ ଭାବରେ ରଖିଦେବ । ଏହାପରେ ଅନ୍ନାହୁତ ପ୍ରଦାନ ନିମନ୍ତେ ନିମ୍ନଲିଖିତ ବିଧି କରିବ ।

ଗୋଟିଏ ରୌପ୍ୟ ବା କଂସା ପାତ୍ରରେ ଅନ୍ନ ରଖି ସେଥିରେ ଘୃତ, ଦୁଗ୍ଧ ଓ ଚିନି ମିଶାଇ କିଛି ସମୟ ରଖିବ, ଯେତେବେଳେ ଘୃତାଦି ଅନ୍ନ ସହିତ ମିଶି ଏହା, ଏକରସ' ହୋଇଯିବ ସେତେବେଳେ ଏକ ଏକ ମନ୍ତ୍ରରେ ଏକ ଏକ ଆହୁତ ଅଗ୍ନିରେ ଦାନ କରିବେ ଏବଂ ସ୍ରୁବାସ୍ଥିତ ଅଜ୍ୟାବଶେଷ କଂସା ପାତ୍ରସ୍ଥିତ ଜଳରେ ନିକ୍ଷେପ କରୁଥିବେ—

## ଅନ୍ନାହୁତ

**ଓଁ ଅଗ୍ନୟେ ପବମାନାୟ ସ୍ୱାହା ।। ଇଦମଗ୍ନୟେ ପବମାନାୟ—ଇଦନ୍ନ ମମ ।। ୧ ।।**

**ଓଁ ଅଗ୍ନୟେ ପାବକାୟ ସ୍ୱାହା ଇଦମଗ୍ନୟେ ପାବକାୟ —ଇଦନ୍ନ ମମ ।। ୨ ।।**

ଓଁ ଅଗ୍ନୟେ ଶୁଚୟେ ସ୍ୱାହା ॥ ଇଦମଗ୍ନୟେ ଶୁଚୟେ — ଇଦନ୍ନ ମମ ॥ ୩ ॥

ଓଁ ଅଦିତ୍ୟୈ ସ୍ୱାହା ॥ ଇଦମଦିତ୍ୟୈ-ଇଦନ୍ନ ମମ॥୪॥

[ପାର: ଗୃ: କା: ୧ । କଂ: ୨ । ସୂ ୭]

ଓଁ ପ୍ରଜାପତୟେ ସ୍ୱାହା ॥ ଇଦଂ ପ୍ରଜାପତୟେ-ଇଦନ୍ନ ମମ । ୫ ॥

[ପାର: ଗୃ: କା: ୧ । କଂ ୧୧ । ସୂ ୩]

ଓଁ ଯଦସ୍ୟ କର୍ମଣୋଽତ୍ୟରୀରିଚଂ ଯଦ୍ୱା ନ୍ୟୂନମିହା-କରମ୍ । ଅଗ୍ନିଷ୍ଟତ୍ ସ୍ୱିଷ୍ଟକୃଦ୍ୱିଦ୍ୟାତ୍ ସର୍ବଂ ସ୍ୱିଷ୍ଟଂ ସୁହୁତଂ କରୋତୁ ମେ । ଅଗ୍ନୟେ ସ୍ୱିଷ୍ଟକୃତେ ସୁହୁତହୁତେ ସର୍ବ-ପ୍ରାୟଶ୍ଚିତ୍ତାହୁତୀନାଂ କାମାନାଂ ସମର୍ଧୟିତ୍ରେ ସର୍ବାନ୍ନଃ କାମାନ୍ତ୍ ସମର୍ଧୟ ସ୍ୱାହା ॥ ଇଦମଗ୍ନୟେ ସ୍ୱିଷ୍ଟକୃତେ— ଇଦନ୍ନ ମମ ॥ ୬ ॥

[ଆଶ୍ୱ: ଗୃ: ୧।୧୦।୨୨]

ଏଇ ଛ' ମନ୍ତ୍ରରେ ଅନ୍ନାହୂତି ଦେବେ, ତତ୍ପଶ୍ଚାତ୍ ସାମାନ୍ୟ ପ୍ରକରଣୋକ୍ତ ଆଠ ମନ୍ତ୍ରରେ ଅଷ୍ଟାଜ୍ୟାହୁତି ଦେବାକୁହେବ । ତତ୍ପରେ ନିମ୍ନଲିଖିତ ମନ୍ତ୍ରରେ ଆଜ୍ୟାହୁତି ଓ ମୋହନଭୋଗର ଆହୁତି ଦାନ କରିବେ ।

## ଆଜ୍ୟାହୁତି

ଓଁ ବିଷ୍ଣୁର୍ୟୋନିଂ କଳ୍ପୟତୁ ତ୍ୱଷ୍ଟା ରୂପାଣି ପିଂଶତୁ । ଆ ସିଞ୍ଚତୁ ପ୍ରଜାପତିର୍ଧାତା ଗର୍ଭଂ ଦଧାତୁ ତେ ସ୍ୱାହା ॥ ୧ ॥

ଗର୍ଭଂ ଧେହି ସିନୀବାଲି ଗର୍ଭଂ ଧେହି ସରସ୍ୱତି ।
ଗର୍ଭଂ ତେ ଅଶ୍ୱିନୌ ଦେବା—
ବ ଧତ୍ତାଂ ପୁଷ୍କରସ୍ରଜା ସ୍ୱାହା ॥ ॥

ହିରଣ୍ୟୟୀ ଅରଣୀ ଯଂ ନିର୍ମନ୍ଥତୋ ଅଶ୍ୱିନା ।
ତଂ ତେ ଗର୍ଭଂ ହବାମହେ
ଦଶମେ ମାସି ସୂତବେ ସ୍ୱାହା ॥ ୩ ॥

ଋ: ମ: ୧୦।ସୂ: ୧୮୪ । (ମ: ୧ – ୩) ଦ୍ର: ଗୋଭ: ଗୃ: ୨,୫,୯,୧୦

ରେତୋ ମୂତ୍ରଂ ବି ଜହାତି ଯୋନିଂ ପ୍ରବିଶଦିନ୍ଦ୍ରିୟମ୍ ।
ଗର୍ଭୋ ଜରାୟୁଣାବୃତ ଉଲ୍ବଂ ଜହାତି ଜନ୍ମନା ।
ଋତେନ ସତ୍ୟମିନ୍ଦ୍ରିୟଂ ବିପାନଁ ଶୁକ୍ରମନ୍ଧସ ଇନ୍ଦ୍ରସ୍ୟେ-
ନ୍ଦ୍ରିୟମିଦଂ ପୟୋଽମୃତଂ ମଧୁ ସ୍ୱାହା ॥ ୪ ॥

(ଯଜୁ: ଅ: ୧୯ । ମ° ୭୬)

ଯତ୍ତେ ସୁସୀମେ ହୃଦୟଂ ଦିବି ଚନ୍ଦ୍ରମସି ଶ୍ରିତମ୍
ବେଦାହଂ ତନ୍ମାଂ ତଦ୍ବିଦ୍ୟାତ୍ ପଶ୍ୟେମ ଶରଦଃ
ଶତଂ ଜୀବେମ ଶରଦଃ ଶତଁ ଶୃଣୁୟାମ ଶରଦଃ ଶତଂ
ପ୍ରବ୍ରବାମ ଶରଦଃ ଶତମଦୀନାଃ ସ୍ୟାମ ଶରଦଃ ଶତଂ
ଭୂୟଶ୍ଚ ଶରଦଃ ଶତାତ୍ ସ୍ୱାହା ॥ ୫ ॥

ଦ୍ର:-ପାର: ଗୃ: କା: ୧।କଂ: ୧୧।ସୂ: ୯ ଯଜୁର୍ବେଦ ଅ ୩୬। ମ: ୨୪

ଯଥେୟଂ ପୃଥିବୀ ମହୀ ଭୂତାନାଂ ଗର୍ଭମାଦଧେ ।
ଏବା ତେ ଧ୍ରିୟତାଂ ଗର୍ଭେ
ଅନୁ ସୂତୁଂ ସବିତବେ ସ୍ୱାହା ॥ ୬॥

ଯଥେୟଂ ପୃଥିବୀ ମହୀ ଦାଧାରେମାନ୍ ବନସ୍ପତୀନ୍ ।
ଏବା ତେ ଧ୍ରିୟତାଂ ଗର୍ଭେ
ଅନୁ ସୂତୁଂ ସବିତବେ ସ୍ୱାହା ॥ ୭ ॥

ଯଥେୟଂ ପୃଥିବୀ ମହ୍ୟ ଦାଧାର ପର୍ବତାନ୍ ଗିରୀନ୍ । ଏବା
ତେ ଧ୍ରିୟତାଂ ଗର୍ଭେ ଅନୁ ସୂତୁଂ ସବିତବେ ସ୍ୱାହା ॥ ୮ ॥
ଯଥେୟଂ ପୃଥିବୀ ମହ୍ୟ ଦାଧାର ବିଷ୍ଠିତଂ ଜଗତ । ଏବା
ତେ ଧ୍ରିୟତାଂ ଗର୍ଭେ ଅନୁ ସୂତୁଂ ସବିତବେ ସ୍ୱାହା ॥ ୯ ॥
[ ଅଥର୍ବ ୬।୧୭।୧—୪ ]

ଏହି ନବ ମନ୍ତ୍ରରେ ନବ ଆଜ୍ୟ ଏବଂ ମୋହନ ଭୋଗର ଆହୁତି ଦେବେ ।

ନିମ୍ନଲିଖିତ ମନ୍ତ୍ରରେ ମଧ୍ୟ ଚାରି ଘୃତାହୁତି ଦେବେ—

ଓଁ ଭୂରଗ୍ନୟେ ସ୍ୱାହା ॥ ଇଦମଗ୍ନୟେ—ଇଦନ୍ନ ମମ ॥ ୧ ॥
ଓଁ ଭୁବର୍ବାୟବେ ସ୍ୱାହା ।
ଇଦଂ ବାୟବେ—ଇଦନ୍ନ ମମ ॥ ୨ ॥
ଓଁ ସ୍ୱରାଦିତ୍ୟାୟ ସ୍ୱାହା ॥
ଇଦମାଦିତ୍ୟାୟ—ଇଦନ୍ନ ମମ ॥ ୩ ॥
ଓଁ ଅଗ୍ନିବାୟ୍ୱାଦିତ୍ୟେଭ୍ୟଃ ପ୍ରାଣାପାନବ୍ୟାନେଭ୍ୟଃ ସ୍ୱାହା
ଇଦମଗ୍ନିବାୟ୍ୱାଦିତ୍ୟେଭ୍ୟଃ ପ୍ରାଣାପାନବ୍ୟାନେଭ୍ୟଃ—
ଇଦନ୍ନ ମମ ॥ ୪ ॥ [ଭୁ: ଗୋଭ: ଗୃ: ୧।୮।୧୫]

ପରେ ନିମ୍ନଲିଖିତ ମନ୍ତ୍ରରେ ଦୁଇଟି ଘୃତାହୁତି ଦିଆଯିବ—

ଓଁ ଅୟାଶ୍ଚାଗ୍ନେଽସ୍ୟନଭିଶସ୍ତିପାଶ୍ଚ ସତ୍ୟମିତ୍ତ୍ୱମୟା ଅସି ।

**ଦେବା ଗାତୁବିଦଃ ସ୍ୱାହା ॥ ଇଦଂ ଦେବେଭ୍ୟୋ ଗାତୁ-ବିଦ୍‌ଭ୍ୟଃ – ଇଦନ୍ନ ମମ ॥ ୧ ॥**

[ପାର: କା ୧ ॥ କଂ ୨ । ସୂ ୧୧]

**ଓଁ ପ୍ରଜାପତୟେ ସ୍ୱାହା ॥ ଇଦଂ ପ୍ରଜାପତୟେ ଇଦନ୍ନ ମମ ॥ ୨ ॥**

[ପାର: ଗୃ: ୧।୧୧।୩)

ଏଇ ସବୁ କର୍ମ ଓ ମନ୍ତ୍ରଗୁଡ଼ିକ ପରେ "ଓଁ ଯଦସ୍ୟ କର୍ମଣୋଽତ୍ୟରୀରଚଂ" (ଆଶ୍ୱ: ଗୃ: ୧ । ୧୦ । ୨୨) ଏଇ ମନ୍ତ୍ରରେ ଗୋଟିଏ ସ୍ୱିଷ୍ଟକୃତ୍ ଘୃତାହୁତି ଦିଆଯିବ ।

## ଘୃତ ମର୍ଦ୍ଦନ ଓ ସ୍ନାନ

ଏଇ ସବୁ ମନ୍ତ୍ରରେ ଆହୁତି ଦାନ ସମୟରେ ପ୍ରତ୍ୟେକ ଆହୁତିର ପରେ ସ୍ରୁବାରେ ଯେଉଁ ଅବଶିଷ୍ଟ ଘୃତ ପୂର୍ବୋକ୍ତ କଂସାର ଉଦକ ପାତ୍ରରେ ସଞ୍ଚିତ ହେଉଥିଲା, ଆହୁତି ସମାପ୍ତ ହୋଇଗଲେ ବଧୂ ସେଇ ସବୁ ଆହୁତି—ସଞ୍ଚିତ ଘୃତ ସ୍ନାନାଗାରକୁ ନେଇ ତଦ୍ୱାରା ପାଦର ନଖଠାରୁ ମସ୍ତକ ପର୍ଯ୍ୟନ୍ତ ସର୍ବାଙ୍ଗେ ମର୍ଦ୍ଦନ କରି ସ୍ନାନ କରିବେ । ତାପରେ ଶୁଦ୍ଧ ବସ୍ତ୍ରଦ୍ୱାରା ଶରୀର ପୋଛି ଶୁଦ୍ଧ ବସ୍ତ୍ର ପରିଧାନ ପୂର୍ବକ କୁଣ୍ଡ ନିକଟକୁ ଆସିବେ ।

## ସୂର୍ଯ୍ୟ ଦର୍ଶନ ଓ ଉପସ୍ଥାନ

ତତ୍‌ପଶ୍ଚାତ୍ ବଧୂ ଓ ବର ଉଭୟ କୁଣ୍ଡ ପ୍ରଦକ୍ଷିଣ କରି ସୂର୍ଯ୍ୟ ଦର୍ଶନ କରିବେ । ତା'ପରେ ବଧୂ ନିମ୍ନୋକ୍ତ ମନ୍ତ୍ରେ ପରମେଶ୍ୱର ଉପସ୍ଥାନ (ଉପାସନା) କରିବେ—

**ବଧୂ—ଓଁ ଆଦିତ୍ୟଂ ଗର୍ଭଂ ପୟସା ସମଙ୍‌ଗ୍‌ଧି ସହସ୍ରସ୍ୟ ପ୍ରତିମାଂ ବିଶ୍ୱରୂପମ୍ । ପରିବୃଙ୍‌ଧି ହରସା ମାଭି ମଂସ୍ଥାଃ ଶତାୟୁଷଂ କୃଣୁହି ଚୀୟମାନଃ ॥ ୧॥**(ଯଜୁ ଅ ୧୩।ମଂ ୪୧)

ସୂର୍ଯ୍ୟୋ ନୋ ଦିବସ୍ପାତୁ ବାତୋ ଅନ୍ତରିକ୍ଷାତ୍ । ଅଗ୍ନିର୍ନଃ
ପାର୍ଥିବେଭ୍ୟଃ ॥ ୨ ॥

ଜୋଷା ସବିତର୍ଯସ୍ୟ ତେ ହରଃ ଶତଂ ସବାଁ ଅର୍ହତି ।
ପାହି ନୋ ଦିଦ୍ୟୁତଃ ପତନ୍ତ୍ୟାଃ ॥ ୩ ॥

ଚକ୍ଷୁର୍ନୋ ଦେବଃ ସବିତା ଚକ୍ଷୁର୍ନ ଉତ ପର୍ବତଃ ।
ଚକ୍ଷୁର୍ଧାତା ଦଧାତୁ ନଃ ॥ ୪ ॥

ଚକ୍ଷୁର୍ନୋ ଧେହି ଚକ୍ଷୁଷେ ଚକ୍ଷୁର୍ବିଖ୍ୟୈ ତନୂଭ୍ୟଃ ।
ସଂ ଚେଦଂ ବି ଚ ପଶ୍ୟେମ ॥ ୫ ॥

ସୁସଂଦୃଶଂ ତ୍ୱା ବୟଂ ପ୍ରତି ପଶ୍ୟେମ ସୂର୍ଯ୍ୟ ।
ବି ପଶ୍ୟେମ ନୃଚକ୍ଷସଃ ॥ ୬ ॥ (ଋ:ମ:୧୦।ସୂ୧୫୮।ମଂ ୧-୫)

## ଅଭିବାଦନ

ତତ୍ପରେ ବଧୂ ନିମ୍ନୋକ୍ତ ମନ୍ତ୍ରରେ ସ୍ୱାମୀ ପତିଙ୍କୁ ବନ୍ଦନ ଅର୍ଥାତ୍ ନମସ୍କାର କରିବେ—

ବଧୂ—"ଓଁ । ଅମୁକ (୧) ଗୋତ୍ରା, ଶୁଭଦା, ଅମୁକ ଦା (୨) ଅହଂ ଭୋ ଭବନ୍ତମଭିବାଦୟାମି । (ଭୂ:ଗୋଭି:ଗୃ: ୨।୩।୧୧)

ତତ୍ପରେ ବଧୂ ନିଜର ଶ୍ୱଶୁର, ଶାଶୁ, ବରର, ପିତାମହାଦି ଏବଂ ଉପସ୍ଥିତ ମାନନୀୟ ବ୍ୟକ୍ତି ତଥା ଆତ୍ମୀୟ କୁଟୁମ୍ବଗଣଙ୍କ ମଧ୍ୟରେ ଥିବା ବୃଦ୍ଧା ରମଣୀଗଣଙ୍କୁ ମଧ୍ୟ ଏହି ପ୍ରକାର ପ୍ରଣାମ କରିବେ ।

ଏହି ବ୍ୟବସ୍ଥାନୁସାରେ ବଧୂ ବରର ଗୋତ୍ର ପ୍ରାପ୍ତ ହେଲେ; ଅର୍ଥାତ ବଧୂ ପତ୍ନୀତ୍ୱ ଏବଂ ବର ପତିତ୍ୱ ପ୍ରାପ୍ତ ହେଲେ । ପଶ୍ଚାତ୍ ଦମ୍ପତି ଶୁଭାସନରେ ପୂର୍ବାଭିମୁଖୀ ବେଦୀର ପଶ୍ଚିମ ଭାଗରେ ଉପବେଶନ କରି ବାମଦେବ୍ୟ ଗାନକରିବେ ।

(୧) ଏଠାରେ ବରର କୁଳ ବା ଗୋତ୍ର ଉଚ୍ଚାରଣ କରିବେ ।
(୧) ବଧୂ ନିଜର ନାମ ଉଚ୍ଚାରଣ କରିବେ ।

ଦମ୍ପତ୍ତି ଉଭୟେ ଯଥା ଶାସ୍ତ୍ରୋକ୍ତ * ନିୟମରେ ଭୋଜନ କରିବେ ଏବଂ ପୁରୋହିତାଦି ଆଗନ୍ତୁକ ସମସ୍ତ ବ୍ୟକ୍ତିଙ୍କର ସମ୍ମାନାର୍ଥେ ଯଥାଶକ୍ତି ଭୋଜନ କରାଇ ଆଦର ସମ୍ମାନ ପୂର୍ବକ ସ୍ୱଦାୟ ଦାନ କରିବେ ।

ଏହା ପରେ ଗର୍ଭୀର ଯଥା ସମୟରେ ଶରୀର ଶୁଦ୍ଧଥିଲେ ଉଭୟ ପକ୍ଷ ଅତ୍ୟନ୍ତ ପ୍ରସନ୍ନ ଥାନ୍ତି, ଉଭୟଙ୍କ ମଧ୍ୟରେ ପ୍ରେମ ଅତ୍ୟନ୍ତ ବୃଦ୍ଧି ପାଇଥାଏ, ତେବେ ଗର୍ଭାଧାନ କ୍ରିୟା କରିବେ ।

---

* ସୁସନ୍ତାନ ଉତ୍ପାଦନ ମୁଖ୍ୟତଃ ବଧୂ ବରଙ୍କର ଯଥା ଶାସ୍ତ୍ରୋକ୍ତ ଆହାର ଉପରେ ନିର୍ଭର କରେ । ଅତଏବ ପତି ଓ ପତ୍ନୀ ସ୍ୱ ସ୍ୱ ଦେହର ଓ ଆତ୍ମାର ପୁଷ୍ଟି ପାଇଁ ବଳ ଓ ବୁଦ୍ଧି ଆଦି ବର୍ଦ୍ଧକ ସର୍ବୌଷଧି ସେବନ କରିବେ ।

**ସର୍ବୌଷଧି**—ଯଥା : ଦୁଇଖଣ୍ଡ ଆମ୍ବକଷି, ଅଦା, ହରିଦ୍ରା, ଚନ୍ଦନ, ମୁରା, କୁଚ, ଜଟାମାଂସୀ, ମୂର୍ବା, ଶିଳାଜିତ, କର୍ପୂର, ମୁଥା ଓ ନାଗରମୁଥା ।

ଏଇ ସବୁ ଔଷଧିକୁ ଚୂର୍ଣ୍ଣକରି, ସବୁ ସମ ଭାଗରେ ନେଇ, ଉଦୁମ୍ବର କାଷ୍ଠପାତ୍ରରେ ଗୋ ଦୁଗ୍ଧ ସହିତ ମିଶ୍ରଣ କରି, ତାହାର ଦଧି ପ୍ରସ୍ତୁତ କରିବେ ଏବଂ ସେଇ ଉଦୁମ୍ବର (ଡିମିରି) କାଠରେ ମନ୍ଥନୀରେ ମନ୍ଥନ କରି ଲହୁଣୀରେ ତାହାର ଘୃତ ପ୍ରସ୍ତୁତ କରିବେ, ସେଇ ଘୃତରେ ସୁଗନ୍ଧ ଦ୍ରବ୍ୟ ଯଥା—କସ୍ତୁରୀ, କେଶର, ଜାଇଫଳ ଜୟତ୍ରୀ ଓ ଅଳେଇଚ ମିଶ୍ରିତ କରିବ ।

ଏକ ସେର ପରିମାଣ ଦୁଗ୍ଧରେ ଏକ ଛଟାଙ୍କି ପରିମାଣ ସର୍ବୌଷଧି ମିଶ୍ରିତ କରି ଉକ୍ତ ଦଧିରେ ଘୃତ ପ୍ରସ୍ତୁତ କରିବେ ।

ଏକ ପ୍ରହର ରାତ୍ରି ପରେ, ଏକ ପ୍ରହର ରାତ୍ରି ଅବଶିଷ୍ଟ ଥିବା ପର୍ଯ୍ୟନ୍ତ ସମୟ, ଗର୍ଭାଧାନ କ୍ରିୟାର ସମୟ। ସ୍ତ୍ରୀର ଗର୍ଭାଶୟରେ ପ୍ରବେଶ ସମୟରେ ଉଭୟ ଶରୀର ସ୍ଥିର, ପ୍ରସନ୍ନ ରହିବ; ମୁଖ ସମ୍ମୁଖରେ ମୁଖ, ନାସିକା ସମ୍ମୁଖରେ ନାସିକାଦି ସମସ୍ତ ଶରୀର ସିଧା ରହିବ। ପୁରୁଷ ବୀର୍ଯ୍ୟ ପ୍ରକ୍ଷେପ କରିବେ, ଯେତେବେଳେ ସ୍ତ୍ରୀର ଶରୀରରେ ବୀର୍ଯ୍ୟ ପ୍ରବେଶ କରିବ ସେତେବେଳେ ସ୍ତ୍ରୀ ସ୍ୱୀୟ ମୂଳେନ୍ଦ୍ରିୟ ଓ ଯୋନୀନ୍ଦ୍ରିୟ ଉପରକୁ ସଙ୍କୋଚନ କରିବେ ଓ ବୀର୍ଯ୍ୟକୁ ଆକର୍ଷଣ କରି ଗର୍ଭାଶୟରେ ସ୍ଥିତ କରିବେ।

ତାପରେ କିଛିକ୍ଷଣ ଅପେକ୍ଷା କରି ସ୍ନାନ କରିବେ। ଶୀତ ଋତୁ ହୋଇଥିଲେ ପୂର୍ବରୁ ଗରମ କରାଯାଇଥିବା, କସ୍ତୁରୀ, କେଶର, ଜାଇଫଳ, ଜୟିତ୍ରୀ ଓ ଛୋଟ ଅଳେଇଚ ମିଶ୍ରିତ ଶୀତଳ ଦୁଗ୍ଧ ଯଥେଷ୍ଟ ପରିମାଣରେ ପାନକରି ଉଭୟେ ପୃଥକ ପୃଥକ ଶୋଇବେ

---

ସେଇ ଘୃତର ପ୍ରତି ସେରରେ କସ୍ତୁରୀ ଏକ ରତି, କେଶର ଏକ ମସା, ଜାଇଫଳ ଏକମସା, ଜୟିତ୍ରୀ ୧ ମସା ଓ ଅଳେଇଚ ଏକ ମସା ମିଶ୍ରିତ କରି ପ୍ରତ୍ୟହ ପ୍ରାତଃକାଳରେ ସେଇ ସୁଗନ୍ଧି ଦ୍ରବ୍ୟ ମିଶ୍ରିତ ଘୃତରେ "ଋତୁଦାନ କାଳ" ଶୀର୍ଷକ ଥିବା ମନ୍ତ୍ରରେ ଲଖିଛି ଥିବା ବିଧିରେ "ଆଘାରାବାଜ୍ୟଭାଗାହୁତି"୪ (ଚାରି) ଓ ବିଷ୍ଣୁର୍ଯୋନିଂ ଇତ୍ୟାଦି ୭ଟି (ସାତଟି) ମନ୍ତ୍ରର ଶେଷରେ ସ୍ୱାହା ଶବ୍ଦ ଉଚ୍ଚାରଣ କରି ଯେଉଁ ରାତ୍ରୀରେ ଗର୍ଭସ୍ଥାପନ କ୍ରିୟା କରିବାକୁ ହେବ, ସେହି ଦିନ ଦିବା ସମୟରେ ହୋମକରି ହୋମଶେଷ ଘୃତ, କ୍ଷୀର ବା ଅନ୍ନ ସହିତ ମିଶ୍ରିତ କରି ଉଭୟେ ଯଥାରୁଚି ଭୋଜନ କରିବେ। ଏହିପରି ଗର୍ଭସ୍ଥାପନ କଲେ ସୁଶୀଳ, ବିଦ୍ୱାନ, ଦୀର୍ଘାୟୁ ତେଜସ୍ୱୀ, ସୁନ୍ଦର ଓ ନୀରୋଗ ପୁତ୍ର ଉତ୍ପନ୍ନ ହେବ। ଯଦି କନ୍ୟା ଲାଭର ଇଚ୍ଛା ହୁଏ, ତେବେ ଅନ୍ନ ସହିତ ପୂର୍ବୋକ୍ତ ପ୍ରକାରେ ପ୍ରସ୍ତୁତ ଘୃତ ମିଶ୍ରିତ କରି

ଶୟନ କରିବେ, ଯଦି ସ୍ତ୍ରୀ ପୁରୁଷ ଉତ୍ତମ ରୂପେ ବୁଝି ପାରିବେ ଯେ ଗର୍ଭ ସ୍ଥିର ହୋଇଯାଇଛି—ତେବେ ଦ୍ୱିତୀୟ ଦିନ ନିମ୍ନ ଲିଖିତ ମନ୍ତ୍ରରେ ଆହୁତି ଦେବେ ।

---

ଡୁମିର କାଠର ପାତ୍ରରେ ପ୍ରସ୍ତୁତ ଦଧି ସହିତ ସେଇ ଅନ୍ନ ସେବନ କରିବେ । ଏହାଦ୍ୱାରା ଉତ୍ତମ ଗୁଣଯୁକ୍ତ କନ୍ୟା ଜନ୍ମିବ । କାରଣ—

**'ଆହାର ଶୁଦ୍ଧୌ ସତ୍ତ୍ୱଶୁଦ୍ଧିଃ ସତ୍ତ୍ୱଶୁଦ୍ଧୌ ଧ୍ରୁବା ସ୍ମୃତିଃ ।'**

[ଛାନ୍ଦୋ: ଉପ: ପ୍ରପା: ୭ ଖଂ ୨୬ ପ୍ରବାକ ୨]

ଏହା ଛାନ୍ଦୋଗ୍ୟର ବଚନ, ଅର୍ଥାତ୍ ମଦ୍ୟ ମାଂସାଦି ରହିତ ଘୃତ, ଦୁଗ୍‌ଧାଦି ଚାଉଳ, ଗହମ ଇତ୍ୟାଦି ଶୁଦ୍ଧ ଆହାର କରିଲେ ଅନ୍ତଃକରଣର ଶୁଦ୍ଧି, ବୁଦ୍ଧି, ବଳ ପୁରୁଷକାର ଓ ଆରୋଗ୍ୟ ଲାଭ ହୁଏ । ଏଥି ନିମନ୍ତେ ପୂର୍ଣ୍ଣ ଯୁବାବସ୍ଥାରେ ବିବାହ କରିବେ । ଏଇ ବିଧି ଅନୁସାରେ ପ୍ରେମ ପୂର୍ବକ ଗର୍ଭାଧାନ କଲେ ସନ୍ତାନ ଓ କୁଳ ଉତ୍ତରୋତ୍ତର ଉନ୍ନତି ଲାଭ କରିବେ ।

ରଜସ୍ୱଳା ହେବାର ୧୨।୧୩ ଦିନ ପୂର୍ବରୁ ଶୁକ୍ଳ ପକ୍ଷରେ ପୂର୍ବୋକ୍ତ ଘୃତ ସହ ଏଇ କ୍ଷୀର ଭୋଜନ କରି ୧୨ ଦିନ ପର୍ଯ୍ୟନ୍ତ ବ୍ରତ ପାଳନ କଲେ ଏବଂ ମିତାହାରୀ ହୋଇ ଋତୁସମୟରେ ପୂର୍ବୋକ୍ତ ରୀତିରେ ଗର୍ଭାଧାନ କଲେ ଅତ୍ୟୁତ୍ତମ ସନ୍ତାନ ଉତ୍ପନ୍ନ ହେବ । ଯେପରି ସମସ୍ତ ପଦାର୍ଥ ଉତ୍କୃଷ୍ଟ କରିବାର ବିଦ୍ୟା ଅଛି, ସେହିପରି ସନ୍ତାନକୁ ମଧ୍ୟ ଉତ୍କୃଷ୍ଟ କରିବାର ଏହିପରି ବିଦ୍ୟା ଅଛି । ଏହି ବିଷୟରେ ମନୁଷ୍ୟଗଣ ବିଶେଷ ରୂପେ ମନଯୋଗୀ ହୁଅନ୍ତୁ । କାରଣ ଏଥିରେ ମନଯୋଗୀ ନହେଲେ ବଂଶର ହାନି ଓ ଅଧଃପତନ ହୁଏ ଏବଂ ମନୋଯୋଗୀ ହେଲେ ବଂଶର ବୃଦ୍ଧି ଓ ଉନ୍ନତି ଅବଶ୍ୟ ହୋଇଥାଏ ।

ଗର୍ଭସ୍ଥିର ହୋଇଛି—ଏହା ଯଦି ନିଶ୍ଚିତ ରୂପେ ଅବଗତ ନ ହୋଇଛି, ତେବେ ଏକ ମାସ ପରେ ରଜସ୍ୱଳା ହେବା ସମୟରେ ସ୍ତ୍ରୀ ରଜସ୍ୱଳା ନ ହେଲେ ନିଶ୍ଚୟ ବୁଝିବେ ଯେ, ଗର୍ଭ ସ୍ଥିର ହୋଇଛି । ସେତେବେଳେ ଏହି ଦ୍ୱିତୀୟ ମାସର ପ୍ରାରମ୍ଭରେ ନିମ୍ନ-ଲିଖିତ ମନ୍ତ୍ରରେ ଆହୁତି ଦାନ କରିବେ । ✳

---

✳ ଯଦି ଦୁଇ ଋତୁକାଳ ବ୍ୟର୍ଥ ହୁଏ ଅର୍ଥାତ୍ ଦୁଇ ମାସରେ ଗର୍ଭାଧାନ କ୍ରିୟା ନିଷ୍ଫଳ ହେଲେ—ଗର୍ଭସ୍ଥିତ ନହୁଏ, ତେବେ ତୃତୀୟ ମାସରେ ଋତୁକାଳ ସମାଗତ ହେଲେ, ପୁଷ୍ୟା ନକ୍ଷତ୍ରଯୁକ୍ତ ଋତୁକାଳ ଦିବସର ପ୍ରଥମ ପ୍ରାତଃକାଳରେ ପ୍ରଥମ ପ୍ରସୂତା ଗାଈର (ଦୁଗ୍ଧଜାତ) ଦହି ଦୁଇ ମସା ଓ ଭଜା ଯବ ଚୂର୍ଣ୍ଣ ଦୁଇମସା ଏକତ୍ର ମିଶ୍ରିତ କରି ପତ୍ନିର ହାତରେ ପ୍ରଦାନ ପୂର୍ବକ

ପତି ଜିଜ୍ଞାସା କରିବେ—"କିଂ ପିବସି ?"

ପତ୍ନି ଉତ୍ତର ଦେବେ—"ପୁଂସବନମ୍"

[ଆଶ୍ୱ: ଗୃ: ୧।୧୩।୩]

ଏହିପରି ତିନଥର କରିବେ । ଏହି ବାକ୍ୟ ଉଚ୍ଚାରଣ କରି ପତ୍ନି ତାହା ସେବନ କରିବେ । ଏହି ରୀତିରେ ପୁନଃ ପୁନଃ ତିନଥର ବିଧି କରିବେ । ତା'ପରେ "ଶଙ୍ଖପୁଷ୍ପୀ" ଓ କଣ୍ଟକାରୀ ଔଷଧି ଜଳରେ ଲହୁଣୀପରି ପେଷଣ କରି ତାହାର ରସ କନାରେ ଗ୍ରହଣ ପୂର୍ବକ ପତି ପତ୍ନୀର ଦକ୍ଷିଣ ନାସାରନ୍ଧ୍ରେ ସିଞ୍ଚନ କରିବେ ଏ—ବଂ

ପତି—ଓଁ ଇୟମୋଷଧୀ ତ୍ରାୟମାଣା ସହମାନା ସରସ୍ୱତୀ ।

ଅସ୍ୟା ଅହଂ ବୃହତ୍ୟାଃ ପୁତ୍ରଃ ପିତୁରିବ ନାମ ଜଗ୍ରଭମ୍ ॥

[ପାର: ଗୃ: କାଂ: ୧ । କଂ: ୧୩୧]

ଏହି ମନ୍ତ୍ରରେ ଜଗନ୍ନିୟନ୍ତା ପରମାତ୍ମାଙ୍କ ନିକଟରେ ପ୍ରାର୍ଥନା କରି ଯଥା ଶାସ୍ତ୍ରୋକ୍ତ ବିଧିରେ ଋତୁଦାନ କରିବେ । ଏହା ସୂତ୍ରକାରଙ୍କର ମତ ।

## ସପ୍ତାହୁତି

ଯଥା ବାତଃ ପୁଷ୍କରଣୀଂ ସମିଙ୍ଗୟତି ସର୍ବତଃ ।
ଏବା ତେ ଗର୍ଭ ଏଜତୁ ନିରୈତୁ ଦଶମାସ୍ୟଃ ସ୍ୱାହା ॥୧॥
ଯଥା ବାତୋ ଯଥା ବନଂ ଯଥା ସମୁଦ୍ର ଏଜତି ।
ଏବା ତ୍ୱଂ ଦଶମାସ୍ୟ ସହାବେହି ଜରାୟୁଣା ସ୍ୱାହା ॥୨॥
ଦଶ ମାସାଞ୍ଛଶୟାନଃ କୁମାରୋ ଅଧି ମାତରି ।
ନିରୈତୁ ଜୀବୋ ଅକ୍ଷତୋ
ଜୀବୋ ଜୀବନ୍ତ୍ୟା ଅଧି ସ୍ୱାହା ॥ ୩ ॥
ଋ: ମ: ୫ । ସୂ: ୭୮ । ମ: ୭ ୮ ୯

ଏଜତୁ ଦଶମାସ୍ୟୋ ଗର୍ଭୋ ଜରାୟୁଣା ସହ ।
ଯଥାୟଂ ବାୟୁରେଜତି ଯଥା ସମୁଦ୍ର ଏଜତି ।
ଏବାୟଂ ଦଶମାସ୍ୟୋ ଅସ୍ରଜ୍ଜରାୟୁଣା ସହ ସ୍ୱାହା ॥ ୧ ॥
ଯସ୍ୟୈ ତେ ଯଜ୍ଞିୟୋ ଗର୍ଭୋ ଯସ୍ୟୈ ଯୋନିର୍ହିରଣ୍ୟୟୀ
ଅଙ୍ଗାନ୍ୟହ୍ରୁତା ଯସ୍ୟ ତଂ ମାତ୍ରା ସମଜୀଗମଂ ସ୍ୱାହା ॥ ୨ ॥
ଯଜୁ: ଅ: ୮ ମ: ୨୮, ୨୯

ପୁମାଂସୌ ମିତ୍ରାବରୁଣୌ ପୁମାଂସାବଶ୍ୱିନାବୁଭୌ ।
ପୁମାନଗ୍ନିଶ୍ଚ ବାୟୁଶ୍ଚ ପୁମାନ୍ ଗର୍ଭସ୍ତବୋଦରେ ସ୍ୱାହା ୧
ପୁମାନଗ୍ନିଃ ପୁମାନିନ୍ଦ୍ରଃ ପୁମାନ୍ଦେବୋ ବୃହସ୍ପତିଃ ।
ପୁମାଂସଂ ପୁତ୍ରଂ ବିନ୍ଦସ୍ୱ ତଂ
ପୁମାନନୁ ଜାୟତାଂ ସ୍ୱାହା ॥ ୨ ॥
ସାମବେଦେ [ମନ୍ତ୍ର ବ୍ରାହ୍ମଣ ୧।୪।୮-୯]

ଏହି ସବୁ ମନ୍ତ୍ରରେ ଆହୁତି ଦାନକରି ପୂର୍ବଲିଖିତ ସାମାନ୍ୟ ପ୍ରକରଣର **"ଶାନ୍ତ ଆହୁତି"** ପ୍ରଦାନ ପୂର୍ବକ ବିଧି ଅନୁସାରେ **"ପୂର୍ଣ୍ଣାହୁତି"** ଦାନ କରିବେ ।

ପୁନଃ ସ୍ତ୍ରୀର ଗ୍ରାସାଚ୍ଛାଦନ ପାଇଁ ସୁନିୟମ କରି ଦେବେ, ସ୍ତ୍ରୀ କଦାପି ମଦ୍ୟାଦି ମାଦକ ଦ୍ରବ୍ୟ, ହରିତକୀ ଆଦି ରେଚକ ଦ୍ରବ୍ୟ, ଅତି ଲବଣାଦି କ୍ଷାର ଦ୍ରବ୍ୟ, ଅତ୍ୟମ୍ଳ, ଚଣା ଇତ୍ୟାଦି ରୁକ୍ଷ ପଦାର୍ଥ ଏବଂ ଲଙ୍କାଦି ତୀକ୍ଷ୍ଣ ଦ୍ରବ୍ୟ ଭକ୍ଷଣ କରିବେ ନାହିଁ । ପରନ୍ତୁ ଘୃତ, ଦୁଗ୍ଧ, ମିଠା, ସୋମଲତା ଅର୍ଥାତ୍ ଗୁଳୁଚ୍ୟାଦି ଔଷଧି, ଅନ୍ନ, ମିଠା, ଦଧି, ଗହମ, ମୁଗ, ମଶୁର, ହରଡ଼ ଆଦି ଖାଦ୍ୟ ଓ ପୁଷ୍ଟିକର ତରକାରୀ ଭୋଜନ କରିବେ । ସେଥିରୁ ଋତୁଭେଦରେ ଭିନ୍ନ ଭିନ୍ନ ମସଲ, ଯେପରି ଗ୍ରୀଷ୍ମକାଳରେ ସ୍ନିଗ୍ଧ ଶ୍ୱେତ ଅଳେଇଚ ପ୍ରଭୃତି ଏବଂ ଶୀତକାଳରେ କସ୍ତୁରୀ ଓ କେଶରାଦି ମିଶ୍ରିତ କରି ସେବନ କରିବେ । ସର୍ବଦା ଯୁକ୍ତ ଆହାର ବିହାର କରିବେ । ସ୍ତ୍ରୀ ବିଶେଷ ଭାବରେ ଦହି ସହିତ ଶୁଣ୍ଠି ଓ ବ୍ରାହ୍ମୀ ଔଷଧି ସେବନ କରିବେ । ଏହାଦ୍ୱାରା ସନ୍ତାନ ଅତି ବୁଦ୍ଧିମାନ ହେବେବ ଓ ଶୁଭ, ଗୁଣ, କର୍ମ, ସ୍ୱଭାବ ଯୁକ୍ତ ହେବ ।

ଇତି ଗର୍ଭାଧାନ ବିଧିଃ ସମାପ୍ତଃ ।

—ଃ୦ଃ—

# ଅଥ ପୁଂସବନମ୍

ଗର୍ଭସ୍ଥିତ ହୋଇଛି ବୋଲି ଜଣାଯିବାର ଦ୍ୱିତୀୟ ବା ତୃତୀୟ ମାସରେ ପୁଂସବନ ସଂସ୍କାର କରିବାକୁ ହୁଏ । ପୁରୁଷତ୍ୱ ବା ବୀର୍ଯ୍ୟ ଲାଭ ହେବା ଲକ୍ଷ୍ୟରେ ସେହି ସମୟରେ ପୁଂସବନ ସଂସ୍କାର କରାଯାଏ । ସନ୍ତାନ ଜନ୍ମନେବା ପରେ ଦୁଇମାସ ପର୍ଯ୍ୟନ୍ତ ପୁରୁଷ ବ୍ରହ୍ମଚର୍ଯ୍ୟ ରହିବେ । ସ୍ୱପ୍ନରେ ମଧ୍ୟ ବୀର୍ଯ୍ୟନଷ୍ଟ କରିବେ ନାହିଁ । ଖାଦ୍ୟ, ପୋଷାକ, ନିଦ୍ରା ଓ ଜାଗରଣ ପ୍ରଭୃତି ସମସ୍ତ କ୍ରିୟା ଏପରି ଭାବରେ କରିବେ ଯଦ୍ୱାରା ବୀର୍ଯ୍ୟସ୍ଥିତ ରହିବ । ଏହାଦ୍ୱାରା ଦ୍ୱିତୀୟ ସନ୍ତାନ ମଧ୍ୟ ଉତ୍ତମ ହେବ ।

**ଅତ୍ର ପ୍ରମାଣାନି**

**ପୁମାଗ୍ଂ ସୌ ମିତ୍ରାବରୁଣୌ ପୁମାଗ୍ଂ ସାବଶ୍ୱିନାବୁଭୌ ।**
**ପୁମାନଗ୍ନିଶ୍ଚ ବାୟୁଶ୍ଚ ପୁମାନ୍ ଗର୍ଭସ୍ତବୋଦରେ ॥ ୧ ॥**
**ପୁମାନଗ୍ନିଃ ପୁମାନିନ୍ଦ୍ରଃ ପୁମାନ୍ ଦେବୋ ବୃହସ୍ପତିଃ ।**
**ପୁମାଗ୍ଂ ସଂ ପୁତ୍ରଂ ବିନ୍ଦସ୍ୱ ତଂ ପୁମାନନୁ ଜାୟତାମ୍ ॥ ୨ ॥**

ସାମବେଦେ ମନ୍ତ୍ର ବ୍ରାହ୍ମଣ ୧।୪।୮,୯

**ଶମୀମଶ୍ୱତ୍ଥ ଆରୂଢ଼ସ୍ତତ୍ର ପୁଂସବନଂ କୃତମ୍ ।**
**ତଦ୍ୱୈ ପୁତ୍ରସ୍ୟ ବେଦନଂ ତତ୍ ସ୍ତ୍ରୀଷ୍ୱା ଭରାମସି ॥**
**ପୁଂସି ବୈ ରେତୋ ଭବତି ତତ୍ ସ୍ତ୍ରିୟାମନୁ ଷିଚ୍ୟତେ ।**
**ତଦ୍‌ବୈ ପୁତ୍ରସ୍ୟ ବେଦନଂ ତତ୍ ପ୍ରଜାପତିରବ୍ରବୀତ୍ ॥୨॥**

ଏହି ମନ୍ତ୍ରମାନଙ୍କର ଅଭିପ୍ରାୟ ହେଉଛି ପୁରୁଷ ବୀର୍ଯ୍ୟବାନ୍ ହେବା ଆବଶ୍ୟକ ।

ନିମ୍ନରେ ପ୍ରଦତ୍ତ ଆଶ୍ୱଳାୟନ ଗୃହ୍ୟସୂତ୍ର ଏହାର ପରିପୁଷ୍ଟି କରେ—

**ଅଥାସ୍ୟୈ ମଣ୍ଡଳାଗାରଚ୍ଛାୟାୟାଂ ଦକ୍ଷିଣସ୍ୟାଂ ନାସିକାୟା-ମଜୀତାମୋଷଧୀଂ ନସ୍ତଃ କରୋତି ॥ ୧ ॥**

**ପ୍ରଜାବଜ୍ଜୀବପୁତ୍ରାଭ୍ୟାଂ ହୈକେ ॥ ୨ ॥**

ଗର୍ଭର ଦ୍ୱିତୀୟ ବା ତୃତୀୟ ମାସରେ ବଟବୃକ୍ଷର ଓହଳ ବା ବରକଡ଼ୀ ନେଇ ସ୍ତ୍ରୀର ଦକ୍ଷିଣନାସା ପୁଡ଼ାରେ ଶୁଙ୍ଘାଇବ ଏବଂ ଅନ୍ୟାନ୍ୟ ପୁଷ୍ଟିକର ପଦାର୍ଥ ଯଥା ଗୁଳୁଚି ବା ବ୍ରାହ୍ମୀ ଔଷଧ ଶୁଙ୍ଘାଇବ । ପାରସ୍କର ଗୃହ୍ୟସୂତ୍ରର ପ୍ରମାଣ ଅନୁସାରେ:—

**ଅଥ ପୁଂସବନଂ ପୁରା ସ୍ପନ୍ଦନ ଇତି ମାସେ ଦ୍ୱିତୀୟେ ତୃତୀୟେ ବା ॥ ୧ ॥** (କା: ୧ । କ: ୧୪)

ଚଳନ୍ତଦାନ ବା ଗର୍ଭସ୍ଥିତିର ଦ୍ୱିତୀୟ ବା ତୃତୀୟ ମାସରେ ଯେଉଁ ସଂସ୍କାର କରାଯାଏ ତାହାକୁ ପୁଂସବନ ସଂସ୍କାର କୁହାଯାଏ । ଗୋଭିଳୀୟ ଏବଂ ଶୌନକ ଗୃହ୍ୟସୂତ୍ରରେ ମଧ୍ୟ ଏହିପରି ଲେଖା-ଯାଇଅଛି ।

## ଅଥ କ୍ରିୟାରମ୍ଭ

ପୂର୍ବଲିଖିତ ଈଶ୍ୱରସ୍ତୁତି ପ୍ରାର୍ଥନୋପାସନା ମନ୍ତ୍ର ଉଚ୍ଚାରଣ ପୂର୍ବକ ଯଜମାନ ଏବଂ ପୁରୋହିତାଦି ସମସ୍ତେ ଈଶ୍ୱରୋପାସନା କରିବେ ଏବଂ ସେଠାରେ ଉପସ୍ଥିତ ସମସ୍ତ ଜନତା ଈଶ୍ୱରୋପାସନାରେ ମନ ସ୍ଥିର କରିବେ । ତତ୍ପରେ ପୂର୍ବୋକ୍ତ ସ୍ୱସ୍ତିବାଚନ ଓ ଶାନ୍ତି ପ୍ରକରଣ ମନ୍ତ୍ର ପାଠକରି ସାମାନ୍ୟ ପ୍ରକରଣୋକ୍ତ ନିୟମାନୁସାରେ ଯଜ୍ଞଦେଶ, ଯଜ୍ଞଶାଳା, ଯଜ୍ଞକୁଣ୍ଡ, ଯଜ୍ଞସମିଧା, ହୋମଦ୍ରବ୍ୟ ଓ

ସ୍ଥାଳୀପାକ ପ୍ରଭୃତି ପ୍ରସ୍ତୁତକର ଯଥାବିଧି ଆଚମନ, ଅଙ୍ଗସ୍ପର୍ଶ, ଅନ୍ବାଧାନ ପୂର୍ବକ ବିସମିଧାଦାନପରେ "ଓଁ ଅୟନ୍ତ ଇଧ୍ମ ଆତ୍ମା" ଠାରୁ "ଓଁ ଯଦସ୍ୟ କର୍ମଣୋ" ପର୍ଯ୍ୟନ୍ତ ମନ୍ତ୍ରଗୁଡ଼ିକ ପାଠକରି ବିଧି ନିର୍ଦ୍ଦିଷ୍ଟ କର୍ମ ସହିତ ଆହୁତି ଦାନ କରିବେ । ଶେଷରେ "ଓଁ ପ୍ରଜାପତୟେ ସ୍ୱାହା ॥ ଇଦଂ ପ୍ରଜାପତୟେ ଇଦଂ ନ ମମ ।" ମନ୍ତ୍ର ମନେ ମନେ ପାଠକରି ଆହୁତି ଦେବେ ।

ତତ୍ପରେ ନିମ୍ନ ଲିଖିତ ଦୁଇଟି ମନ୍ତ୍ରରେ ଦୁଇଟି ଆହୁତି ଦେବେ ।

**ଓଁ ଆ ତେ ଗର୍ଭୋ ଯୋନିମେତୁ**
**ପୁମାନ୍ ବାଣ ଇବେଷୁଧିମ୍ ।**
**ଆବୀରୋ ଜାୟତାଂ ପୁତ୍ରସ୍ତେ ଦଶମାସ୍ୟଃ ସ୍ୱାହା ॥ ୧ ॥**
**ଓଁ ଅଗ୍ନିରୈତୁ ପ୍ରଥମୋ ଦେବତାନାଂ ସୋଽସ୍ୟୈ ପ୍ରଜାଂ ମୁଞ୍ଚତୁ ମୃତ୍ୟୁପାଶାତ୍ । ତଦୟଂ ରାଜା ବରୁଣୋଽନୁମନ୍ୟତାଂ ଯଥେୟଂ ସ୍ତ୍ରୀ ପୌତ୍ରମଘଂ ନ ରୋଦାତ୍ ସ୍ୱାହା ॥ ୨ ॥** (ଆଶ୍ୱ: ଗୃହ୍ୟ: ୧।୧୩।୭)

ଏହି ଆହୁତି ଦୁଇଟି ହୋମସମାପନରେ ଏକାନ୍ତସ୍ଥାନରେ ପତ୍ନୀର ହୃଦୟ ଉପରେ ହାତରଖି ପତି ନିମ୍ନଲିଖିତ ମନ୍ତ୍ର ଉଚ୍ଚାରଣ କରିବେ ।

**ଓଁ ଯତ୍ତେ ସୁସୀମେ ହୃଦୟେ ହିତମନ୍ତଃ ପ୍ରଜାପତୌ ।**
**ମନ୍ୟେଽହଂ ମାଂ ତଦ୍ବିଦ୍ୱାଂସଂ**
**ମାହଂ ପୌତ୍ରମଘଂ ନିୟାମ୍ ॥**
(ଆଶ୍ୱ: ଗୃହ୍ୟ ୧।୧୩।୭)

ତଦନନ୍ତର ପୂର୍ବୋକ୍ତ ସାମବେଦ ଆର୍ଚ୍ଚିକ ଓ ମହାବାମଦେବ୍ୟ ଗାନକରି ଯେଉଁ ସ୍ତ୍ରୀ ପୁରୁଷଗଣ ସଂସ୍କାରକର୍ମ ଦର୍ଶନାର୍ଥ ଯଜ୍ଞସ୍ଥଳରେ ଉପସ୍ଥିତଥିବେ ସେମାନଙ୍କୁ ବିଦାୟ ଦେଇସାରିବା ପରେ ବଟବୃକ୍ଷର କଅଁଳ କଢ଼ି ଓ ଗୁଳୁଚକୁ ଚିକ୍‌କଣ କରି ବାଟି ଲୁଗାରେ ଛାଣି ଗର୍ଭବତୀ ସ୍ତ୍ରୀର ଦକ୍ଷିଣ ନାକପୁଡ଼ାରେ ଶୁଙ୍ଘାଇବ ତତ୍ପଶ୍ଚାତ୍—

**ଓଁ ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସ ଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ ॥ ୧ ॥**

(ଯ: ଅ: ୧୩ । ମ: ୪)

**ଓଁ ଅଦ୍‌ଭ୍ୟଃ ସମ୍ଭୃତଃ ପୃଥିବ୍ୟୈ ରସାଚ୍ଚ ବିଶ୍ୱକର୍ମଣଃ ସମବର୍ତ୍ତତାଗ୍ରେ । ତସ୍ୟ ତ୍ୱଷ୍ଟା ବିଦଧଦ୍ରୂପମେତି ତନ୍ମର୍ତ୍ତ୍ୟସ୍ୟ ଦେବତ୍ୱମାଜାନମଗ୍ରେ ॥ ୨ ॥**

(ଯ: ଅ ୩୧ । ମ: ୧୭)

ଏହି ଦୁଇମନ୍ତ୍ର ବୋଲି ପତି ନିଜର ଗର୍ଭବତୀ ପତ୍ନୀର ଗର୍ଭାଶୟ ଉପରେ ହସ୍ତ ସ୍ଥାପନ କରି ପୁନଶ୍ଚ ନିମ୍ନ ମନ୍ତ୍ର ବୋଲିବେ—

**ସୁପର୍ଣ୍ଣୋଽସି ଗରୁତ୍ମାଁସ୍ତ୍ରିବୃତ୍ତେ ଶିରୋ ଗାୟତ୍ରଂ ଚକ୍ଷୁ-ର୍ବୃହଦ୍ରଥନ୍ତରେ ପକ୍ଷୌ । ସ୍ତୋମଽଆତ୍ମା ଛନ୍ଦାଂସ୍ୟଙ୍ଗାନି ଯଜୂଁଷି ନାମ । ସାମ ତେ ତନୂର୍ବାମଦେବ୍ୟଂ ଯଜ୍ଞାୟଜ୍ଞିୟଂ ପୁଚ୍ଛଂ ଧିଷ୍ଣ୍ୟାଃ ଶଫାଃ । ସୁପର୍ଣ୍ଣୋଽସି ଗରୁତ୍ମାନ୍ଦିବଂ ଗଚ୍ଛ ସ୍ୱଃ ପତ ॥ ୧ ॥**

(ଯ: ଅ: ୧୨। ମ: ୪)

ଏହାପରେ ସ୍ତ୍ରୀ ନିୟମଅନୁସାରେ ଆହାର ବିହାର କରିବେ । ବଟଶୃଙ୍ଗରୂପେ ଗୁଳୁଚି, ବ୍ରାହ୍ମୀ ଔଷଧ ଏବଂ ଶୁଣ୍ଠି ସହିତ ଦୁଗ୍ଧ ମିଶ୍ରିତ କରି ଅଳ୍ପ ଅଳ୍ପ ସେବନ କରିବେ । ଅଧିକ ନିଦ୍ରା ଓ ଅଧିକ ବାକ୍ୟାଳାପ ପରିତ୍ୟାଗ କରିବେ । ଅଧିକ ଲବଣ, ଅମ୍ଳ, ତୀକ୍ଷ୍ଣ, କଟୁ, ହରିଡ଼ା, ପ୍ରଭୃତି ରେଚକ ବସ୍ତୁ ଭୋଜନ କରିବେ ନାହିଁ । ଲଘୁ ଆହାର କରିବେ । କ୍ରୋଧ, ଦ୍ୱେଷ, ଲୋଭାଦି ଦୋଷରେ ଆକ୍ରାନ୍ତ ହେବେନାହିଁ । ସଦାସର୍ବଦା ଚିତ୍ତକୁ ପ୍ରସନ୍ନ ରଖି ଉତ୍ତମ ବ୍ୟବହାର କରିବେ ।

ଇତି ପୁଂସବନସଂସ୍କାର ବିଧିଃ ସମାପ୍ତଃ ।

—ଃ ୦ ଃ—

# ଅଥ ସୀମନ୍ତୋନ୍ନୟନମ୍

ତୃତୀୟ ସଂସ୍କାରକୁ ସୀମନ୍ତୋନ୍ନୟନ କୁହାଯାଏ । ଏହାଦ୍ୱାରା ଗର୍ଭିଣୀ ସ୍ତ୍ରୀର ମନ ସନ୍ତୁଷ୍ଟ ହୁଏ, ଶରୀର ଆରୋଗ୍ୟ ହୁଏ, ଗର୍ଭ ସ୍ଥିର, ଉତ୍କୃଷ୍ଟ ଓ ନିତ୍ୟବର୍ଦ୍ଧନଶୀଳ ହୁଏ । ଏ ବିଷୟରେ ପ୍ରମାଣ ଲେଖାଅଛି—

**ଚତୁର୍ଥେ ଗର୍ଭମାସେ ସୀମନ୍ତୋନ୍ନୟନମ୍ ॥ ୧ ॥**

**ଆପୂର୍ଯମାଣପକ୍ଷେ (ଯଦା) ପୁଂସା ନକ୍ଷତ୍ରେଣ ଚନ୍ଦ୍ରମାଯୁକ୍ତଃ ସ୍ୟାତ୍ ॥ ୨ ॥**

**ଅଥାସ୍ୟୈ ଯୁଗ୍ମେନ ଶଲାଲୁଗ୍ରପ୍ସେନ (ସଲାଟଗ୍ଲ-ପ୍ସେନ) ତ୍ରେଣ୍ୟା ଚ ଶଲଲ୍ୟା ତ୍ରିଭିଶ୍ଚ କୁଶପିଞ୍ଜୂଲୈରୂର୍ଦ୍ଧ୍ୱଂ ସୀମନ୍ତଂ ବ୍ୟୂହତି ଭୂର୍ଭୁବଃ ସ୍ୱରୋମିତି ତ୍ରିଃ ଚତୁର୍ବା ॥**

ଆଶ୍ୱଳାୟନ ଗୃହ୍ୟସୂତ୍ର ୧ । କଂ ୧୪ । ସୂ ୧, ୨, ୪

**ପୁଁସବନବତ୍ପ୍ରଥମେ ଗର୍ଭେ ମାସେ ଷଷ୍ଠେଽଷ୍ଟମେ ବା ॥**

ପାର: ଗୃ: କା ୧ । କ: ୧୫ । ସୂ ୨

ଏହା ପାରସ୍କର ଗୃହ୍ୟସୂତ୍ରର ପ୍ରମାଣ । ଏହାପରି ଗୋଭିଳୀୟ ଓ ଶୌନକ ଗୃହ୍ୟସୂତ୍ରରେ ମଧ୍ୟ ଲେଖାଅଛି ।

ଅର୍ଥ—ଗର୍ଭମାସରୁ ୪ ମାସ ମଧ୍ୟରେ, ଶୁକ୍ଳପକ୍ଷରେ ଯେଉଁଦିନ ପୁନର୍ବସୁ, ଅନୁରାଧା, ପୁଷ୍ୟା, ମୂଳ, ଶ୍ରବଣା, ଅଶ୍ୱିନୀ ଓ ମୃଗଶିରାଆଦି ପୁଲିଙ୍ଗବାଚକ ନକ୍ଷତ୍ରଯୁକ୍ତ ଚନ୍ଦ୍ରମା ହେବ, ସେହିଦିନ ସୀମନ୍ତୋନ୍ନୟନ ସଂସ୍କାର କରିବ ଏବଂ ପୁଂସବନ ସଂସ୍କାରପରି ଷଷ୍ଠ ବା ଅଷ୍ଟମ ମାସରେ ଶୁକ୍ଳପକ୍ଷରେ ପୂର୍ବୋକ୍ତ ନକ୍ଷତ୍ରଯୁକ୍ତ ଚନ୍ଦ୍ରମାର ଦିନରେ ସୀମନ୍ତୋନ୍ନୟନ ସଂସ୍କାର କରିବ ।

**ଅଥ ଶର୍ଦ୍ଧ** ଏଥିରେ ପ୍ରଥମ ୭ ପୃଷ୍ଠାରୁ ୬୭ ପୃଷ୍ଠା ପର୍ଯ୍ୟନ୍ତ ବର୍ଣ୍ଣ କରି ଅଗ୍ରତେ ଅଗ୍ନିମନସ୍ୱ ଇତ୍ୟାଦି ମନ୍ତ୍ରଦ୍ୱାରା ବର୍ଣ୍ଣ ଅନୁସାରେ ବେଦୀର ପୂର୍ବଭାଗରେ ତଥା ଅନ୍ୟାନ୍ୟଭାଗରେ ଜଳସିଞ୍ଚନ କରି ନିମ୍ନୋକ୍ତ ମନ୍ତ୍ରରେ କୁଣ୍ଡର ଚତୁଃଦିଗରେ ଜଳ ସିଞ୍ଚନ କରିବ।

**ଓଁ ଦେବ ସବିତଃ ପ୍ରସୁବ ଯଜ୍ଞଂ ପ୍ରସୁବ ଯଜ୍ଞପତିଂ ଭଗାୟ। ଦିବ୍ୟୋ ଗନ୍ଧର୍ବଃ କେତପୂଃ କେତନ୍ନଃ ପୁନାତୁ ବାଚସ୍ପତିର୍ବାଚଂ ନଃ ସ୍ୱଦତୁ ସ୍ୱାହା ॥୧॥**

ଯଜୁ° ୧୧।୭

ତାପରେ ଆଘାରବାଜ୍ୟଭାଗାହୁତି ୪ ଟି ଓ ବ୍ୟାହୃତି ଆହୁତି ୪ ଟି ମିଶାଇ ମୋଟ ଆଠଟି ଆହୁତି ପ୍ରଦାନ କରିବ। (ଏଇ ଆଘାରବାଜ୍ୟଭାଗାହୁତି ଓ ବ୍ୟାହୃତି ମନ୍ତ୍ର ସ.ମ.ନା ପ୍ରକରଣରେ ଲେଖାଅଛି) ତତ୍ପରେ —

**ଓଁ ପ୍ରଜାପତୟେ ତ୍ୱା ଜୁଷ୍ଟଂ ନିର୍ବପାମି ॥**

ଏଇମନ୍ତ୍ର ବୋଲି ଚାଉଳ, ତିଳ ଓ ମୁଗ — ଏଇ ତିନୋଟି ଦ୍ରବ୍ୟ ସମାନ ଭାଗରେ ଆଣି ପୁନର୍ବାର—

**ଓଁ ପ୍ରଜାପତୟେ ତ୍ୱା ଜୁଷ୍ଟଂ ପ୍ରୋକ୍ଷାମି ॥**

ଏ ମନ୍ତ୍ର ବୋଲି ସେହି ସମୁଦାୟକୁ ବିଶୁଦ୍ଧ ଜଳରେ ଧୌତ କରି ଖେଚରାନ୍ନ ପ୍ରସ୍ତୁତ କରିବେ ଏବଂ ସେଥିରେ ଯଥେଷ୍ଟ ପରିମାଣରେ ଘୃତ ମିଶ୍ରିତ କରି ନିମ୍ନଲିଖିତ ମନ୍ତ୍ରଦ୍ୱାରା ଆଠଟି (୮ଟି) ଆହୁତି ପ୍ରଦାନ କରିବେ —

ଓଁ ଧାତା ଦଦାତୁ ଦାଶୁଷେ ପ୍ରାଚୀଂ ଜୀବାତୁମକ୍ଷିତାମ୍ ।
ବୟଂ ଦେବସ୍ୟ ଧୀମହି ସୁମତିଂ ବାଜିନୀବତଃ ସ୍ୱାହା ॥
ଇଦଂ ଧାତ୍ରେ—ଇଦନ୍ନ ମମ । ୧ ॥

(ଅଥର୍ବ କା ୭ । ସୂ ୧୭ । ମଂ ୨, ଆ: ଗୃ: ୧ । ୧୨,୧୩)

ଓଁ ଧାତା ପ୍ରଜାନାମୁତ ରାୟଈଶେ ଧାତେଦଂ ବିଶ୍ୱଂ ଭୁବନଂ ଜଜାନ । ଧାତା କୃଷ୍ଟୀରନିମେଷାଭି ଚଷ୍ଟେ ଧାତ୍ର-ଇଦ୍ଧବ୍ୟଂ ଘୃତବଜ୍ଜୁହୋତ ସ୍ୱାହା ॥ ଇଦଂ ଧାତ୍ରେ – ଇଦନ୍ନ ମମ ॥ ୨ ॥

ଋ: ଖିଲ ସୂକ୍ତ ଖ ୩।୨ ୮, ଆ: ଗୃ: ୧।୧୨।୩

ଓଁ ରାକାମହଂ ସୁହବାଂ ସୁଷ୍ଟୁତୀ ହୁବେ ଶୃଣୋତୁ ନଃ ସୁଭଗା ବୋଧତୁତ୍ମନା । ସୀବ୍ୟତ୍ୱପଃ ସୂଚ୍ୟାଚ୍ଛିଦ୍ୟମାନୟା ଦଦାତୁ ବୀରଂ ଶତଦାୟମୁକ୍ଥ୍ୟଂ ସ୍ୱାହା ॥ ଇଦଂ ରାକାୟୈ ଇଦନ୍ନ ମମ ॥ ୩ ॥

ଓଁ ଯାସ୍ତେ ରାକେ ସୁମତୟଃ ସୁପେଶସୋ ଯାଭିର୍ଦଦାସି ଦାଶୁଷେ ବସୂନି । ତାଭିର୍ନୋ ଅଦ୍ୟ ସୁମନା ଉପାଗହି ସହସ୍ରପୋଷଂ ସୁଭଗେ ରରାଣା ସ୍ୱାହା ॥ ଇଦଂ ରାକାୟୈ — ଇଦନ୍ନ ମମ ॥ ୪ ॥

(ଋ: ମଂ: ୨ । ସୂକ୍ତ ୩୨ । ମଂ ୪,୫)

ଓଁ ନେଜମେଷ ପରାପତ ସୁପୁତ୍ରଃ ପୁନରାପତ ।
ଅସ୍ୟୈ ମେ ପୁତ୍ରକାମାୟୈ
ଗର୍ଭମାଧେହି ଯଃ ପୁମାନ୍ ସ୍ୱାହା ॥ ୫ ॥

ଯଥେୟଂ ପୃଥିବୀ ମହ୍ୟଭୂତାନା ଗର୍ଭମା ଦଧେ ।
ଏବଂ ତଂ ଗର୍ଭମା ଧେହ୍ଣି ଦଶମେ ମାସି ସୂତବେ ସ୍ୱାହା ॥୭

ଇଷ୍ଟୋଃ ଶ୍ରେଷ୍ଠେନ ରୂପେଣାସ୍ୟାଂ ନାର୍ଯ୍ୟାଂ ଗବୀନ୍ୟାମ୍ ।
ପୁମାଂସ ପୁତ୍ରାନା ଧେହ୍ଣି ଦଶମେ ମାସି ସୂତବେ ସ୍ୱାହା ॥୭

ଆଶ୍ୱ: ଗୃ ୧।୧୪।୩, ଋ: ଖିଳସୂକ୍ତ ସଂ ୩୩। ମଂ ୧-୩

ଏଇ ସାତଟି ମନ୍ତ୍ରଦ୍ୱାରା ଖେଁଚର୍ଭାତର ସାତିଗୋଟି ଆହୁତି ଦେଇ ପୁନର୍ବାର ପୃଷ୍ଠା ୭୯ ରେ ଲିଖିତ ବିଧିଅନୁସାରେ ଓଁ ପ୍ରଜାପତୟେ ନ ଭୂ ମନ୍ତ୍ରରେ ଗୋଟିଏ, ମୋଟରେ ୮ଟି ଆହୁତି ଦେବ । ପୃଷ୍ଠା ରେ ଲିଖିତ ନିୟମାନୁସାରେ (ଓଁ ପ୍ରଜାପତୟେ ) ମନ୍ତ୍ରରେ ଗୋଟିଏ ଅନ୍ୟାହୁତି ଓ ପୃଷ୍ଠା ରେ ଲିଖିତ ନିୟମାନୁସାରେ (ଓଁ ଯଦସ୍ୟ କର୍ମଣୋ) ମନ୍ତ୍ରରେ ଗୋଟିଏ ଖେଚରୁ ଆହୁତି ଦେବ । ତତ୍ପରେ(ଓଁ ତ୍ୱନ୍ନୋ ଅଗ୍ନେ)ପୃଷ୍ଠା ରେ ଲିଖିତ ନିୟମାନୁସାରେ ଆଠଟି ଘୃତାହୁତି ୮ଟି ମନ୍ତ୍ରରେ ଦେବ ଏବଂ ପୃଷ୍ଠାରେ ଲିଖିତ ଓଁ ଭୂରଗ୍ନୟେ ଇତ୍ୟାଦି ୪ (ଚାରିଟି) ବ୍ୟାହୃତି ମନ୍ତ୍ରରେ ଚାରିଟି ଆଜ୍ୟାହୁତି ପ୍ରଦାନ କରି ପତି ଓ ପତ୍ନୀ ଏକାନ୍ତରେ ଉତ୍ତମ ଆସନରେ ବସିବେ । ପତି ପତ୍ନୀର ପଶ୍ଚାତ୍ ଭାଗରେ ପୃଷ୍ଠଦେଶରେ ବସି ନିମ୍ନଲିଖିତ ମନ୍ତ୍ରଗୁଡ଼ିକ ପାଠ କରିବେ—

ପତି—

ଓଁ ସୁମିତ୍ରିୟା ନ ଆପ ଓଷଧୟଃ ସନ୍ତୁ ଦୁର୍ମିତ୍ରିୟାସ୍ତସ୍ମୈ ସନ୍ତୁ ଯୋଽସ୍ମାନ୍ ଦ୍ୱେଷ୍ଟି ଯଞ୍ଚ ବୟଂ ଦ୍ୱିଷ୍ମଃ ॥ ୧ ॥

(ଯଜୁ ୬।୨୨)

ମୂର୍ଦ୍ଧାନଂ ଦିବୋ ଅରତିଂ ପୃଥିବ୍ୟା ବୈଶ୍ୱାନରମୃତ ଆ ଜାତମଗ୍ନିମ୍ । କବିଂ ସମ୍ରାଜମତିଥିଂ ଜନାନାମାସନ୍ନା ପାତ୍ରଂ ଜନୟନ୍ତ ଦେବାଃ ॥ ୨ ॥ (ଯଜୁ ୭।୨୪ )

ଓଁ ଅସ୍ୟ ମୂର୍ଦ୍ଧ ବତ୍ତେ। ବୃକ୍ଷ ଉର୍ଦ୍ଧ୍ୱୀବ ଫଳନୀ ଭବ ।
ପର୍ଣ୍ଣଂ ବନସ୍ପତେ ନୁ ତ୍ୱା ନୁ ତ୍ୱା ସୂୟତାଂ ରୟିଃ ॥ ୩ ॥

ଓଁ ଯେନ ଦିତେଃ ସୀମାନଂ ନୟତି ପ୍ରଜାପତିର୍ମହତେ ସୌଭଗାୟ । ତେନାହମସ୍ୟୈ ସୀମାନଂ ନୟାମି ପ୍ରଜାମସ୍ୟୈ ଜରଦଷ୍ଟିଂ କୃଣୋମି ॥ ୪ ॥

ଓଁ ରାକାମହ ସୁହବାଂ ସୁଷ୍ଟୁତୀ ହୁବେ ଶୃଣୋତୁ ନଃ ସୁଭଗା ବୋଧତୁ ତ୍ମନା । ସୀବ୍ୟତ୍ୱପଃ ସୂଚ୍ୟାଚ୍ଛିଦ୍ୟମାନୟା ଦଦାତୁ ବୀରଂ ଶତଦାୟମୁକ୍ଥ୍ୟମ୍ ॥ ୫ ॥

ଓଁ ଯାସ୍ତେ ରାକେ ସୁମତୟଃ ସୁପେଶସୋ ଯାଭିର୍ଦଦାସି ଦାଶୁଷେ ବସୂନି । ତାଭିର୍ନୋ ଅଦ୍ୟ ସୁମନା ଉପାଗହି ସହସ୍ରପୋଷଂ ସୁଭଗେ ରରାଣା ॥ ୬ ॥
କାଂ ପଶ୍ୟଂ ପ୍ରଜାଂ ପଶୂନ୍ତସୌଭଗ୍ୟଂ ମହ୍ୟଂ ଦୀର୍ଘାୟୁଷ୍ଟ୍ୱଂ ପତ୍ୟୁଃ ॥ ୭ ॥

(ଋ: ମଂ ୨ । ସୂ ୩୨ ମଂ ୪,୫ । ଗୋ ୨।୭।୮)

ଏଇ ମନ୍ତ୍ରଗୁଡ଼ିକ ପାଠ କରି ପତି ନିଜହାତରେ ପତ୍ନୀର ମସ୍ତକରେ ସୁଗନ୍ଧ ତୈଳ ଦେଇ ପାନିଆରେ କେଶ ପ୍ରସାଧନ କରିଦେବେ । ଯଜ୍ଞଡ଼ିମିରି ବା ଅର୍ଜ୍ଜୁନ ବୃକ୍ଷର ଶଳାକା ଅଥବା କୁଶାଗ୍ର-ଗୁଚ୍ଛ ବା ଦ୍ୱାରା ପତ୍ନୀର କେଶପାଶ ମୁକ୍ତ କରି ସୁବିନ୍ୟସ୍ତ ଭାବରେ କବରୀ ରଚନା କରିଦେବେ ଏବଂ ତାପରେ ଉଭୟେ ଯଜ୍ଞଶାଳାକୁ ଆସିବେ ।

ଏଇ ସମୟରେ ବୀଣା ଆଦି ବାଦ୍ୟଯନ୍ତ୍ର ବଜାଇବେ । ତାପରେ ପୃଷ୍ଠାରେ ଲିଖିତ ବିଧିଅନୁସାରେ ସାମବେଦ ଗାନ କରିବେ ପ୍ରାରମ୍ଭରେ—

ଓଁ ୯ ନା ଖଦେଜମା ମାନୁଷୀଃ ପ୍ରଜାଃ ।
୧୨ ମୁକ୍ତ ନ୍ ଅଂଧୀରଂସ୍ତ୍ରୀକେ ତୁଭ୍ୟମ ଅପେଁ ॥ *

ଏକ ମନ୍ତ୍ର ଗାଇ ପରେ ଅନ୍ୟମନ୍ତ୍ର ଗାଇବେ । ତାପରେ ପୂର୍ବୋକ୍ତ ଆହୃତ ଗୃତକ ଦେଇ ଅବଶିଷ୍ଟ ଖେଚଡ଼ାନ୍ନ ଯଥେଷ୍ଟ ଚଡ଼ମାନରେ ଘୃତଦେଇ ଗର୍ଭିଣୀ ସ୍ତ୍ରୀ ସେଇ ଘୃତ ମଧ୍ୟରେ ନିଜର ପ୍ରତିବିମ୍ବ ଦେଖିବେ । ଏଇ ସମୟରେ

ପତି ସ୍ତ୍ରୀକୁ ଜିଜ୍ଞାସା କରିବେ—"**କିଂ ପଶ୍ୟସି**"

ସ୍ତ୍ରୀ ଉତ୍ତର ଦେବେ—"**ପ୍ରଜାଂ ପଶ୍ୟାମି**"

**ପ୍ରଜାଂ ପଶ୍ୟନ୍ ସୌଭାଗ୍ୟଂ ମହ୍ୟଂ ଦୀର୍ଘାୟୁଷ୍ଟ୍ବଂ ପତ୍ୟୁ ପଶ୍ୟାମି ॥** (ଗୋଭି: ଗୃ: ୨।୭।୩)

ତତ୍ପରେ ବୃଦ୍ଧା, କୁଳୀନ, ସୌଭାଗ୍ୟବତୀ, ପୁତ୍ରବତୀ ଓ ଗର୍ଭବତୀ ସ୍ୱୀୟ କୁଳର ତଥା ବ୍ରାହ୍ମଣମାନଙ୍କର ସ୍ତ୍ରୀମାନେ ଏକାନ୍ତେ ଉପବିଷ୍ଟ ହୋଇ ହସ ହସ ହୋଇ ଆନନ୍ଦରେ ଆଳାପ କରିବେ । ଏବଂ ସେଇ ଗର୍ଭିଣୀ ସ୍ତ୍ରୀ ଉକ୍ତ ଖେଚଡ଼ାନ୍ନ ସେବନ କରିବେ । ସେଇ ବୃଦ୍ଧାମାନେ ଓ ସମୀପରେ ବସିଥିବା ଭଦ୍ରରମଣୀମାନେ ତାକୁ ଏହିପରି ଆଶୀର୍ବାଦ ଦେବେ –

**ଓଁ ବୀରସୂସ୍ତ୍ବଂ ଭବ, ଜୀବସୂସ୍ତ୍ବଂ ଭବ, ଜୀବପତ୍ନୀ ତ୍ବଂ ଭବ ॥** (ଗୋଭି: ଗୃ: ୨।୭।୧୩)

ଏହିପରି ଶୁଭ ମାଙ୍ଗଳିକ ବଚନ କହିବେ । ତାପରେ ସଂସ୍କାରରେ ଯୋଗ ଦେଇଥିବା ମନୁଷ୍ୟମାନଙ୍କୁ ଯଥାଯୋଗ୍ୟ ଆଦର ସମ୍ମାନ କରି ସ୍ତ୍ରୀ, ସ୍ତ୍ରୀଙ୍କୁ ଓ ପୁରୁଷ, ପୁରୁଷଙ୍କୁ ବିଦାୟ ଦେବେ ।

ଇତି ସୀମନ୍ତୋନ୍ନୟନ ସଂସ୍କାର ବିଧିଃ ସମାପ୍ତଃ ।

---

* ଏଠାରେ କୌଣସି ନଦୀର ନାମ ଉଚ୍ଚାରଣ କରିବେ ।

# ଅଥ ଜାତକର୍ମ ସଂସ୍କାରବିଧିଃ

ଏଇ ସଂସ୍କାରର ସମୟ, ପ୍ରମାଣ ଓ କର୍ମ ଏପରି ଏବଂ ବିଧି ଏଇପରି ଭାବେ କରିବେ—

**ସୋଷ୍ୟନ୍ତୀମଦ୍ଭିରଭ୍ୟୁକ୍ଷତି ॥** (ପା ଗୃ ସୂ କା ୧।କଂ ୧୬।ସୂ ୧)

ଇତ୍ୟାଦି ପାରସ୍କର ଗୃହ୍ୟସୂତ୍ରର ପ୍ରମାଣ ଅଟେ । ଏହିପରି ଆଶ୍ୱଳାୟନ ଗୋଭିଲୀୟ ଓ ସୌନକ ଗୃହ୍ୟସୂତ୍ରରେ ମଧ୍ୟ ଲେଖାଅଛି ।

**ବିଧି**—ଯେତେବେଳେ ପ୍ରସବ ହେବାର ସମୟ ଆସିବ ସେତେବେଳେ ନିମ୍ନମନ୍ତ୍ରରେ ଗର୍ଭିଣୀ ସ୍ତ୍ରୀର ଶରୀର ଜଳଦ୍ୱାରା ମାର୍ଜ୍ଜନ କରିବ—

ମନ୍ତ୍ର—**ଓଁ ଏଜତୁ ଦଶମାସ୍ୟୋ ଗର୍ଭୋ ଜରାୟୁଣା ସହ । ଯଥାୟଂ ବାୟୁରେଜତି ସମୁଦ୍ର ଏଜତି । ଏବାୟଂ ଦଶମାସ୍ୟୋ ଅସ୍ରଜ୍ଜରାୟୁଣା ସହ ॥**

( ଯ: ଅ ୮।ମଂ ୨୮ )

ତତ୍ପରେ ନିମ୍ନଲିଖିତ ମନ୍ତ୍ର ଜପକରି ପୁନର୍ବାର ମାର୍ଜ୍ଜନକରିବେ ।

**ଓଁ ଅବୈତୁ ପୃଶ୍ନିଶେବଲଂ ଶୁନେ ଜରାୟ୍ୱତ୍ତବେ ।**
**ନୈବ ମାଂସେନ ପୀବରୀଂ ନ**
**କସ୍ମିଂଶ୍ଚନାୟତନମବ ଜରାୟୁ ପଦ୍ୟତାମ୍ ॥**

(ପା: ଗୃ: ସୂ: କା ୧।କଂ୧୬।୨)

**କୁମାର ଜାତଂ ପୁରାଽନ୍ୟୈରାଲମ୍ଭାତ୍ ସର୍ପିର୍ମଧୁନୀ ହିରଣ୍ୟ ନିକାଷଂ ହିରଣ୍ୟେନ ପ୍ରାଶୟେତ୍ ॥**

(ଆଶ୍ୱ: ଗୃ: ସୂ: ଅ ୧।କଂ ୧୫।୧ ସୂ ୧)

## ନାଡ଼ିଚ୍ଛେଦନ ଓ ଶିଶୁସ୍ନାନ

ଯେତେବେଳେ ସନ୍ତାନ ଜନ୍ମହେବ, ସେତେବେଳେ ପ୍ରଥମେ ଧାତ୍ରୀ ଆଦି ସ୍ତ୍ରୀଲୋକ ସନ୍ତାନର ଶରୀରକୁ ଜରାୟୁଠାରୁ ପୃଥକ୍ କରି ମୁଖ, ନାସିକା, କର୍ଣ୍ଣ ଓ ଚକ୍ଷୁଆଦିରୁ ଶୀଘ୍ର ମଇଳା ଦୂରକରିବେ ଏବଂ କୋମଳ ବସ୍ତ୍ରରେ ପୋଛି ଶୁଦ୍ଧ କରିବେ । ତାପରେ ତାକୁ ପିତାଙ୍କ କୋଡ଼ରେ ଦେବେ । ଯେଉଁସ୍ଥାନରେ ବାୟୁ ଓ ଶୀତ ପ୍ରବେଶ କରେନା ସେଭଳି ସ୍ଥାନରେ ବସି ପିତା (ସନ୍ତାନରି ନାଭିଦେଶରୁ) ନାଡ଼ୀର ଏକ ପଟିମାଣ ବାଦ୍ ଦେଇ ଉପରଆଡ଼କୁ ସୂତାରେ ବାନ୍ଧିବେ । ବନ୍ଧନର ଉପରୁ ନାଡ଼ୀ ଛେଦନ କରି ଈଷଦୁଷ୍ଣ ଜଳରେ ଶିଶୁକୁ ସ୍ନାନ କରାଇ ଶୁଦ୍ଧ ବସ୍ତ୍ରରେ ପୋଛି ନୂତନ ଶୁଦ୍ଧ ବସ୍ତ୍ର ପରିଧାନ କରାଇବେ ।

## ତ୍ୱରଗ୍ ବରଣ ଓ ହୋମ

ସୂତିକାଗାରର ବାହାରେ ପୂର୍ବୋକ୍ତ ପ୍ରକାରେ ଯେଉଁ କୁଣ୍ଡ ପ୍ରସ୍ତୁତ କରି ରଖା ହୋଇଥିବ, ସେଥିରେ ବା ତାମ୍ରକୁଣ୍ଡରେ ପୂର୍ବ ଲିଖିତ ବିଧି ଅନୁସାରେ—

## ସମିଧାଚୟନ

କରି ପୂର୍ବୋକ୍ତ ସାମାନ୍ୟ ବିଧି ଅନୁସାରେ ସ୍ୱିଷ୍ଟାକୃତ୍ ପ୍ରୀଷ୍ଟା ପର୍ଯ୍ୟନ୍ତ କଥିତ ବିଧିରେ ତାହାର ଦକ୍ଷିଣକାନରେ 'ବେଦୋସୀତି' ଅର୍ଥାତ୍ ତୁମର ଗୁପ୍ତ ନାମ ବେଦ—ଏଇ କଥା ଶ୍ରବଣ କରାଇବ ଏବଂ ସେଇ ସ୍ୱର୍ଣ୍ଣଶଳାକାଦ୍ୱାରା ପୂର୍ବମିଶ୍ରିତ ଘୃତ ଓ ମଧୁ ଅଳ୍ପ ଅଳ୍ପ କରି ଶିଶୁକୁ ନିମ୍ନଲିଖିତ ମନ୍ତ୍ରରେ ଚଟାଇବ—

ପିତା — ଓଁ ପ୍ରତେ ଦଦାମି ମଧୁନୋ ଘୃତସ୍ୟ ବେଦ ସବିତ୍ରା ପ୍ରସୂତଂ ମଘୋନାମ୍ । ଆୟୁଷ୍ମାନ୍ ଗୁପ୍ତୋ ଦେବତାଭିଃ ଶତଂ ଜୀବ ଶରଦୋ ଲୋକେ ଅସ୍ମିନ୍ ॥ ୧ ॥ ଓଁ ମେଧାଂ ତେ ମିତ୍ରାବରୁଣୌ ମେଧାମଗ୍ନିର୍ଦଧାତୁ ତେ । ମେଧା ତେ ଅଶ୍ୱିନୌ ଦେବାବାଧତ୍ତାଂ ପୁଷ୍କରସ୍ରଜୌ ।୨।

(ସଂ: ବ୍ରା: ୧।୫।ଶୋ ୨।୭।୨)

ଓଁ ଭୂସ୍ତ୍ୱୟି ଦଧାମି ॥ ୩ ॥
ଓଁ ଭୁବସ୍ତ୍ୱୟି ଦଧାମି ॥ ୪ ॥ ଓଁ ସ୍ୱସ୍ତ୍ୱୟି ଦଧାମି ॥ ୫ ॥
ଓଁ ଭୂର୍ଭୁବଃ ସ୍ୱଃ ସର୍ବଂ ତ୍ୱୟି ଦଧାମି ॥ ୬ ॥

(ପାର: କାଂ ୧।କଂ ୧୬।୪)

ଓଁ ସଦସସ୍ପତିମଦ୍ଭୁତଂ ପ୍ରିୟମିନ୍ଦ୍ରସ୍ୟ କାମ୍ୟମ୍ ।
ସନିଂ ମେଧାମୟାସିଷଁ ସ୍ୱାହା ॥ ୭ ॥

ଏହାର ପ୍ରତ୍ୟେକ ମନ୍ତ୍ରରେ ଥରକୁ ଥରେ ଘୃତ ଓ ମଧୁ ପ୍ରାଶନ କରାଇବେ ।

ତତ୍ପରେ ଯବ ଓ ତଣ୍ଡୁଳ ଶୁଦ୍ଧଜଳରେ ପେଷଣ କରି ବସ୍ତ୍ରରେ ଛାଣି ଅଙ୍ଗୁଷ୍ଠ (ବୁଢ଼ା) ଓ ଅନାମିକାଦ୍ୱାରା କଣ୍ଠିତ ନେଇ ନିମ୍ନୋକ୍ତ ମନ୍ତ୍ର ଉଚ୍ଚାରଣ ପୂର୍ବକ ଶିଶୁର ମୁହଁରେ ଗୋଟିଏ ବିନ୍ଦୁ ଦେବେ

ଓଁ ଇଦମାଜ୍ୟମିଦମନ୍ନମିଦମାୟୁରିଦମମୃତମ୍ ।

(ମନ୍ତ୍ର ବ୍ରା ଅ ୧।ଖଂ ୫।ମଂ ୮।ଗୋଭି: ଗୃ. ୨।୭।୧୯)

କେବଳ ଗୋଭିଲୀୟ ଗୃହ୍ୟସୂତ୍ରର ଏ ମତ, ସମସ୍ତଙ୍କର ନୁହେଁ ।

## ଆଶୀର୍ବଚନ

ତାପରେ ଶିଶୁର ପିତା ଶିଶୁର ଦକ୍ଷିଣ କର୍ଣ୍ଣରେ ମୁଖ ଲଗାଇ ନିମ୍ନଲିଖିତ ମନ୍ତ୍ର ଜପ କରିବେ—

ପିତା—ଓଁ ମେଧାଂ ତେ ଦେବଃ ସବିତା ମେଧାଦେବୀଂ ସରସ୍ୱତୀ । ମେଧାଂ ତେ ଅଶ୍ୱିନୌ ଦେବାବାଧତ୍ତାଂ ପୁଷ୍କରସ୍ରଜୌ ॥ ୧ ॥ (ଆ ଗୃ: ୧।୧୫।୨)

ଓଁ ଅଗ୍ନିରାୟୁଷ୍ମାନ୍ସ ବନସ୍ପତିଭିରାୟୁଷ୍ମାଂସ୍ତେନ ତ୍ୱାଽଽୟୁଷାଽଽୟୁଷ୍ମନ୍ତଂ କରୋମି ॥ ୨ ॥

ଓଁ ସୋମ ଆୟୁଷ୍ମାନ୍ତ୍ସ ଓଷଧୀଭିରାୟୁଷ୍ମାଂସ୍ତେନ ॥ ୩ ॥

ଓଁ ବ୍ରହ୍ମଽଽଆୟୁଷ୍ମତ୍ ତଦ୍ ବ୍ରାହ୍ମଣୈରାୟୁଷ୍ମତ୍ ତେନ ॥ ୪

ଓଁ ଦେବା ଆୟୁଷ୍ମନ୍ତସ୍ତେଽମୃତେନାୟୁଷ୍ମନ୍ତସ୍ତେନ ॥ ୫ ॥

ଓଁ ଋଷୟ ଆୟୁଷ୍ମନ୍ତସ୍ତେ ବ୍ରତୈରାୟୁଷ୍ମନ୍ତସ୍ତେନ ॥ ୬ ॥

ଓଁ ପିତର ଆୟୁଷ୍ମନ୍ତସ୍ତେ ସ୍ୱଧାଭିରାୟୁଷ୍ମନ୍ତସ୍ତେନ ॥ ୭ ॥

ଓଁ ଯଜ୍ଞ ଆୟୁଷ୍ମାନ୍ସ ଦକ୍ଷିଣାଭିରାୟୁଷ୍ମାଂସ୍ତେନ ॥ ୮ ॥

ଓଁ ସମୁଦ୍ର ଆୟୁଷ୍ମାନ୍ସ ସ୍ରବନ୍ତୀଭିରାୟୁଷ୍ମାଂସ୍ତେନ ତ୍ୱାଽଽୟୁଷାଽଽୟୁଷ୍ମନ୍ତଂ କରୋମି ॥ ୯ ॥

(ପା: ଗୃ ୧।କଂ ୧୬।୭)

---

ଏଠାରେ ପୂର୍ବମନ୍ତ୍ରର ଶେଷଭାଗ (ତ୍ୱାଂ) ଇତ୍ୟାଦି ଉତ୍ତର ମନ୍ତ୍ରମାନଙ୍କ ପଶ୍ଚାତ୍ ବୋଲିବ ।

ଏଇ ନଅଟି ମନ୍ତ୍ରର ଜପ ଅର୍ଥାତ୍ ଅର୍ଥ ଭାବନା କରିବ । ଏହାପରେ ଶିଶୁର ବାମକର୍ଣ୍ଣରେ ମୁଖ ରଖି ଉକ୍ତ ନଅଟି ମନ୍ତ୍ର ପୁନର୍ବାର ଜପ କରିବ ।

ତତ୍ପରେ ଶିଶୁର ସ୍କନ୍ଧ ଉପରେ ହସ୍ତର କୋମଳ ସ୍ପର୍ଶ ରଖି (ସ୍କନ୍ଧ ଉପରେ ଯେପରି ଭାର ନପଡ଼େ) ନିମ୍ନଲିଖିତ ମନ୍ତ୍ରଗୁଡ଼ିକ ବୋଲିବ—

**ଓଁ ଇନ୍ଦ୍ର ଶ୍ରେଷ୍ଠାନି ଦ୍ରବିଣାନି ଧେହି ଚିତ୍ତିଂ ଦକ୍ଷସ୍ୟ ସୁଭଗତ୍ୱମସ୍ମେ । ପୋଷଂ ରୟୀଣାମରିଷ୍ଟିଂ ତନୂନାଂ ସ୍ୱାଦ୍ମାନଂ ବାଚଃ ସୁଦିନତ୍ୱମହ୍ନାମ୍ ॥ ୧ ॥**

**ଅସ୍ମେ ପ୍ର ଯନ୍ଧି ମଘବନ୍ନୃଜୀଷିନ୍ନିନ୍ଦ୍ର ରାୟୋ ବିଶ୍ୱବାରସ୍ୟ ଭୂରେଃ । ଅସ୍ମେ ଶତଂ ଶରଦୋ ଜୀବସେ ଧା ଅସ୍ମେ ବୀରାଞ୍ଛଶ୍ୱତ ଇନ୍ଦ୍ରଶିପ୍ରିନ୍ ॥ ୨ ॥**

(ଋ: ମଂ: ୩।ସୂ ୩୬। ମଂ ୧୦)

**ଓଁ ଅଶ୍ମାଭବ ପରଶୁର୍ଭବ — ହିରଣ୍ୟମସ୍ତୃତଂ ଭବ । ବେଦୋ ବୈ ପୁତ୍ରନାମାସି ସ ଜୀବ ଶରଦଃ ଶତମ୍ ॥ ୩ ॥**

(ପାର: ଗୃ: ସୂ: ୧।୧୬।୧୮)

(ଆଶ୍ୱଳା: ୧।୧୫।୩)

ଏଇ ତିନିମନ୍ତ୍ର ବୋଲିବାପରେ ନିମ୍ନୋକ୍ତ ମନ୍ତ୍ର ତିନିଥର ଜପ (ଅର୍ଥଭାବନା) କରିବ—

**ତ୍ର୍ୟାୟୁଷଂ ଜମଦଗ୍ନେଃ କଶ୍ୟପସ୍ୟ ତ୍ର୍ୟାୟୁଷମ୍ । ଯଦ୍ଦେବେଷୁ ତ୍ର୍ୟାୟୁଷଂ ତନ୍ନୋଅସ୍ତୁ ତ୍ର୍ୟାୟୁଷମ୍ ॥ ୧॥**

(ଯଜୁ ୩।୬୨। ପାର: ୧।୧୬।୭)

ପ୍ରସୂତାଗାରକୁ ଗମନ ତଥା ପ୍ରସୂତାର ଶରୀର ମାର୍ଜନ ତାପରେ ଶିଶୁର ସ୍କନ୍ଧ ଦେହକୁ ହାତ ଉଠାଇ, ଯେଉଁ ସ୍ଥାନରେ ସନ୍ତାନର ଜନ୍ମ ହୋଇଛି, ସେହି ସ୍ଥାନରେ ଯାଇ ନିମ୍ନୋକ୍ତ ମନ୍ତ୍ର ଜପ (ଅର୍ଥଭାବନା) କରିବ—

**ଓଁ ବେଦ ତେ ଭୂମ ହୃଦୟଂ ଦିବି ଚନ୍ଦ୍ରମସି ଶ୍ରିତମ୍ ।**
**ବେଦାହଂ ତନ୍ମାଂ ତଦ୍‌ବିଦ୍ୟାତ୍ ପଶ୍ୟେମ ଶରଦଃ ଶତମ୍**
**ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତମ୍ ॥ ୧ ॥**

(ପାର: କା: ୧।୧୬।୧୭)

ଏବଂ ନିମ୍ନୋକ୍ତ ମନ୍ତ୍ର ପାଠ କରିବା ସମୟରେ ସୁଗନ୍ଧ ଜଳରେ ପ୍ରସୂତର ଶରୀର ମାର୍ଜନ କରିବ—

**ଯତ୍ତେ ସୁଶୀମେ ହୃଦୟଂ ହିତମନ୍ତଃ ପ୍ରଜାପତୌ ।**
**ବେଦାହଂ ମନ୍ୟେ ତଦ୍ ବ୍ରହ୍ମମାହଂ ପୌତ୍ରମଘଂ ନିଗାମ୍ ।୨**
**ଯତ୍ ପୃଥିବ୍ୟା ଅନାମୃତଂ ଦିବି ଚନ୍ଦ୍ରମସି ଶ୍ରିତମ୍ ।**
**ବେଦାମୃତସ୍ୟାହଂ ନାମ ମାହଂ ପୌତ୍ରମଘଂ ରିଷମ୍ ।୩॥**
**ଇନ୍ଦ୍ରାଗ୍ନୀ ଶର୍ମ ଯଚ୍ଛତଂ ପ୍ରଜାୟୈ ମେ ପ୍ରଜାପତୀଃ ।**
**ଯଥାୟଂ ନ ପ୍ରମୀୟେତ ପୁତ୍ରୋ ଜନିତ୍ର୍ୟା ଅଧି ॥ ୪ ॥**
**ଯଦଦଶ୍ଚନ୍ଦ୍ରମସି କୃଷ୍ଣଂ ପୃଥିବ୍ୟା ହୃଦୟଂ ଶ୍ରିତମ୍ ।**
**ତଦହଂ ବିଦ୍ୱାଂସ୍ତତ୍ ପଶ୍ୟନ୍**
**ମାହଂ ପୌତ୍ରମଘଂ ରୁଦମ୍ ॥ ୫ ॥**

(ମଂ: ବ୍ରା: ୧।୫।୧୦—୧୨।ଗୋ: ୨।୮।୪—୭ )

## ଆଶୀର୍ବାଦ

ନିମ୍ନୋକ୍ତ ମନ୍ତ୍ରପାଠ କରି ଶିଶୁକୁ ଆଶୀର୍ବାଦ ପ୍ରଦାନ କରିବ—

**କୋଽସି କତମୋଽସୋଽସ୍ୟମୃତୋଽସି ।**
**ଆହସ୍ପତ୍ୟଂ ମାସଂ ପ୍ରବିଶାସୌ ।। ୬ ।।**
**ସ ତ୍ୱାହ୍ନେ ପରିଦଦାତ୍ୱହସ୍ତ୍ୱା ରାତ୍ର୍ୟୈ ପରିଦଦାତୁ**
**ରାତ୍ରିସ୍ତ୍ୱାହୋରାତ୍ରାଭ୍ୟାଂ ପରିଦଦାତ୍ୱହୋରାତ୍ରୌ**
**ତ୍ୱାର୍ଦ୍ଧମାସେଭ୍ୟଃ ପରିଦତ୍ତାମର୍ଦ୍ଧମାସାସ୍ତ୍ୱା ମାସେଭ୍ୟଃ**
**ପରିଦଦତୁ ମାସାସ୍ତ୍ୱର୍ତୁଭ୍ୟଃ ପରିଦଦତ୍ୱୃତବସ୍ତ୍ୱା**
**ସଂବତ୍ସରାୟ ପରିଦଦତୁ ସଂବତ୍ସରସ୍ତ୍ୱାୟୁଷେ ଜରାୟୈ**
**ପରିଦଦାତ୍ୱସୌ ।। ୭ ।।** (ମଂ ବ୍ରା ୧।୫।୧୪,୧୫)

## ମସ୍ତକାଘ୍ରାଣ

ନିମ୍ନୋକ୍ତ ମନ୍ତ୍ରଗୁଡ଼ିକ ପାଠକରି ପୁତ୍ରର ଶିରୋଦେଶ ଆଘ୍ରାଣ କରିବ ଅର୍ଥାତ୍ ଶୁଙ୍ଘିବ—

**ଅଙ୍ଗାଦଙ୍ଗାତ୍ ସଂସ୍ରବସି ହୃଦୟାଦଧି ଜାୟସେ । ପ୍ରାଣଂ**
**ତେ ପ୍ରାଣେନ ସନ୍ଦଧାମି ଜୀବ ମେ ଯାବଦାୟୁଷମ୍ ।।୮।।**
(ମନ୍ତ୍ର ବ୍ରା ୧।୫।୧୬)

**ଅଙ୍ଗାଦଙ୍ଗାତ୍ ସଂଭବସି ହୃଦୟାଦଧିଜାୟସେ ।**
**ବେଦୋବୈ ପୁତ୍ର ନାମାସି ସ ଜୀବ ଶାରଦଃ ଶତମ୍ ।।୯।।**
**ଅଶ୍ମାଭବ ପରଶୁର୍ଭବ ହିରଣ୍ୟମସ୍ତୃତଂ ଭବ ।**
**ଆତ୍ମାଽସି ପୁତ୍ର ମା ମୃଥାଃ ସ ଜୀବ ଶରଦଃ ଶତମ୍ ।।୧୦।।**

**ପଶୂନାଂ ତ୍ୱା ହିଙ୍କାରେଣାଭି ଜିଘ୍ରାମ୍ୟସୌ ॥ ୧୧ ॥**
(ମନ୍ତ୍ର ବ୍ରା ୧।୫।୧୭—୧୯ । ଗୋ ୨।୮।୨୧ – ୨୫)

ଏଇ ମନ୍ତ୍ରଗୁଡ଼ିକ ଉଚ୍ଚାରଣ କରି ସନ୍ତାନର ଶିର ଆଘ୍ରାଣ କରିବ । ଏହିପରି ଯେଉଁ ଯେଉଁ ସମୟରେ ବିଦେଶରୁ (ଗୃହକୁ) ଆଗମନ କରିବେ ବା ବିଦେଶେ ଗମନ କରିବେ, ସେହି ସେହି ସମୟରେ ଏହିପରି କ୍ରିୟା କରିବ । ଏହାଦ୍ୱାରା ସନ୍ତାନ ଓ ମାତା-ପିତାଙ୍କ ମଧ୍ୟରେ ପ୍ରେମ ବିଶେଷ ବୃଦ୍ଧି ପାଇବ ।

## ନାରୀ-ସ୍ତୁତି

ନିମ୍ନୋକ୍ତ ମନ୍ତ୍ରରେ ଈଶ୍ୱର ପ୍ରାର୍ଥନା କରି ପ୍ରସୂତା ସ୍ତ୍ରୀକୁ ପ୍ରଫୁଲ୍ଲିତ କରିବ—

**ଓଁ ଇଡାସି ମୈତ୍ରାବରୁଣୀ ବୀରେ ବୀରମଜୀଜନଥାଃ । ସା ତ୍ୱଂ ବୀରବତୀ ଭବ ଯାଽସ୍ମାନ୍ ବୀରବତୋଽକରତ୍ ।୧**
(ପାରସ୍କର କା ୧। କଂ ୧୬।୧୯)

## ସ୍ତନ୍ୟଦାନ

ତତ୍ପରେ ଈଷଦୁଷ୍ଣ ସୁଗନ୍ଧିଜଳେ ସ୍ତ୍ରୀର ସ୍ତନଦ୍ୱୟ ପ୍ରକ୍ଷାଳନ କରି ପୋଛିଦେବେ ଏବଂ ନିମ୍ନୋକ୍ତ ମନ୍ତ୍ର ପାଠକରି ବାଳକର ମୁହଁରେ ପ୍ରଥମେ ଦକ୍ଷିଣ ସ୍ତନ ପ୍ରଦାନ କରିବ —

**ଓଁ ଇମଗୁଁ ସ୍ତନମୂର୍ଜସ୍ୱନ୍ତଂ ଧୟାପାଂ ପ୍ରପୀନମଗ୍ନେ ସରିରସ୍ୟ ମଧ୍ୟେ । ଉତ୍ସଂ ଜୁଷସ୍ୱ ମଧୁମନ୍ତମର୍ବନ୍ତ୍ସମୁଦ୍ରିୟଗୁଁ ସଦନମା ବିଶସ୍ୱ ॥ ୧ ॥**
(ଯ. ୧୭।୮୭। ପାର. ୧।୧୬।୨୧)

## ଅଗ୍ନ୍ୟାଧାନ ଓ ସମିଧାଚୟନ

କରି ଅଗ୍ନି ପ୍ରଜ୍ୱଳିତ କରିବେ । ବେଦୀ ନିକଟରେ ସୁଗନ୍ଧି ଘୃତାଦି ରଖି ପୁରୋହିତଙ୍କ * ପାଇଁ ଏକ ପୀଠାସନ ଅର୍ଥାତ୍ ଶୁଦ୍ଧାସନ କୁଣ୍ଡର ଦକ୍ଷିଣଭାଗରେ ରଖିବେ । ପୁରୋହିତ ମହାଶୟ ହସ୍ତପଦାଦି ଧୌତ କରି ସେହି ଆସନରେ ଉତ୍ତରାଭିମୁଖରେ ଉପବେଶନ କରିବେ । ଯଜମାନ ଅର୍ଥାତ୍ ବାଳକର ପିତା ହସ୍ତପଦାଦି ପ୍ରକ୍ଷାଳନ ପୂର୍ବକ ବେଦୀର ପଶ୍ଚିମଭାଗରେ ଆସନ ବିଛାଇ, ଉପ-ବସ୍ତ୍ରରେ ଶରୀର ଆଚ୍ଛାଦନ ପୂର୍ବକ ସେଥିରେ ପୂର୍ବାଭିମୁଖରେ ଉପବେଶନ କରିବେ । ସବୁ (ଯଜ୍ଞ) ସାମଗ୍ରୀ ନିଜର ତଥା ପୁରୋହିତର ନିକଟରେ ରଖି ପୁରୋହିତ ପଦ ଗ୍ରହଣ ପାଇଁ ବୋଲିବେ—

ଯଜମାନ—**ଓଁ ଆ ବସୋଃ ସଦନେ ସୀଦ ।।** ତତ୍ପରେ

ପୁରୋହିତ—**ଓଁ ସୀଦାମି ।।**

ଏହିପରି କହି ଆସନରେ ଉପବେଶନ କରିବେ ତତ୍ପରେ ପୃଷ୍ଠାରେ ଲିଖିତ ବିଧିରେ "ଓଁ ଅୟନ୍ତ ଇଧ୍ମ" ଇତ୍ୟାଦି ମନ୍ତ୍ରରେ ବେଦୀରେ ଚନ୍ଦନର ସମିଧଦାନ କରି ପ୍ରଜ୍ୱଳିତ ସମିଧର ଉପରେ ପୂର୍ବୋକ୍ତ ଉଷ୍ଣୀକୃତ ଘୃତଦ୍ୱାରା ପୃଷ୍ଠାରେ ଲିଖିତ ବିଧିରେ— ଆଘାରାବାଜ୍ୟାହୁତି ୪ ଚାରି ଓ ବ୍ୟାହୃତି ଆହୁତି ୪ (ଚାରି) ମୋଟରେ ୮ (ଆଠଟି) ଆଜ୍ୟାହୁତି ଦେବ । ତାପରେ ନିମ୍ନଲିଖିତ ମନ୍ତ୍ରରେ ତାପରେ ନିମ୍ନଲିଖିତ ମନ୍ତ୍ରରେ ଦୁଇଟି ଆଜ୍ୟାହୁତି ପ୍ରଦାନ କରିବେ—

---

* ଧର୍ମାତ୍ମା ଶାସ୍ତ୍ରୋକ୍ତ ବିଧିକୁ ପୂର୍ଣ୍ଣରୀତିରେ ଜାଣିଥିବା ବିଦ୍ୱାନ, ସଦ୍ଧର୍ମୀ କୁଳୀନ, ନିର୍ବ୍ୟସନୀ, ସୁଶୀଳ, ବେଦପ୍ରିୟ, ପୂଜନୀୟ, ସର୍ବୋପକାରୀ ଗୃହସ୍ଥର ପୁରୋହିତ ସଂଜ୍ଞା ଅଟେ ।

**ଓଁ ଯା ତିରଶ୍ଚୀ ନିପଦ୍ୟତେ ଅହଂ ବିଧରଣୀ ଇତି । ତାଂ ତ୍ୱା ଘୃତସ୍ୟ ଧାରୟା ଯଜେ ସଁରାଧନୀମହମ୍ । ସଁରାଧିନ୍ୟୈ ଦେବ୍ୟୈ ଦେଷ୍ଟ୍ର୍ୟୈ ସ୍ୱାହା । ଇଦଂ ସଂରାଧିନ୍ୟୈ— ଇଦନ୍ନ ମମ ।।**

**ଓଁ ବିପଶ୍ଚିତ୍ ପୁଚ୍ଛମଭରତ୍ ତଦ୍ଧାତା ପୁନରାହରତ୍ । ପରେହି ତ୍ୱଂ ବିପଶ୍ଚିତ୍ ପୁମାନୟଂ ଜନିଷ୍ୟତେଽସୌ ନାମ ସ୍ୱାହା । ଇଦଂ ଧାତ୍ରେ— ଇଦନ୍ନ ମମ ।।**

ଏହି ଦୁଇଟି ମନ୍ତ୍ରରେ ଆହୁତି ଦେବାପରେ ସାମାନ୍ୟ ପ୍ରକରଣରେ ଲିଖିତ ବିଧିଅନୁସାରେ ବାମଦେବ୍ୟଗାନ କରି ପୂର୍ଣ୍ଣାହୁତି ପର୍ଯ୍ୟନ୍ତ ଲିଖିତ ବିଧିରେ ଈଶ୍ୱରୋପାସନା କରିବ ।

## ନବଜାତ ଶିଶୁର ମଧୁପ୍ରାଶନ

ତାପରେ ଘିଅ ଓ ମହୁ ସମଭାଗରେ + ମିଶାଇ ପୂର୍ବରୁ ଝିଅାର ହୋଇଥିବା ସ୍ୱର୍ଣ୍ଣଶଳାକା ବା ସୁନାକାଠିରେ ଶିଶୁର ଜିହ୍ୱାଉପରେ ଓଁ ଏହି ଅକ୍ଷର ଲେଖିବ ।

ତାପରେ ନିମ୍ନୋକ୍ତ ମନ୍ତ୍ର ପାଠକରି ବାଳକର ମୁହଁରେ ବାମ ସ୍ତନ ପ୍ରଦାନ କରିବେ—

**ଓଁ ଯସ୍ତେ ସ୍ତନଃ ଶଶୟୋ ଯୋ ମୟୋଭୂର୍ଯୋ ରତ୍ନଧା ବସୁବିଦ୍ୟଃ ସୁଦତ୍ରଃ । ଯେନ ବିଶ୍ୱା ପୁଷ୍ୟସି ବାର୍ଯ୍ୟାଣି ସରସ୍ୱତୀ ତମିହ ଧାତବେ କଃ ।। ୧ ।।**

+ ଘିଅ ଓ ମହୁ ସମପରିମାଣରେ ମିଶାଇଲେ ବିଷାକ୍ତ ହୁଏ, ତେଣୁ ସମଭାଗେ ମିଶାଇବ ନାହିଁ । ଆୟୁର୍ବେଦ ମତରେ ଘିଅ ୧ ରତି ହେଲେ ମହୁ ୩ ରତି ମାତ୍ରା, ଅର୍ଥାତ୍ ମହୁ ଘିଅର ତିନିଗୁଣ ହେବା ଉଚିତ । (ସଂସ୍କାର ଚନ୍ଦ୍ରିକା)

## ସୂତିକାଗାରରେ ଦଶଦିନ ହୋମ

ପ୍ରସୂତା ସ୍ତ୍ରୀ ୧୦ ଦିନ ପର୍ଯ୍ୟନ୍ତ ସୂତିକାଗାରରେ ଅବସ୍ଥାନ କରିବେ । ସେଠାରେ ପ୍ରତିଦିନ ସାୟଂ ଓ ପ୍ରାତଃକାଳେ ସନ୍ଧିସମୟରେ ନିମ୍ନଲିଖିତ ଦୁଇଟି ମନ୍ତ୍ରରେ (ଘୃତପକ୍ୱ) ଅନ୍ନ ଓ ସର୍ଷପ ଏକତ୍ର ମିଶ୍ରିତ କରି ତଦ୍ୱାରା ଦଶଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଆହୁତି ଦାନ କରିବେ—

**ଓଁ ଶଣ୍ଡାମର୍କା ଉପବୀରଃ ଶୌଣ୍ଡିକେୟ ଉଲୂଖଲଃ । ମଳିମ୍ଳୁଚୋ ଦ୍ରୋଣାସଶ୍ଚ୍ୟବନୋ ନଶ୍ୟତାଦିତଃ ସ୍ୱାହା । ଇଦଂ ଶଣ୍ଡାମର୍କାଭ୍ୟାମ୍ ଉପବୀରାୟ, ଶୌଣ୍ଡିକେୟା ୟୋଲୂଖଲାୟ, ମଳିମ୍ଳୁଚାୟ ଦ୍ରୋଣେଭ୍ୟଶ୍ଚ୍ୟବନାୟ— ଇଦନ୍ନ ମମ ॥ ୧ ॥**

**ଓଁ ଆଲିଖନ୍ନନିମିଷଃ କିଂ ବଦନ୍ତ ଉପଶ୍ରୁତିର୍ହର୍ଯ୍ୟକ୍ଷଃ କୁମ୍ଭୀଶତ୍ରୁଃ ପାତ୍ରପାଣିର୍ନୃମଣିର୍ହନ୍ତ୍ରୀମୁଖଃ ସର୍ଷପାରୁଣଶ୍ଚ୍ୟବନୋ ନଶ୍ୟତାଦିତଃ ସ୍ୱାହା । ଇଦମାଲିଖତେଽନିମିଷାୟ କିଂ ବଦଦ୍ଭ୍ୟ ଉପଶ୍ରୁତୟେ ହର୍ଯ୍ୟକ୍ଷାୟ କୁମ୍ଭୀଶତ୍ରବେ ପାତ୍ରପାଣୟେ ନୃମଣୟେ ହନ୍ତ୍ରୀମୁଖାୟ ସର୍ଷପାରୁଣାୟ ଚ୍ୟବନାୟ—ଇଦନ୍ନ ମମ ।**

(ପା: ଗୃ: ୧।୧୬।୨୩)

## ଦଶମଦିବସରେ ସାର୍ବଜନୀନ ଆଶୀର୍ବାଦ

ଏହି ସମସ୍ତ ମନ୍ତ୍ରରେ ୧୦ ଦିନ ପର୍ଯ୍ୟନ୍ତ ହୋମ କରିସାରିବା ପରେ ଉତ୍ତମୋତ୍ତମ ବିଦ୍ୱାନ୍, ଧାର୍ମ୍ମିକ ଓ ବୈଦିକମତାବଲମ୍ବୀ ବ୍ୟକ୍ତି

ଗଣ ଗୃହର ବହିର୍ଭାଗେ ଦଣ୍ଡାୟମାନ ହୋଇ ଏବଂ ସନ୍ତାନର ମାତା ପିତା ଗୃହାଭ୍ୟନ୍ତରେ ରହି ନିମ୍ନଲିଖିତ ଆଶୀର୍ବାଦୀରୂପ ମନ୍ତ୍ର ଆନନ୍ଦ ସହକାରେ ପାଠ କରିବେ—

**ମା ନୋ ହାସିଷୁରୃଷୟୋ ଦୈବ୍ୟା ଯେ ତନୂପା ଯେ ନସ୍ତନ୍ୱ ସ୍ତନୂଜାଃ । ଅମର୍ତ୍ତ୍ୟା ମର୍ତ୍ତ୍ୟାଁ ଅଭି ନଃ ସଚଧ୍ୱମାୟୁର୍ଧତ୍ତ ପ୍ରତରଂ ଜୀବସେ ନଃ ॥ ୧ ॥**

(ଅଥର୍ବ କାː୬। ଅନୁː ୪।ସୂː ୪୧)

**ଇମଂ ଜୀବେଭ୍ୟଃ ପରିଧିଂ-ଦଧାମି ମୈଷାଂ ନୁ ଗାଦପରୋ ଅର୍ଥମେତମ୍ । ଶତଂ ଜୀବନ୍ତୁଃ ଶରଦଃ ପୁରୂଚୀସ୍ତିରୋ ମୃତ୍ୟୁଂ ଦଧତାଂ ପର୍ବତେନ ॥ ୨ ॥**

(ଅଥର୍ବ କାː ୧୨।ଅː ୨।ମː ୨୩)

**ବବସ୍ୱାନ୍ନୋ ଅଭୟଂ କୃଣୋତୁ ଯଃ ସୁତ୍ରାମା ଜୀରଦାନଃ ସୁଦାନୁଃ । ଇହେମେ ବୀରା ବହବୋ ଭବନ୍ତୁ ଗୋମଦଶ୍ୱ ବନ୍ମୟ୍ୟସ୍ତୁ ପୁଷ୍ଟମ୍ ॥ ୩ ॥** (ଅଥର୍ବ ୧୮।୩।୬୧)

ଇତି ଜାତକର୍ମ ସଂସ୍କାରବିଧିଃ ସମାପ୍ତଃ ।

—ː୦ː—

# ଅଥ ନାମକରଣସଂସ୍କାରବିଧିଂ ବକ୍ଷ୍ୟାମଃ

ଅତ୍ର ପ୍ରମାଣମ୍—**ନାମ ଚୈସ୍ମୈ ଦଦ୍ୟୁଃ ॥ ୧ ॥**

**ଘୋଷବଦାଦ୍ୟନ୍ତରନ୍ତଃସ୍ଥମଭିନିଷ୍ଠାନାନ୍ତଂ ଦ୍ୟକ୍ଷରମ୍ ।୨॥**

**ଚତୁରକ୍ଷରଂ ବା ॥ ୩ ॥**

**ଦ୍ୟକ୍ଷରଂ ପ୍ରତିଷ୍ଠାକାମଶ୍ଚତୁରକ୍ଷରଂ ବ୍ରହ୍ମବର୍ଚସକାମଃ ।୪॥**

**ଯୁଗ୍ମାନି ତ୍ୱେବ ପୁଂସାମ୍ ॥ ୫ ॥ ଅଯୁଜାନି ସ୍ତ୍ରୀଣାମ୍ ॥ ୬ ॥**

**ଅଭିବାଦନୀୟଂ ଚ ସମୀକ୍ଷେତ ତନ୍ମାତାପିତରୌ ବିଦଧ୍ୟାତାମୋପନୟନାତ୍ ॥ ୭ ॥**

ଏହା ଆଶ୍ୱଳାୟନ ଗୃହ୍ୟସୂତ୍ରରେ (୧।୧୫।୪—୧୦) ଲେଖାଅଛି ଏବଂ ପାରସ୍କର ଗୃହ୍ୟସୂତ୍ରରେ ଲିଖିତ ଅଛି ଯେ—

**ଦଶମ୍ୟାମୁତ୍ଥାପ୍ୟ * ପିତା ନାମ କରୋତି । ଦ୍ୟକ୍ଷରଂ ଚତୁରକ୍ଷରଂ ବା ଘୋଷବଦାଦ୍ୟନ୍ତରନ୍ତଃସ୍ଥଂ ଦୀର୍ଘାଭିନିଷ୍ଠାନାନ୍ତଂ କୃତଂ କୁର୍ଯାନ୍ନ ତଦ୍ଧିତମ୍ ଅଯୁଜାକ୍ଷରମାକାରାନ୍ତଂ ସ୍ତ୍ରିୟୈ ଶର୍ମ ବ୍ରାହ୍ମଣସ୍ୟ ବର୍ମ କ୍ଷତ୍ରିୟସ୍ୟ ଗୁପ୍ତେତି ବୈଶ୍ୟସ୍ୟ ॥**

ଏହିପରି ଗୋଭିଲୀୟ ଓ ଶୌନକ ଗୃହ୍ୟସୂତ୍ରରେ ଲିଖିତ ଅଛି । ନାମକରଣ ଅର୍ଥାତ୍ ଜନ୍ମହୋଇଥିବା ବାଳକର ସୁନ୍ଦର ନାମ ଦେବ । ନାମକରଣର କାଳ—ଯେଉଁଦିନ ସନ୍ତାନର ଜନ୍ମ, ସେହି ଦିନଠାରୁ ୧୦ ଦିନ ବାଦ ଦେଇ ଏକାଦଶ ଦିନରେ ବା

---

* ପାରସ୍କର ଗୃହ୍ୟସୂତ୍ରରେ—"ବ୍ରାହ୍ମଣାନ୍ ଭୋଜୟିତ୍ୱା" ପାଠ ଅଧିକ ଅଛି ।

୧୦୧ (ଏକଶହ ଏକ) ଦିନ ବା ଦ୍ୱିତୀୟ ବର୍ଷର ପ୍ରାରମ୍ଭରେ ଯେଉଁ ଦିନ ଜନ୍ମଦିନ ସେହି ଦିନ ନାମ କରଣ କରିବେ । ଯେଉଁ ଦିନ ନାମ ଦେବେ, ସେଦିନ ଅତି ଆନନ୍ଦରେ ଇଷ୍ଟ, ମିତ୍ର ଓ ହିତୈଷୀ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରି ଯଥାଯୋଗ୍ୟ ଆଦର ସମ୍ମାନ କରିବ ।

ଯଜମାନ ଅର୍ଥାତ୍ ସନ୍ତାନର ପିତା ଓ ଋତ୍ୱିକ୍ କ୍ରିୟା ଆରମ୍ଭ କରିବେ । ସାମାନ୍ୟ ପ୍ରକରଣରେ ଥିବା ବିଧି ଅନୁସାରେ ସମସ୍ତ ଈଶ୍ୱରୋପାସନା, ସ୍ୱସ୍ତି ବାଚନ, ଶାନ୍ତିପ୍ରକରଣ ଓ ସାମାନ୍ୟ ପ୍ରକରଣରେ ସମ୍ପୂର୍ଣ୍ଣ ବିଧି କରି ଆଘାରବାଜ୍ୟଭାଗାହୁତି ୪ ଗୋଟି ଓ ବ୍ୟାହୃତି ଆହୁତି ୪ ଗୋଟି ଓ "ତ୍ୱନ୍ନୋ ଅଗ୍ନେ" ଇତ୍ୟାଦି ଆଠମନ୍ତ୍ରଦ୍ୱାରା ଆଠ ଆହୁତି ଅର୍ଥାତ୍ ସବୁ ମିଶାଇ ୧୬ (ଷୋଳଟି) ଘୃତାହୁତି ଦେବ ।

ତାପରେ ସନ୍ତାନକୁ ସ୍ନାନ କରାଇ ଶୁଦ୍ଧବସ୍ତ୍ର ପରିଧାନ କରାଇବ ମାତା ଯଜ୍ଞକୁଣ୍ଡର ସମୀପରେ ଉପସ୍ଥିତ ହେବେ । ସେ ଆସିଲାବେଳେ ସନ୍ତାନର ପିତାଙ୍କର ପଶ୍ଚାତ୍‌ଭାଗରେ ଆସି ଦକ୍ଷିଣଭାଗରେ ରହି, ବାଳକର ମସ୍ତକ ଉତ୍ତରଦିଗକୁ ରଖି ବାଳକକୁ ପିତାଙ୍କ ହାତରେ ଦେବେ । ତାପର ସ୍ତ୍ରୀ ପୁଣି ଥରେ ଏହିପରି ପତିଙ୍କର ପଛଦେଇ ଉତ୍ତରଦିଗରେ ପୂର୍ବାଭିମୁଖ ହୋଇ ବସିବେ । ତାପର ମାତା ସେ ବାଳକର ଶିରଦେଶ ଉତ୍ତର ଓ ପାଦଦେଶ ଦକ୍ଷିଣଦିଗକୁ ରଖି ସନ୍ତାନକୁ ପତ୍ନୀଙ୍କ ହାତରେ ଦେବେ ।

ତାପରେ ସେହି ସଂସ୍କାର ନିମିତ୍ତ ଯାହା କର୍ତ୍ତବ୍ୟ, ପ୍ରଥମେ ସେ ପ୍ରଧାନ ହୋମ କରିବେ । ପୂର୍ବୋକ୍ତ ପ୍ରକାରରେ ଘୃତ ଉଷ୍ମ କରି ଏବଂ ଶାକଲ୍ୟ ପ୍ରସ୍ତୁତ କରି ରଖିବେ । ସେଥିରୁ ପ୍ରଥମେ ଏକ ସ୍ରୁଚ ଘୃତପୂର୍ଣ୍ଣ କରି ନିମ୍ନୋକ୍ତ ମନ୍ତ୍ରରେ ଗୋଟିଏ ଆହୁତି ଦେବେ—

# ଓଁ ପ୍ରଜାପତୟେ ସ୍ୱାହା

ତାପରେ ଯେଉଁ ତିଥିରେ ଏବଂ ଯେଉଁ ନକ୍ଷତ୍ରରେ ସନ୍ତାନଙ୍କ ଜନ୍ମ ହୋଇଛି, ସେହି ତିଥି ଓ ସେହି ନକ୍ଷତ୍ରର ନାମଧରି ସେହିତିଥି ଦେବତାଙ୍କ ନାମରେ ୪ (ଚାରିଟି) ଆହୁତି ଦେବାକୁ ହେବ, ଅର୍ଥାତ୍ ପ୍ରଥମ—ତିଥି ନାମରେ, ଦ୍ୱିତୀୟ—ତିଥିର ଦେବତାଙ୍କ ନାମରେ, ତୃତୀୟ ନକ୍ଷତ୍ରର ନାମରେ ଓ ଚତୁର୍ଥ—ନକ୍ଷତ୍ରର ଦେବତାଙ୍କ ନାମରେ ଆହୁତି ପ୍ରଦାନ କରିବ। ତିଥି, ନକ୍ଷତ୍ର ଓ ତାହାର ଦେବତାଙ୍କ ନାମର ଶେଷରେ ଚତୁର୍ଥୀ ବିଭକ୍ତିର ରୂପ ଏବଂ ଶେଷରେ "ସ୍ୱାହା" ଯୋଗ କରି ୪ (ଚାରିଟି) ଘୃତାହୁତି ପ୍ରଦାନ କରିବେ।

ଉଦାହରଣ ସ୍ୱରୂପ—କାହାର ଜନ୍ମ ପ୍ରତିପଦାରେ ଓ ଅଶ୍ୱିନୀ ନକ୍ଷତ୍ରରେ ହୋଇଛି। ଏ ସ୍ଥଳେ—

**ଓଁ ପ୍ରତିପଦେ ସ୍ୱାହା। ଓଁ ବ୍ରହ୍ମଣେ ସ୍ୱାହା।**
**ଓଁ ଅଶ୍ୱିନ୍ୟୈ ସ୍ୱାହା। ଓଁ ଅଶ୍ୱିଭ୍ୟାଂ ସ୍ୱାହା। ***

(ଗୋଭି: ଗୃ ୨।୮।୦ ଟୀକ୍ ୭।୧୬)

ତାପରେ ପୃଷ୍ଠାରେ ଲିଖିତ "ସ୍ୱିଷ୍ଟକୃତ୍" ମନ୍ତ୍ରରେ ଗୋଟିଏ ଆହୁତି ଓ ପୃଷ୍ଠାରେ ଲିଖିତ ବିଧିରେ ୪ (ଚାରିଟି) ବ୍ୟାହୃତି ଆହୁତି, ଉଭୟ ମିଶି ୫ଟି ଆହୁତି ପ୍ରଦାନ କରିବ।

---

* ତିଥି ଦେବତା—୧-ବ୍ରହ୍ମନ୍। ୨-ତ୍ୱଷ୍ଟା। ୩-ବିଷ୍ଣୁ। ୪-ଯମ। ୫-ସୋମ। ୬-କୁମାର। ୭-ମୁନି। ୮-ବସୁ। ୯-ଶିବ। ୧୦-ଧର୍ମ୍ମ। ୧୧-ରୁଦ୍ର। ୧୨-ବାୟୁ। ୧୩-କାମ। ୧୪-ଅନନ୍ତ। ୧୫-ବିଶ୍ୱେ-ଦେବ। ୩୦-ପିତର।

ତାପରେ ମାତା ସନ୍ତାନଙ୍କୁ ନେଇ ଶୁଭସ୍ଥାନରେ ଉପବେଶନ କରିବେ ଏବଂ ପିତା ସନ୍ତାନର ନାସାରନ୍ଧ୍ରର ବହିର୍ଗାମୀ ବାୟୁ ସ୍ପର୍ଶ କରି ନିମ୍ନଲିଖିତ ମନ୍ତ୍ର ବୋଲିବେ—

**ଓଁ କୋଽସି କତମୋଽସି କସ୍ୟାସି କୋ ନାମାସି । ଯସ୍ୟ ତେ ନାମାମନ୍ମହି ଯଂ ତ୍ୱା ସୋମେନାତୀତୃପାମ । ଭୂର୍ଭୁବଃ ସ୍ୱଃ ସୁପ୍ରଜାଃ ପ୍ରଜାଭିଃ ସ୍ୟାଗ୍ଁ ସୁବୀରୋ ବୀରୈଃ ସୁପୋଷଃ ପୁଷୈଃ ॥** (ଯଜୁ ଅ ୭। ମ ୨୮)

**ଓଁ କୋଽସି କତମୋଽସ୍ୟେଷୋଽସ୍ୟମୃତୋଽସି । ଆହସ୍ପତ୍ୟ ମାସଂ ପ୍ରବିଶାସୌ ॥**

(ମଂ ବ୍ରା ୧।୫।୧୪ ॥ ଗୋ: ୨।୮।୧୬)

ଏଇ ଯେଉଁ "ଅସୌ" ପଦରହିଛି, ଏହାର ସ୍ଥାନରେ ସନ୍ତାନର ନିର୍ଦ୍ଧାରିତ ନାମ ରଖିବ ଅର୍ଥାତ୍ ପୁତ୍ର ହେଲେ ନାମ ମଧ୍ୟରେ ନିମ୍ନଲିଖିତ ବିଧିରେ ଦୁଇ ଅକ୍ଷରର ବା ଚାରିଅକ୍ଷରର, ଘୋଷସଞ୍ଜ୍ଞକ ଓ ଅନ୍ତଃସ୍ଥ ବର୍ଣ୍ଣ ଅର୍ଥାତ୍ ପାଞ୍ଚବର୍ଗର ପ୍ରଥମ ଦୁଇ ଅକ୍ଷର ବାଦଦେଇ ତୃତୀୟ, ଚତୁର୍ଥ, ପଞ୍ଚମ ଅକ୍ଷର ଏବଂ ଯ, ର, ଲ, ବ, ଏଇ ଚାରିବର୍ଣ୍ଣ ନାମରେ ଅବଶ୍ୟ ଆସିବ ❊ ।

---

ନକ୍ଷତ୍ର ଦେବତା— ୧-ଅଶ୍ୱିନୀ-ଅଶ୍ୱୀ । ୨ ଭରଣୀ-ଯମ । ୩ କୃତ୍ତିକା-ଅଗ୍ନି । ୪ ରୋହିଣୀ-ପ୍ରଜାପତି । ୫ ମାର୍ଗଶୀର୍ଷ-ସୋମ । ୬ ଆର୍ଦ୍ରା-ରୁଦ୍ର । ୭ ପୁନର୍ବସୁ-ଅଦିତି । ୮ ପୁଷ୍ୟା-ବୃହସ୍ପତି । ୯ ଅଶ୍ଳେଷା-ସର୍ପ ୧୦ ମଘା-ପିତୃ । ୧୧ ପୂର୍ବାଫାଲ୍‌ଗୁନୀ-ଭଗ । ୧୨ ଉତ୍ତରାଫାଲ୍‌ଗୁନୀ -ଅର୍ଯ୍ୟମନ୍ । ହସ୍ତା-ସବିତୃ । ୧୪ ଚିତ୍ରା-ତ୍ୱଷ୍ଟୃ । ୧୫ ସ୍ୱାତି-ବାୟୁ । ୧୬ ବିଶାଖା-ଇନ୍ଦ୍ରାଗ୍ନୀ । ୧୭ ଅନୁରାଧା-ମିତ୍ର । ୧୮ ଜ୍ୟେଷ୍ଠା-ଇନ୍ଦ୍ର ।

୧୯ ମୂଳା-ନିଋତି । ୨୦ ପୂର୍ବାଷାଢ଼ା-ଅପ୍ । ୨୧ ଉତ୍ତରାଷାଢ଼ା-ବିଶ୍ବେ-ଦେବ । ୨୨ ଶ୍ରବଣା-ବିଷ୍ଣୁ । ୨୩ ଧନିଷ୍ଠା-ବସୁ । ୨୪ ଶତଭିଷକ୍-ବରୁଣ । ୨୫ ପୂର୍ବାଭାଦ୍ରପଦ-ଅଜପାଦ୍ । ୨୬ ଉତ୍ତରଭାଦ୍ରପଦ-ଅହିର୍ବୁଧ୍ନ୍ୟ । ୨୭ ରେବତୀ- ପୂଷନ୍ ।

* ଘ, ଢ, ଙ, ଜ, ଟ, ଞ, ଡ଼, ଢ଼, ଣ, ଦ, ଧ, ନ, ବ, ଭ, ମ—ଏମାନେ ଘୋଷ ଏବଂ ଯ, ର, ଲ, ବ, ଏହି ଚାରିଟି ଅନ୍ତଃସ୍ଥ ଓ ହ ଏକ ଉଷ୍ମା ଏଇ ଅକ୍ଷର ନାମରେ ରହିଥିବା ଦରକାର ଏବଂ ସ୍ୱର ବର୍ଣ୍ଣର ମଧ୍ୟରେ ଯେ କୌଣସି ସ୍ୱର ଥିବ, ଯଥା – ଭଦ୍ରସେନଃ, ଦେବଦତ୍ତଃ, ଭବଃ, ଭବନାଥଃ, ନାଗଦେବଃ, ରୁଦ୍ରଦତ୍ତଃ, ହରିଦେବଃ ଇତ୍ୟାଦି । ପୁରୁଷମାନଙ୍କର ନାମ ଯୁଗ୍ମାକ୍ଷରରେ ଓ ସ୍ତ୍ରୀମାନଙ୍କର ନାମ ଅଯୁଗ୍ମାକ୍ଷରରେ ରଖିବ । ଶେଷରେ ଦୀର୍ଘସ୍ୱର ଏବଂ ତଦ୍ଧିତାନ୍ତ ନାମ ହେବ, ଯେପରି ଶ୍ରୀଃ, ହ୍ରୀଃ, ଯଶୋଦା, ସୁଖଦା, ଗାନ୍ଧାରୀ, ସୌଭାଗ୍ୟବତୀ, କଲ୍ୟାଣକୋଡ଼ା ଇତ୍ୟାଦି । କିନ୍ତୁ କନ୍ୟାମାନଙ୍କର ଅନ୍ୟୋକ୍ତ ପ୍ରକାର ନାମ କେବେ ରଖିବ ନାହିଁ, ଏ ବିଷୟରେ ପ୍ରମାଣ-

ଯଥା ଦେବ ବା ଜୟଦେବ, ବ୍ରାହ୍ମଣ ହେଲେ ଦେବଶର୍ମା, କ୍ଷତ୍ରିୟ ହେଲେ ଦେବବର୍ମା, ବୈଶ୍ୟ ହେଲେ ଦେବଗୁପ୍ତ ଏବଂ ଶୂଦ୍ର ହେଲେ ଦେବଦାସ ଇତ୍ୟାଦି ଏବଂ କନ୍ୟା ହେଲେ ଏକ, ତିନି ବା ପାଞ୍ଚ ଅକ୍ଷରରେ ନାମ ରଖିବ— ଯଥା, ଶ୍ରୀ, ହ୍ରୀ, ଯଶୋଦା, ସୁଖଦା, ସୌଭାଗ୍ୟପ୍ରଦା ଇତ୍ୟାଦି ପ୍ରଥମେ ନାମ ସ୍ଥିର କରି ତାପରେ 'ଅସୌ' ପଦର ସ୍ଥାନରେ ସନ୍ତାନର ଧାର୍ଯ୍ୟ ନାମ ଉଚ୍ଚାରଣ କରି ପୁନର୍ବାର ଉପରଲିଖିତ "କୋଽସି" ଇତ୍ୟାଦି ମନ୍ତ୍ର ବୋଲିବ ।

ଜାତକର୍ମ (ସଂସ୍କାରରେ) ଯେପରି ଲିଖିତ ହୋଇଛି, ସେହି ଭାବରେ ନିମ୍ନୋକ୍ତ ମନ୍ତ୍ରରେ ବାଳକକୁ ଆଶୀର୍ବାଦ ପ୍ରଦାନ କରିବେ—

ଓଁ ସ ତ୍ୱାହ୍ନେ ପରିଦଦାତ୍ୱହସ୍ତ୍ୱା ରାତ୍ର୍ୟୈ ପରିଦଦାତୁ ରାତ୍ରିସ୍ତ୍ୱାହୋରାତ୍ରାଭ୍ୟାଂ ପରିଦଦାତ୍ୱହୋରାତ୍ରୌ ତ୍ୱାର୍ଦ୍ଧମାସେଭ୍ୟଃ ପରିଦତ୍ତାମର୍ଦ୍ଧମାସାସ୍ତ୍ୱା ମାସେଭ୍ୟଃ ପରିଦଦତୁ ମାସାସ୍ତ୍ୱର୍ତୁଭ୍ୟଃ ପରିଦଦତ୍ୱୃତବସ୍ତ୍ୱା ସଂବତ୍ସରାୟ ପରିଦଦତୁ ସଂବତ୍ସରସ୍ତ୍ୱାୟୁଷେ ଜରାୟୈ ପରିଦଦାତୁ, ଅସୌ ॥

(ସଂ ବ୍ରା ୧।୫।୧୫ ଗୋ ୨।୮।୧୪)

ଏଇ ବିଧି ଅନୁସାରେ ସନ୍ତାନର ନାମ ରଖି ସଂସ୍କାରରେ ସମାଗତ ବ୍ୟକ୍ତିମାନଙ୍କୁ ସେଇ ନାମ ଶ୍ରବଣ କରାଇ ପୃଷ୍ଠାରେ ଲିଖିତ ବିଧିରେ ମହାବାମଦେବ୍ୟଗାନ କରିବ । ତାପରେ ସମାଗତ ବ୍ୟକ୍ତିଙ୍କୁ ସମ୍ମାନାଦି କରି ବିଦାୟଦାନ କରିବେ ଏବଂ ସମସ୍ତେ ଯିବା ସମୟରେ ପୃଷ୍ଠାରୁ ପୃଷ୍ଠାପର୍ଯ୍ୟନ୍ତ ଲିଖିତ ବିଧିରେ ପରମେଶ୍ୱର ସ୍ତୁତି, ପ୍ରାର୍ଥନା ଓ ଉପାସନା କରି ବାଳକକୁ ନିମ୍ନମତେ ଆଶୀର୍ବାଦ ପ୍ରଦାନ କରିବେ –

ହେ ବାଳକ !

ତ୍ୱମାୟୁଷ୍ମାନ୍ ବର୍ଚସ୍ୱୀ ତେଜସ୍ୱୀ ଶ୍ରୀମାନ୍ ଭୂୟାଃ ॥

ହେ ବାଳକ ! ତୁମେ ଆୟୁଷ୍ମାନ୍, ବିଦ୍ୱାନ୍, ଧର୍ମାତ୍ମା, ଯଶସ୍ୱୀ, ପୁରୁଷାର୍ଥୀ, ପ୍ରତାପୀ, ପରୋପକାରୀ ଓ ଶ୍ରୀମାନ୍ ହୁଅ ।

ଇତି ନାମକରଣ ସଂସ୍କାରବିଧିଃ ସମାପ୍ତଃ ।

---

"ନକ୍ଷବୃକ୍ଷ ନଦୀନାମ୍ନୀଂ ନାନ୍ତ୍ୟପର୍ବତନାମିକାମ୍ ।
ନ ପକ୍ଷ୍ୟହିପ୍ରେଷ୍ୟନାମ୍ନୀଂ ନ ଚ ଭୀଷଣନାମିକାମ୍ ॥"

(ମନୁସ୍ମୃତି ୩।୯)

(ରକ୍ଷ) ରୋହିଣୀ, ରେବତୀ ଇତ୍ୟାଦି (ବୃକ୍ଷ) ଚମ୍ପା ତୁଳସୀ ଇତ୍ୟାଦି (ନଦୀ) ଗଙ୍ଗା, ଯମୁନା, ସରସ୍ୱତୀ ଇତ୍ୟାଦି (ଅନ୍ତ୍ୟ) ଚଣ୍ଡାଳୀ ଇତ୍ୟାଦି (ପର୍ବତ) ବିନ୍ଧ୍ୟାଚଳା,ହିମାଚଳା ଇତ୍ୟାଦି (ପକ୍ଷୀ) କୋକିଳା ହଂସା ଇତ୍ୟାଦି (ଅହି) ସର୍ପିଣୀ, ନାଗୀ ଇତ୍ୟାଦି (ପ୍ରେଷ୍ୟ) ଦାସୀ, କିଂକରୀ ଇତ୍ୟାଦି (ଭୟଂକର) ଖିମା, ଭୟଙ୍କରୀ ଚଣ୍ଡିକା ଇତ୍ୟାଦି ନାମ ନିଷିଦ୍ଧ ଅଟେ ॥ ଦ: ସ:

—ଃOଃ—

# ଅଥ ନିଷ୍କ୍ରମଣସଂସ୍କାରବିଧିଂ ବକ୍ଷ୍ୟାମଃ

ଗୃହ ବାହାରର ଯେଉଁ ସ୍ଥାନରେ ବାୟୁ ଶୁଦ୍ଧ, ସେଇ ସ୍ଥାନରେ ସନ୍ତାନକୁ ଭ୍ରମଣ କରାଇବାକୁ ହୁଏ--ଏହାହିଁ ନିଷ୍କ୍ରମଣ ସଂସ୍କାର । ଯେଉଁ ସମୟରେ ଉତ୍ତମ ବା ଭଲ ମନେ କରିବେ, ସେଇ ସମୟରେ ସନ୍ତାନକୁ ନେଇ ବାହାରର ଭ୍ରମଣ କରାଇବ । ନିଶ୍ଚିତ ଚତୁର୍ଥ ମାସରେ ଅବଶ୍ୟ ଭ୍ରମଣ କରାଇବ । ଏ ବିଷୟରେ ପ୍ରମାଣ—

**ଚତୁର୍ଥେ ମାସି ନିଷ୍କ୍ରମଣିକା ସୂର୍ଯ୍ୟମୁଦୀକ୍ଷୟତି ତଚ୍ଚକ୍ଷୁରିତି**

ଏହା ପାରସ୍କର ଗୃହ୍ୟସୂତ୍ରର (୧।୧୭।୫,୬) ବଚନ ।

**ଜନନାଦ୍ୟସ୍ତୃତୀୟୋ ଜ୍ୟୌତ୍ସ୍ନସ୍ତସ୍ୟ ତୃତୀୟାୟାମ୍ ।**

ଏହା ଗୋଭିଲ ଗୃହ୍ୟସୂତ୍ରରେ ମଧ୍ୟ (୨।

ଅର୍ଥ —ନିଷ୍କ୍ରମଣ ସଂସ୍କାର କାଳର ଦୁଇଟି ଭେଦ ଅଛି । (୧) ଗୋଟିଏ ହେଉଛି ବାଳକ ଜନ୍ମହେବାପରେ ତୃତୀୟ ଶୁକ୍ଳପକ୍ଷ ତୃତୀୟା ଏବଂ (୨) ଅନ୍ୟଟି ହେଉଛି ଚତୁର୍ଥମାସରେ ଯେଉଁ ତିଥିରେ ବାଳକର ଜନ୍ମହୋଇଥିବ, ସେଇ ତିଥିରେ ଏହି ସଂସ୍କାର କରାଯିବ ।

ସେଇ ସଂସ୍କାରର ଦିନ ପ୍ରାତଃକାଳରେ ସୂର୍ଯ୍ୟୋଦୟ ପରେ ସନ୍ତାନକୁ ଶୁଦ୍ଧଜଳରେ ସ୍ନାନ କରାଇବ । ଶୁଦ୍ଧ ଓ ସୁନ୍ଦର ବସ୍ତ୍ର ପିନ୍ଧାଇବ । ତାପରେ ସନ୍ତାନର ମାତା ତାହାକୁ ଯଜ୍ଞଶାଳାକୁ ଆଣିବେ । ପତିଙ୍କର ଦକ୍ଷିଣପାର୍ଶ୍ୱ ଦେଇ ସମ୍ମୁଖକୁ ଆସିବେ । ସନ୍ତାନର ମସ୍ତକ ଉତ୍ତରଦିଗକୁ ରଖି ଓ ବକ୍ଷ ଉପରଆଡ଼କୁ ରଖି ଅର୍ଥାତ୍ ଚିତ୍‌କରି ରଖି ପତିଙ୍କର ହସ୍ତରେ ସନ୍ତାନକୁ ପ୍ରଦାନ କରିବେ । ତାପରେ ମାତା ପତିର ପଶ୍ଚାତ୍‌ଭାଗ ଦେଇ ବାମପାର୍ଶ୍ୱରେ ଯାଇ ପୂର୍ବାଭିମୁଖୀ ହୋଇ

ଉପବେଶନ କରିବେ । (ସନ୍ତାନର ପିତା ନିମ୍ନୋକ୍ତ ତିନି ମନ୍ତ୍ରରେ ପରମେଶ୍ବରଙ୍କ ଆରାଧନା କରିବେ ।

**ଓଁ ଯତ୍ତେ ସୁଶୀମେ ହୃଦୟଁ ହିତମନ୍ତଃ ପ୍ରଜାପତୌ ।**
**ବେଦାହଂ ମନ୍ୟେ ତଦ୍ ବ୍ରହ୍ମ**
**ମାହଂ ପୌତ୍ରମଘଂ ନିଗାମ୍ ॥୧॥**
**ଓଁ ଯତ୍ ପୃଥିବ୍ୟା ଅନାମୃତଂ ଦିବି ଚନ୍ଦ୍ରମସି ଶ୍ରିତମ୍ ।**
**ବେଦାମୃତସ୍ୟାହଂ ନାମ ମାହଂ ପୌତ୍ରମଘଁ ରିଷମ୍ ॥୨॥**
**ଓଁ ଇନ୍ଦ୍ରାଗ୍ନୀ ଶର୍ମ ଯଚ୍ଛତଂ ପ୍ରଜାୟୈ ମେ ପ୍ରଜାପତୀ ।**
**ଯଥାୟଂ ନ ପ୍ରମୀୟେତ ପୁତ୍ରୋ ଜନିତ୍ର୍ୟା ଅଧି ॥ ୩ ॥**
(ମ: ବ୍ରା: ୧।୫।୧୦—୧୨ । ଗୋ: ଗୃ: ସୂ: ୨।୮।୧୫)

ତତ୍ପରେ ୬୬ ପୃଷ୍ଠାପର୍ଯ୍ୟନ୍ତ ଲିଖିତ ବିଧି ଅନୁସାରେ ପରମେଶ୍ବରଙ୍କର (୧) ଉପାସନା (୨) ସ୍ବସ୍ତିବାଚନ (୩) ଶାନ୍ତି-ପ୍ରକରଣାଦି (୪) ସାମାନ୍ୟ ପ୍ରକରଣୋକ୍ତ ସମସ୍ତ ବିଧି କରିବେ ଏବଂ ସନ୍ତାନକୁ ଅବଲୋକନ କରି ତାର ମସ୍ତକ ସ୍ପର୍ଶ (ଆଘ୍ରାଣ) କରି ନିମ୍ନୋକ୍ତ ମନ୍ତ୍ର ପାଠ କରିବେ—

**ଓଁ ଅଙ୍ଗାଦଙ୍ଗାତ୍ ସମ୍ଭବସି ହୃଦୟାଦଧିଜାୟସେ ।**
**ଆତ୍ମା ବୈ ପୁତ୍ର ନାମାସି ସ ଜୀବ ଶରଦଃ ଶତମ୍ ॥ ୧ ॥**
**ଓଁ ପ୍ରଜାପତେଷ୍ଟ୍ବା । ହିଙ୍କାରେଣାବଜିଘ୍ରାମି ।**
**ସହସ୍ରାୟୁଷାଽସୌ ଜୀବ ଶରଦଃ ଶତମ୍ ॥ ୨ ॥**
**ଗବାଂ ତ୍ବା ହିଙ୍କାରେଣ ବଜିଘ୍ରାମି ।**
**ସହସ୍ରାୟୁଷାଽସୌ ଜୀବ ଶରଦଃ ଶତମ୍ ॥ ୩ ॥**
(ପାର: ୧।୧୮।୨-୪)

ତାପରେ ନିମ୍ନଲିଖିତ ମନ୍ତ୍ର ବାଳକର କର୍ଣ୍ଣରେ ଜପ କରାଇବେ

**ଓଁ ଅଗ୍ନେ ପ୍ରସୂଭି ମଘବନ୍ କୀରିନ୍ଦ୍ର ବସ୍ବୋ ବସ୍ବୋ ବସ୍ୱ-ବାହସ୍ୟ ଭୂରେଃ । ଅଗ୍ନେ ଶତଂ ଶରଦୋ ଜୀବସେ ଧା ଅଗ୍ନେ ବୀରଶ୍ଚୈଶ୍ୱତ ଇନ୍ଦ୍ର ଶପ୍ରିନ୍ ॥ ୧ ॥**

(ଋ ୩।୩୬।୧୦)

ଏବଂ ନିମ୍ନୋକ୍ତ ମନ୍ତ୍ର ବାଳକର ବାମକର୍ଣ୍ଣରେ ଜପକରିବ—

**ଓଁ ଇନ୍ଦ୍ର ଶ୍ରେଷ୍ଠାନି ଦ୍ରବିଣାନି ଧେହି ଚିତ୍ତିଂ ଦକ୍ଷସ୍ୟ ସୁଭଗତ୍ୱମସ୍ମେ । ପୋଷଂରୟୀଣାମରିଷ୍ଟିଂ ତନୂନାଂ ସ୍ୱାଦ୍ମାନଂ ବାଚଃ ସୁଦିନତ୍ୱ ମହ୍ନାମ୍ ॥ ୨ ॥**

(ଆଶ୍ୱ: ୧।୧୫।୩ ; ଋ ୨।୨୧।୬ ; ପାର: ୧।୧୮।୬)

ତତ୍ପରେ ପିତା ସନ୍ତାନର ଶିରୋଦେଶ ଉତ୍ତରଦିଗକୁ ଏବଂ ପାଦଦେଶ ଦକ୍ଷିଣ ଦିଗରେ ରଖି ତାହାଙ୍କୁ ପତ୍ନୀର କୋଳରେ ପ୍ରଦାନ କରିବେ । ତାପରେ ଆନନ୍ଦରେ ଉଠି ବାଳକକୁ ସୂର୍ଯ୍ୟଦର୍ଶନ କରାଇବେ ଏବଂ ସେଠାରେ ହିଁ ନିମ୍ନଲିଖିତ ମନ୍ତ୍ର ପାଠ କରିବେ —

**ଓଁ ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ ।
ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତମ୍ ॥
ଶୃଣୁୟାମ ଶରଦଃ ଶତଂ ପ୍ରବ୍ରବାମ ଶରଦଃ ଶତମଦୀନାଃ
ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ॥ ୧ ॥**

(ଯଜୁ ୩୬।୨୪ ॥ ପାର ୧।୧୬।୬)

ତତ୍ପରେ ସନ୍ତାନର ମାତା ପିତା ସଂସ୍କାରରେ ସମ୍ମିଳିତ ସମସ୍ତ ଆଗତ ସ୍ତ୍ରୀ ପୁରୁଷମାନଙ୍କୁ ଯଥାଯୋଗ୍ୟ ଆଦର ସମ୍ମାନ କରି ବିଦାୟ ଦାନ କରିବେ —

ତତ୍ପରେ ରାତ୍ରିକାଳରେ ଚନ୍ଦ୍ରମା ଉଦିତ ହେଲେ ସନ୍ତାନର ମାତା ସନ୍ତାନକୁ ଶୁଦ୍ଧ ବସ୍ତ୍ର ପରିଧାନ କରାଇ ପତିର ଦକ୍ଷିଣଦିଗ ଦେଇ ସମ୍ମୁଖକୁ ଆସି ସନ୍ତାନର ମସ୍ତକ ଉତ୍ତର ଦିଗରେ ଓ ପଦଦେଶ ଦକ୍ଷିଣ ଦିଗରେ ରଖି ସନ୍ତାନକୁ ପିତାଙ୍କ ହସ୍ତରେ ପ୍ରଦାନ କରିବେ । ସନ୍ତାନର ମାତା ଦକ୍ଷିଣଦିଗରୁ ବାମଦିଗକୁ ପ୍ରତ୍ୟାବର୍ତ୍ତନ କରି ଅଞ୍ଜଳି ପୂର୍ଣ୍ଣ ଜଳ ନେଇ ଚନ୍ଦ୍ରମାଙ୍କର ସମ୍ମୁଖରେ ଦଣ୍ଡାୟମାନ ହେବେ ଏବଂ ନିମ୍ନୋକ୍ତ ମନ୍ତ୍ରରେ ପରମାତ୍ମାଙ୍କର ସ୍ତୁତିକରି ସେଇ ଜଳ ପୃଥିବୀ ଉପରେ ନିକ୍ଷେପ କରିବେ —

**ଓଁ ଯଦଦଶ୍ଚନ୍ଦ୍ରମସି କୃଷ୍ଣଂ ପୃଥିବ୍ୟା ହୃଦୟଂ ଶ୍ରିତମ୍ ।**
**ତଦହଂ ବିଦ୍ୱାଁସ୍ତତ୍ ପଶ୍ୟନ୍ ମାହଂ ପୌତ୍ରମଘଁ ରୁଦମ୍ ।**

(ମଂ ବ୍ରା ୧।୫।୧୩ · ଗୋଭି: ୨।୮।୭,୭)

ତତ୍ପରେ ସନ୍ତାନର ମାତା ପୁନର୍ବାର ପତିର ପଶ୍ଚାତ୍ ଦିଗ ଦେଇ ଦକ୍ଷିଣ ପାର୍ଶ୍ୱେ ସମ୍ମୁଖରେ ଆଗମନ ପୂର୍ବକ ପତିଙ୍କ ନିକଟରୁ ସନ୍ତାନକୁ ଗ୍ରହଣ କରିବେ ଏବଂ ପୁନରପି ପଶ୍ଚାଦ୍ଦିଗ ଦେଇ ବାମପାର୍ଶ୍ୱେ ପ୍ରତ୍ୟାଗମନପୂର୍ବକ ସନ୍ତାନର ଶିରୋଦେଶ ଉତ୍ତରଦିଗରେ ଏବଂ ପଦଦେଶ ଦକ୍ଷିଣ ଦିଗରେ ରଖି ଦଣ୍ଡାୟମାନ ଥିବେ । ସନ୍ତାନର ପିତା ଅଞ୍ଜଳୀପୂର୍ଣ୍ଣ ଜଳ ନେଇ ଉପରୋକ୍ତ "ଓଁ ଯଦଦଶ୍ଚ" ମନ୍ତ୍ରରେ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରି ସେଇ ଜଳ ପୃଥିବୀ ଉପରେ ନିକ୍ଷେପ କରିବେ । ତତ୍ପରେ ଉଭୟେ ଗୃହକୁ ପ୍ରତ୍ୟାବର୍ତ୍ତନକରିବେ ।

ଇତି ନିଷ୍କ୍ରମଣସଂସ୍କାରବିଧିଃ ସମାପ୍ତଃ ।

# ଅଥାନ୍ନପ୍ରାଶନବିଧି ବ୍ୟାଖ୍ୟାନଃ

ଯେତେବେଳେ ଶିଶୁର ଅନ୍ନପରିପାକ କରିବାର ଉପଯୁକ୍ତ ଶକ୍ତି ଆସିବ, ସେତେବେଳେ ଅନ୍ନପ୍ରାଶନ ସଂସ୍କାର କରିବ । ଏ ବିଷୟରେ ଆଶ୍ୱଳାୟନ ଗୃହ୍ୟସୂତ୍ର (୧।୧୬।୧—୩) ବିଧାନ ଏହିପରି—

**ଷଷ୍ଠେ ମାସ୍ୟନ୍ନପ୍ରାଶନମ୍ ॥ ୧ ॥ ଘୃତୌଦନଂ ତେଜସ୍କାମଃ ॥ ୨ ॥ ଦଧିମଧୁଘୃତମିଶ୍ରିତମନ୍ନଂ ପ୍ରାଶୟେତ୍ ॥ ୩ ॥**

ଏହିପରି ପାରସ୍କରଗୃହ୍ୟସୂତ୍ରାଦିରେ ମଧ୍ୟ ଅଛି ।

ଷଷ୍ଠ ମାସରେ ଶିଶୁର ଅନ୍ନପ୍ରାଶନ କରାଇବ । ଶିଶୁକୁ ତେଜସ୍ୱୀ କରିବାକୁ ଚାହିଁଲେ ଅନ୍ନ ସହିତ ଘୃତ ମିଶ୍ରିତକରି ଅଥବା ଅନ୍ନ ସହିତ ଦଧି, ମଧୁ ଓ ଘୃତ—ଏଇ ତିନୋଟି ଦ୍ରବ୍ୟ ମିଶ୍ରିତ କରି ନିମ୍ନଲିଖିତ ବିଧି ଅନୁସାରେ ଅନ୍ନପ୍ରାଶନ କରାଇବ । ପୂର୍ବୋକ୍ତ ପୃଷ୍ଠାରୁ ପର୍ଯ୍ୟନ୍ତ ବିଧି ସମ୍ପୂର୍ଣ୍ଣ କରି ଶିଶୁର ଜନ୍ମଦିବସରେ ଏଇ ସସ୍କାର କରିବ — ନିମ୍ନଲିଖିତ ବିଧି ଅନୁସାରେ ଅନ୍ନ ପ୍ରସ୍ତୁତ କରିବେ—

**ଓଁ ପ୍ରାଣାୟ ତ୍ୱା ଜୁଷ୍ଟଂ ପ୍ରୋକ୍ଷାମି । ଓଁ ଅପାନାୟ ତ୍ୱାଂ ଜୁଷ୍ଟଂ ପ୍ରୋକ୍ଷାମି । ଓଁ ଚକ୍ଷୁଷେ ତ୍ୱା ଜୁଷ୍ଟଂ ପ୍ରୋକ୍ଷାମି । ଓଁ ଶ୍ରୋତ୍ରାୟ ତ୍ୱା ଜୁଷ୍ଟଂ ପ୍ରୋକ୍ଷାମି । ଓଁ ଅଗ୍ନୟେ ସ୍ୱିଷ୍ଟକୃତେ ତ୍ୱା ଜୁଷ୍ଟଂ ପ୍ରୋକ୍ଷାମି ।**

ଏଇ ପାଞ୍ଚଟି ମନ୍ତ୍ରର ଅଭିପ୍ରାୟ ହେଉଛି—ବିଶୁଦ୍ଧ ଜଳରେ ତଣ୍ଡୁଳ ଧୌତକରି ତାହା ଉତ୍ତମରୂପେ ପାକ କରିବ । ତଣ୍ଡୁଳ ସିଦ୍ଧହେବାବେଳେ ଯଥାଯୋଗ୍ୟ ଘୃତ ମଧ୍ୟ ପକାଇବ (ଉପଯୁକ୍ତ



ପରିମାଣରେ ) ଉତ୍ତମରୂପେ ସିଦ୍ଧ ହେଲେ ତାହା ଓହ୍ଲାଇ ଆଣିବ । ତିନିଏ ଅଣ୍ଡାହେଲେ ତାହା ହୋମଥାଳୀରେ ରଖିବ । ତତ୍ପରେ—

**ଓମ୍ ପ୍ରାଣାୟ ତ୍ୱା ଜୁଷ୍ଟଂ ନିର୍ବପାମି ।**

**ଓମ୍ ଅପାନାୟ ତ୍ୱା ,, ,, ।**
**ଓଁ ଚକ୍ଷୁଷେ ତ୍ୱା ,, ,, ।**
**ଓମ୍ ଶ୍ରୋତ୍ରାୟ ତ୍ୱା । ,, ,, ।**
**ଓଁ ଅଗ୍ନୟେ ସ୍ୱିଷ୍ଟକୃତେ ତ୍ୱା ,, ,, । ।।୪।।**

ଏଇ ପାଞ୍ଚଟି ମନ୍ତ୍ର ଉଚ୍ଚାରଣ କରି କର୍ମକର୍ତ୍ତା, ଯଜମାନ, ପୁରୋହିତ ଓ ଋତ୍ୱିଗ୍‌ଗଣଙ୍କର ପାତ୍ରରେ ସେହି ଘୃତାନ୍ନ ପୃଥକ୍ ଭାବରେ ରଖିବ । ତତ୍ପରେ ୨୮ପୃଷ୍ଠାରୁ ୩୨ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ବିଧି, ଅନୁସାରେ ଅଗ୍ନ୍ୟାଧାନ ଓ ସମି-ଧାଦାନାଦି କରି ପ୍ରଥମେ ଆଘାରାବାଜ୍ୟଭାଗାହୁତି ୪ ( ଚାରି ) ଏବଂ ବ୍ୟାହୃତି ଆହୁତି ୪ ( ଚାରି ) — ସବୁସମେତ ୮ ( ଆଠଟି ) ଘୃତାହୁତି ପ୍ରଦାନ କରିବ । ତାପରେ ସେଇ ପକ୍ୱାନ୍ନଦ୍ୱାରା ନିମ୍ନଲିଖିତ ମନ୍ତ୍ରରେ ଆହୁତି ଦାନ କରିବ—

**ଓମ୍ ଦେବୀଂ ବାଚମଜନୟନ୍ତ**
**ଦେବାସ୍ତାଂ ବିଶ୍ୱରୂପାଃ**
**ପଶବୋ ବଦନ୍ତି । ସା ନୋ ମନ୍ଦ୍ରେଷମୂର୍ଜଂ ଦୁହାନା**

ଧେନୁର୍ବାଗସ୍ମାନୁପ ସୁଷ୍ଟୁଟୈତୁ ସ୍ୱାହା ।
ଇଦଂ ବାଚେ-ଇଦନ୍ନ ମମ ॥୧॥ ଋ ୮।୧୦୦।୧୧
ବାଚଂ ନୋଽଅଦ୍ୟ ପ୍ର ସୁବାତ୍ତ ଦାନଂ
ବାଜୋ ଦେବାଽଋତୁଭିଃ କଳ୍ପୟାତି
ବାଜୋ ହି ମା ସର୍ବବୀରଂ
ଜଜାନ ବିଶ୍ୱାଽଆଶା
ବାଜପତିର୍ଜୟେୟଁ ସ୍ୱାହା ।
ଇଦଂ ବାଚେ ବାଜାୟ ଇଦନ୍ନମମ ।

ଯଜୁ-ଅ-୧୮ମ: ୩୩
ପା:ଗୃ: ୧।୧୯।୩୧

ତାପରେ ସେହିଅନ୍ନରେ ଆଉ ଘୃତ ମିଶ୍ରିତ କରି ନିମ୍ନଲିଖିତ ମନ୍ତ୍ରରେ ଛଅଟି ଆହୁତି ଦାନ କରିବ—

ଓ୩ମ୍ ପ୍ରାଣେନାନ୍ନମଶୀୟ ସ୍ୱାହା ।
ଇଦଂ ପ୍ରାଣାୟ-ଇଦନ୍ନମମ ॥୧॥
ଓ୩ମ୍ ଅପାନେନ ଗନ୍ଧାନଶୀୟ ସ୍ୱାହା ।
ଇଦମ ପାନାୟ-ଇଦନ୍ନମମ ॥୨॥
ଓ୩ମ୍ ଚକ୍ଷୁଷା ରୂପାଣ୍ୟଶୀୟ ସ୍ୱାହା ।
ଇଦଂ ଚକ୍ଷୁଷେ-ଇଦନ୍ନମମ ॥୩॥
ଓ୩ମ୍ ଶ୍ରୋତ୍ରେଣ ଯଶୋଽଶୀୟ ସ୍ୱାହା ।
ଇଦଂ ଶ୍ରୋତ୍ରାୟ-ଇଦନ୍ନମମ ॥୪॥

ପାର.ଗ.କା୧-୧୯।୪

ତାପରେ "ଓଁ ସଦସ୍ୟ କର୍ମଣୋ." ମନ୍ତ୍ରରେ ଗୋଟିଏ ସ୍ୱିଷ୍ଟକୃତ୍ ଆହୁତି ଦେବେ । ତାପରେ ୩୨ପୃଷ୍ଠାରେ ଆହୁତି ଓ ୩୪ପୃଷ୍ଠାରୁ ୩୬ପୃଷ୍ଠା ପର୍ଯ୍ୟନ୍ତ ଲିଖିତ "ଓ୩ମ୍ ଭୂରଗ୍ନୟେ" ଇତ୍ୟାଦି ମନ୍ତ୍ରରେ ୮ (ଆଠଟି) ଆଜ୍ୟାହୁତି – ମୋଟ ୧୨( ବାରଟି ) ଆହୁତି ଦେବେ ।

ଆହୁତି ଦେବାପରେ ଅବଶିଷ୍ଟ ଅନ୍ନରେ କିଛି କିଛି ପରିମାଣରେ ଦହି, ମଧୁ ଓ ଘିଅ ତଥା ଆଉ କିଛି ସୁଗନ୍ଧି ପକ୍ୱାନ୍ନ ମିଶ୍ରିତ କରି ଶିଶୁର ରୁଚିଅନୁସାରେ ଅଳ୍ପ ଅଳ୍ପ ଖାଦ୍ୟ ନିମ୍ନୋକ୍ତ ମନ୍ତ୍ରପାଠ ପୂର୍ବକ ଶିଶୁକୁ ଖୁଆଇ ଦେବ ।

**ଓ୩ମ୍ ଅନ୍ନପତେଽନ୍ନସ୍ୟ ନୋ ଦେହ୍ୟନମୀବସ୍ୟ ଶୁଷ୍ମିଣଃ । ପ୍ରପ୍ର ଦାତାରଂ ତାରିଷ । ଊର୍ଜ୍ଜଂ ନୋ ଧେହି ଦ୍ୱିପଦେ ଚତୁଷ୍ପଦେ ॥୧॥**

ଯଜୁ ୧୧।୮୩। ଆଶ୍ୱ.ଗୃ. ୧।୧୬।୫,

ଶିଶୁକୁ ରୁଚିମତେ ଅନ୍ନଭୋଜନ କରାଇ ତାହାର ମୁଖ ଧୌତ କରିଦେବେ ଏବଂ ସ୍ୱୀୟ ହସ୍ତ ଧୌତକରି ୩୭ ୩୮ ପୃଷ୍ଠାରେ ଥିବା ମହାବାମଦେବ୍ୟ ଗାନ କରିବେ ବାଳକର ମାତାପିତା ଓ ଅନ୍ୟାନ୍ୟ ଆଗତ ବୃଦ୍ଧ, ସ୍ତ୍ରୀ,-ପୁରୁଷ ସମସ୍ତେ ପରମାତ୍ମାଙ୍କ ନିକଟରେ ପ୍ରାର୍ଥନା କରି ନିମ୍ନୋକ୍ତ ବାକ୍ୟରେ ଶିଶୁକୁ ଆଶୀର୍ବାଦ କରିବେ—

ତ୍ୱମନ୍ନପତିରନ୍ନାଦୋ ବର୍ଦ୍ଧମାନୋ ଭୂୟାଃ ।

ପରଶେଷରେ ଶିଶୁର ପିତା ସଂସ୍କାରରେ ଯୋଗଦାନ କରିଥିବା ପୁରୁଷମାନଙ୍କୁ ଓ ଶିଶୁରମାତା ମହିଳା ମାନଙ୍କୁ ଆଦର ସମ୍ମାନ କରି ସହର୍ଷେ ବିଦାୟ ଦେବେ ।

( ଇତ୍ୟନ୍ନପ୍ରାଶନସଂସ୍କାରବିଧିଃ ସମାପ୍ତଃ । )



# ଅଥ ଚୂଡ଼ାକର୍ମସଂସ୍କାରବିଧିଂ ବକ୍ଷ୍ୟାମଃ

ଚୂଡ଼ାକର୍ମ ଅଷ୍ଟମ ସଂସ୍କାର । ଏହାକୁ ମଧ୍ୟ କେଶଚ୍ଛେଦନ ସଂସ୍କାର କୁହାଯାଏ । ଏହି ବିଷୟରେ ଆଶ୍ୱଳାୟନ ଗୃହ୍ୟସୂତ୍ରର ( ୧।୧୭।୧-୨ ) ମତ ହେଉଛି—

**ତୃତୀୟେ ବର୍ଷେ ଚୌଳମ ।୧। ଉତ୍ତରତୋଽଗ୍ନେର୍ବ୍ରୀହି-ଯବମାଷତିଲାନାଂ ପୃଥକ୍‌ପୂର୍ଣ୍ଣଶରାବାଣି ନିଦଧାତି ।।୨।।** ଆଶ୍ୱ.ଗୃ. ୧।୧୭।୧।୨.

ଏହିପରି ( ବିଧାନ ) ପାରସ୍କର ଗୃହ୍ୟସୂତ୍ରାଦିରେ ମଧ୍ୟ ଲିଖିତ ଅଛି—

**ସାମ୍ବତ୍ସରିକସ୍ୟ ଚୂଡ଼ାକରଣମ୍ ।**

ପାର·୨।୧।୧.

ଗୋଭଳୀୟ ଗୃହ୍ୟସୂତ୍ରର ମଧ୍ୟ ଏହିପରି ମତ । **ଗୋଭିଳ ଗୃ ୨।୮।୧,୭ ।**

ଏହି ଚୂଡ଼ାକର୍ମ ଅର୍ଥାତ୍ ମୁଣ୍ଡନ ବାଳକର ଜନ୍ମଠାରୁ ପ୍ରଥମ ବର୍ଷରେ ବା ତୃତୀୟ ବର୍ଷରେ କରିବାକୁ ହୁଏ ।

ଉତ୍ତରାୟଣ ସମୟରେ ଶୁକ୍ଳପକ୍ଷରେ ଯେଉଁଦିନ ଆନନ୍ଦ ଓ ଶୁଭ ମନେହେବ, ସେଇଦିନ ଏହି ସଂସ୍କାର କରିବ ।

ବିଧି:— ପ୍ରାରମ୍ଭରେ ୨ ରୁ ୩୮ ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ବିଧି ଅନୁସାରେ ଈଶ୍ୱର ସ୍ତୁତି ପ୍ରାର୍ଥନାଠାରୁ ବାମ-ଦେବ୍ୟଗାନ ପର୍ଯ୍ୟନ୍ତ କୃତ୍ୟସମାପନ କରି ଚାରିଗୋଟି ପାତ୍ର ନେବ । ପ୍ରଥମଟିରେ ତଣ୍ଡୁଳ, ଦ୍ୱିତୀୟରେ ଯବ, ତୃତୀୟଟିରେ ବରି, ଚତୁର୍ଥରେ ରାଶି ତିଳ ସେଗୁଡ଼ିକୁ ବେଦୀର ଉତ୍ତର ଦିଗରେ ରଖିଦେବ । ତାପରେ ୩୦ପୃଷ୍ଠାରେ ଲିଖିତ ବିଧି ଅନୁସାରେ "ଓଁ ଅଦିତେଽନୁମନ୍ୟସ୍ୱ" ଇତ୍ୟାଦି ତିନି ମନ୍ତ୍ରରେ କୁଣ୍ଡର ତିନିଦିଗରେ ଓ ୩୦ପୃଷ୍ଠାରେ ଲିଖିତ ବିଧି ଅନୁସାରେ ଓଁ ଦେବସବିତଃ ପ୍ରସୁବ" ମନ୍ତ୍ରରେ କୁଣ୍ଡର ଚାରିଦିଗରେ ଜଳସିଞ୍ଚନ କରିବ ।

ତତ୍ପରେ ୨୬ପୃଷ୍ଠାରୁ ୨୯ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ବିଧିରେ ଅଗ୍ନ୍ୟାଧାନ ଓ ସମିଧଦାନ କରି ଅଗ୍ନିକୁ ପ୍ରଦୀପ୍ତ କରିବ ଏବଂ ପ୍ରଜ୍ୱଳିତ ସମିଧା ପ୍ରତି ଲକ୍ଷ୍ୟରଖି ୩୧ପୃଷ୍ଠାରୁ ୩୨ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ( ଘୃତ ) ୪ ଆଘାରାବାଜ୍ୟାଭାଗାହୁତି; ୪(ଚାରି) ବ୍ୟାହୃତି ଆହୁତି, ୩୪ ପୃଷ୍ଠାରେ ଲିଖିତ ୮(ଆଠ) ଆଜ୍ୟାହୁତି, ସବୁ ମିଶି ୧୬ ( ଷୋହଳ ) ଆହୁତି ଦେବେ । ତତ୍ପରେ ୩୩ପୃଷ୍ଠାରୁ ୩୪ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ବିଧିରେ । "ଓଁ ଭୂର୍ଭୁବଃ ସ୍ୱଃ । ଅଗ୍ନ ଆୟୂଂଷି,, ଇତ୍ୟାଦି ମନ୍ତ୍ରରେ ପ୍ରଧାନ ହୋମର ଚତୁର୍ଥାଜ୍ୟାହୁତି ଦେଇ ପରେ ୩୨ପୃଷ୍ଠାରେ ଲିଖିତ ଘୃତ ଆହୁତି ସ୍ୱିଷ୍ଟକୃତ୍ ମନ୍ତ୍ରରେ ଏକ ଆହୁତି— ସବୁମିଶି ୫ ( ପାଞ୍ଚଟି ) ଘୃତାହୁତି ଦେବ ।

# କ୍ଷୌରକାର୍ଯ୍ୟ

ଏଇ ସବୁ କାର୍ଯ୍ୟ ସମାପନାନ୍ତେ କର୍ମକର୍ତ୍ତା ପରମାତ୍ମାଙ୍କର ଧ୍ୟାନପୂର୍ବକ ପ୍ରଥମେ କ୍ଷୌରକାର ( ଭଣ୍ଡାରୀ ) ପ୍ରତି ଦୃଷ୍ଟିନିକ୍ଷେପ କରି ନିମ୍ନୋକ୍ତ ମନ୍ତ୍ର ଜପିବେ—

**ଓଁ ଆୟମଗନ୍ତ ସବିତା କ୍ଷୁରେଣୋଷ୍ଣେନ ବାୟୁ ଉଦକେନେହି । ଆଦିତ୍ୟା ରୁଦ୍ରା ବସବ ଉନ୍ଦନ୍ତୁ ସଚେତସଃ ସୋମସ୍ୟ ରାଜ୍ଞୋ ବପତ ପ୍ରଚେତସଃ ॥୧॥**

ଅଥର୍ବ, କା ୬।୬୮।୧।ଗୋ. ୨।୯।୧୦

ଏଇ ମନ୍ତ୍ରଜପକରି ପିତା ଶିଶୁର ପଶ୍ଚାଦ୍‌ଭାଗରେ ଉପବେଶନ ପୂର୍ବକ ଦୁଇଟି ପୃଥକ୍ ପାତ୍ରରେ କିଞ୍ଚିତ୍ ଉଷ୍ଣ ଓ କିଞ୍ଚିତ୍ ଶୀତଳ ଜଳନେଇ ନିମ୍ନମନ୍ତ୍ର ଉଚ୍ଚାରଣ କରି ଉଭୟ ପାତ୍ରର ଜଳ ଏକ ପାତ୍ରରେ ମିଶ୍ରିତ କରିବେ—

**ଓଁ ଉଷ୍ଣେନ ବାୟୁ ଉଦକେନୈହି*** । ପାର. ଗୃ. ୨।୧।୧୬

ତତ୍ପରେ କିଛି ପରିମାଣରେ ସେହି ଜଳ ଓ କିଛି ଲବଣୀ ବା ଦହି ସର ନେଇ ନିମ୍ନମନ୍ତ୍ରଦୁଇ ଉଚ୍ଚାରଣପୂର୍ବକ—

---

* ଉଦକେନୈଧି ଏହା ଗୋଭିଲୀୟ ପାଠ

ଓଁ ଅଦିତିଃ ଶ୍ମଶ୍ରୁ ବପତ୍ୱାପ ଉନ୍ଦନ୍ତୁ ବର୍ଚସା ।
ଚିକିତ୍ସତୁ ପ୍ରଜାପତି ର୍ଦୀର୍ଘାୟୁତ୍ୱାୟ ଚକ୍ଷ ସେ ।

ଅଥର୍ବ ୬।୬୮।୨ । ଆଶ୍ୱ·ଗୃ· ୧।୧୭।୭ ।

ଓଁ ସବିତ୍ରା ପ୍ରସୂତା ଦୈବ୍ୟା ଆପ ଉନ୍ଦନ୍ତୁ ତେତନୂଂ
ଦୀର୍ଘାୟୁତ୍ୱାୟ ବର୍ଚସେ ॥୧॥ ପାର. କା ୨।କଂ୧।୯.

ଶିଶୁର ମସ୍ତକରେ ( ସେହି ନାତିଶୀତୋଷ୍ଣ ଜଳ ଓ ଲବଣୀ ) ତିନଥର ଲେପନ କରି ତାର କେଶକପାଳ ସିକ୍ତ କରିବେ ଏବଂ ପାନୀଆଦ୍ୱାରା ମାର୍ଜ୍ଜିତ କରି କେଶଗୁଡ଼ିକୁ କୁଣ୍ଡାଇ ସଜ୍ଜିତ କରିଦେବେ ।

ତତ୍ପରେ ନିମ୍ନୋକ୍ତ ମନ୍ତ୍ରବୋଲି ତିନୋଟି କୁଶ ନେଇ ଦକ୍ଷିଣଦିଗର କେଶଗୁଡ଼ିକୁ ହସ୍ତଦ୍ୱାରା ଚିପିଧରିବେ—

ଓଁ ଔଷଧେ ତ୍ରାୟସ୍ୱୈନମ୍ । ଗୋଭି । ୨।୯।୧୪.
ଓଁ ସ୍ୱଧିତେ ମୈନଂ ହିଂସୀଃ ।

ମଂ ବ୍ରା. ୧।୬।୪ ଗୋ·ଗୃ· ୨।୯।୧୩ ।

ନିମ୍ନୋକ୍ତ ମନ୍ତ୍ର ବୋଲି କ୍ଷୁର ଦକ୍ଷିଣ ହସ୍ତରେ ଗ୍ରହଣ କରିବେ—



**ଓଁ ଶିବୋ ନାମାସି ସ୍ୱଧିତିସ୍ତେ ପିତା ନମସ୍ତେ [ଽଅସ୍ତୁ] ମା ମା ହିଁସୀଃ ।**

ଯଜୁ. ଅ· ୨।ମ° ୬୩ । ପାର. ଗୃ· ୨।୧।୧୧·

ଚତ୍ୱରରେ ନିମ୍ନୋକ୍ତ ମନ୍ତ୍ରଦୁଇଟି ପାଠକରି ସେହି କ୍ଷୁର ଓ କୁଶଗୁଡ଼ିକ କେଶର ନିକଟକୁ ନେଇ –

**ଓଁ ସ୍ୱଧିତେ ମୈନଁ ହିଁସୀଃ ।**

ଯଜୁ ୬।୧୫ । ଆ·ଗୃ· ୧।୧୭।୯

**ଓଁ ନିବର୍ତ୍ତ୍ୟାମ୍ୟାୟୁଷେଽନ୍ନାଦ୍ୟାୟ ପ୍ରଜନନାୟ ରାୟସ୍ପୋଷାୟ ସୁପ୍ରଜାସ୍ତ୍ୱାୟ ସୁବୀର୍ଯ୍ୟାୟ ।**

ଯଜୁ ଅ ୩।ମ୬୩ । ପା. ଗୃ. ୨।୧୧

ନିମ୍ନୋକ୍ତ ମନ୍ତ୍ରପାଠକରି କୁଶସମୂହ ସହିତ କେଶଗୁଡ଼ିକ କର୍ତ୍ତନ କରିବ *

**ଓଁ ଯେନାବପତ୍ସବିତା କ୍ଷୁରେଣ ସୋମସ୍ୟ ରାଜ୍ଞୋ ବରୁଣସ୍ୟ ବିଦ୍ୱାନ୍ । ତେନ ବ୍ରହ୍ମାଣୋ ବପତେ-**

---

*କେଶ ଛେଦନର ଶାସ୍ତ୍ରହେଉଛି ଯେ, କୁଶ ଓ କେଶ ଉଭୟ ଠିକ୍ ଭାବେ ଧାରଣ କରି ଅର୍ଥାତ୍ ଦୁଇଆଙ୍ଗୁଠିରେ ଧାରଣକରି ମଧ୍ୟସ୍ଥାନରେ କେଶଗୁଡ଼ିକୁ କ୍ଷୁରଦ୍ୱାରା କର୍ତ୍ତନ କରିବ । କ୍ଷୁର ପରିବର୍ତ୍ତେ କଇଁଚିକେ ମଧ୍ୟ ଚାଲିପାରେ ।

**ତମସ୍ୟ ଗୋମାନଶ୍ୱବାନସ୍ତୁ ମସ୍ତ୍ତ ପ୍ରଜାବାନ୍ ।**

ଅଥର୍ବ ୬।୬୮।୩ । ଆ·ଗୃ. ୧।୧୭।୧୦ । ପା·ଗୃ. ୨।୧।୧୧

ତତ୍‌ପରେ ଶିଶୁର ମାତାପିତା ସେଇ କର୍ତ୍ତିତ କେଶ ଓ କୁଶ ଶମୀବୃକ୍ଷର ପତ୍ରସହ ( ଏ ସ୍ଥାନରେ ପୂର୍ବରୁ ଶମୀ-ବୃକ୍ଷର ପତ୍ର ସଂଗ୍ରହ କରି ରଖିବାକୁ ହେବ ) ତତ୍‌ସମୁଦାୟ ଗୋଟିଏ ଶରାରେ ରଖିବେ । କେଶ କର୍ତ୍ତନ ସମୟରେ କେଉଁ କେଶ ଉଡ଼ିଗଲେ ତାହା ଗୋମୟଦ୍ୱାରା ଉଠାଇ ଶରାରେ ବା ତାହାର ପାର୍ଶ୍ୱରେ ରଖିଦେବ ।

ତତ୍‌ପରେ ନିମ୍ନଲିଖିତ ମନ୍ତ୍ରପାଠ କରି ଏଇଭାବରେ ଅନ୍ୟତ୍ରର କେଶଗୁଛ ଦକ୍ଷିଣସ୍ୱାର କର୍ତ୍ତନକରି ପୂର୍ବପରି ଶରାରେ ରଖିବେ—

**ଓଁ ଯେନଧାତା ବୃହସ୍ପତେରଗ୍ନେରିନ୍ଦ୍ରସ୍ୟ ଚାୟୁଷେ-ଽବପତ୍ । ତେନ ତ ଆୟୁଷେ ବପାମି ସୁଶ୍ଳୋକ୍ୟାୟ ସ୍ୱସ୍ତୟେ ।**

ଆଶ୍ୱ, ୧।୧୭।୧୨.

ତାପରେ ଏହି ନିମ୍ନଲିଖିତ ମନ୍ତ୍ରରେ ଚୂଡ଼ାସ୍ୱାର କେଶ ସମୁହକୁ କାଟିବ ।

**ଓଁ ଯେନ ଭୂୟଶ୍ଚ ରାତ୍ର୍ୟାଂ**
**ଜ୍ୟୋକ୍ ଚ ପଶ୍ୟାତି ସୂର୍ଯ୍ୟମ୍ ,**
**ତେନତ ଆୟୁଷେ ବପାମି ସୁଶ୍ଳୋକ୍ୟାୟ ସ୍ୱସ୍ତୟେ ।**

ଆଶ୍ୱ; ଗୃ: ୧।୧୭।୧୨



ତତ୍ପଶ୍ଚାତ୍ ଉପରୋକ୍ତ ତିନି ଅର୍ଥାତ୍

ଓ୍ୱାମ୍ ଯେନାବପତ୍ — —

ଓ୍ୱାମ୍ ଯେନ ଧାତା — —

ଓ୍ୱାମ୍ ଯେନଭୂୟଶ୍ଚ — —

ଏବଂ ନିମ୍ନଲିଖିତ ମନ୍ତ୍ର ଅର୍ଥାତ୍ ସର୍ବମୋଟ ୪ ( ଗୋଟି ) ମନ୍ତ୍ରପାଠକରି ପୂର୍ବବତ୍ ଚତୁର୍ଥବାର କେଶ ଗୁଡିକ କର୍ତ୍ତନ କରିବ—

ଓଁ ଯେନ ପୂଷା ବୃହସ୍ପତେର୍ବାୟୋରିନ୍ଦ୍ରସ୍ୟ ଚାବପତ୍ । ତେନ ତେ ବପାମି ବ୍ରହ୍ମଣା ଜୀବାତବେ ଜୀବନାୟ ଦୀର୍ଘାୟୁଷ୍ଟ୍ୱାୟ ବର୍ଚ୍ଚସେ ।

( ଗୋ· ୨।୯।୧୯-୧୬ )

ପ୍ରଥମେ ଦକ୍ଷିଣଦିଗର କେଶ କର୍ତ୍ତନ ବିଧି ପୂର୍ଣ୍ଣ କଲେ ତାପରେ ବାମଦିଗର କେଶ ଯଥାବିଧି କର୍ତ୍ତନ କରିବେ । ବାମଦିଗର କେଶକର୍ତ୍ତନ ବିଧି ସମାପ୍ତ କରି ତତ୍ପରେ ମସ୍ତକର ପୂର୍ବଭାଗର କେଶ କର୍ତ୍ତନ କରିବେ, ପରନ୍ତୁ ଚତୁର୍ଥବାର କର୍ତ୍ତନ ସମୟରେ ( ଯେନ ପୂଷା ) ଏହି ମନ୍ତ୍ରପରିବର୍ତ୍ତେ ନିମ୍ନଲିଖିତ ମନ୍ତ୍ରପାଠକରି ଚତୁର୍ଥବାର କର୍ତ୍ତନ କରିବେ—

ଓଁ ଯେନ ଭୂରିଶ୍ଚରାଦ୍ଦିବଂ ଜ୍ୟୋକ୍ ଚ ପଶ୍ଚାଦ୍ଧି
ସୂର୍ଯ୍ୟମ୍ । ତେନ ତେ ବପାମି ବ୍ରହ୍ମଣା ଜୀବାତବେ
ଜୀବନାୟ ସୁଶ୍ଳୋକ୍ୟାୟ ସ୍ୱସ୍ତୟେ ।

ପାର. ୨।୧।୧୭

ତତ୍ପରେ ନିମ୍ନଲିଖିତ ମନ୍ତ୍ରଟି ପାଠକରି ମସ୍ତକର ପଶ୍ଚାତ୍ ଭାଗର କେଶ ଥରେ କର୍ତ୍ତନ କରିବ—

ଓଁ ତ୍ର୍ୟାୟୁଷଂ ଜମଦଗ୍ନେଃ କଶ୍ୟପସ୍ୟ ତ୍ର୍ୟାୟୁଷମ୍ ।
ଯଦ୍ଦେବେଷୁ ତ୍ର୍ୟାୟୁଷଂ ତନ୍ନୋ ଅସ୍ତୁ ତ୍ର୍ୟାୟୁଷମ୍ ।

ଯଜୁ. ୩।୬୨ ॥ ପାର. ୨।୧।୧୪

ତାପରେ ଏଇ ଓଁ ତ୍ର୍ୟାୟୁଷଂ ମନ୍ତ୍ରକୁ ହିଁ ପାଠ କରି କରି ଶିଶୁର ମସ୍ତକରେ ହାତ ବୁଲାଇ ଦେବେ ।ମନ୍ତ୍ରପାଠ ସମାପ୍ତ ହେଲେ କ୍ଷୌରକାର ହାତରେ କ୍ଷୁର ପ୍ରଦାନକରି ନିମ୍ନୋକ୍ତ ମନ୍ତ୍ର ଉଚ୍ଚାରଣ କରିବ—

ଓଁ ଯତ୍କ୍ଷୁରେଣ ମର୍ଚୟତା ସୁପେଶସା ବପ୍ତା
ବପସି କେଶାନ୍ ।
ଶୁନ୍ଧି ଶିରୋ ମାସ୍ୟାୟୁଃ ପ୍ର ମୋଷୀଃ ॥

ଆଶ୍ୱ. ୧।୧୭।୧୫

ଏବଂ କ୍ଷୌରକାରଦ୍ୱାରା କ୍ଷୁର ଉତ୍ତମରୂପେ ପ୍ରସ୍ତରଉପରେ ଶାଣିତ କରାଇ ଶିଶୁର ପିତା କ୍ଷୌରକାରକୁ କହିବେ—
"ଏଇ ଶୀତୋଷ୍ଣ ଜଳଦ୍ୱାରା କୋମଳ ହାତରେ କ୍ଷୌର

କର, ଯେପରି କ୍ଷୂର ଲାଗି ନ ଯାଏ ।” ଏହା କହି କ୍ଷୌରକାରକୁ କୁଣ୍ଡର ଉତ୍ତର ଦିଗକୁ ନେଇଯାଇ ଶିଶୁକୁ ତାହାର ସମ୍ମୁଖରେ ପୂର୍ବାଭିମୁଖରେ ଉପବେଶନ କରାଇ ଯେତିକ କେଶ ରଖିବାକୁ ହେବ, ରଖିବ ବା ପାଞ୍ଚଦିଗରେ କଟି କଟି କେଶ ରଖିଦେବେ ବା ଯେ କୌଣସି ଏକଦିଗରେ ରଖିବେ ବା ପ୍ରଥମଥରରେ ସମସ୍ତ କେଶ ମୁଣ୍ଡନ କରାଇଦେବେ । ତାପରେ ଦ୍ୱିତୀୟ ଥରରେ କେଶ ରଖିବା ଉତ୍ତମ । *

ମୁଣ୍ଡନ ସମାପ୍ତ ହେଲେ କୁଣ୍ଡର ପାର୍ଶ୍ୱସ୍ଥିତ ଦେବାଯୋଗ୍ୟ ପଦାର୍ଥ ବା ପୂର୍ବରକ୍ଷିତ ତଣ୍ଡୁଳ ଓ ଯବାଦିପୂର୍ଣ୍ଣ ସରାଗୁଡିକ କ୍ଷୌରକାରକୁ ପ୍ରଦାନ କରିବେ । ତାହାକୁ ଯଥାଯୋଗ୍ୟ ଧନ ଓ ବସ୍ତ୍ର ମଧ୍ୟ ଦାନ କରିବେ । ସମସ୍ତ ମୁଣ୍ଡିତ କେଶ, ଦର୍ଭ, ଶମୀପତ୍ର ଓ ଗୋମୟ କ୍ଷୌରକାରକୁ ଦେଇ ତାହାକୁ ସେଗୁଡ଼ିକ ଜଙ୍ଗଲ ବା ଗୋଶାଳା ପାର୍ଶ୍ୱରେ ଅଥବା ନଦୀ ବା ଜଳାଶୟର ତୀରସ୍ଥ ମୃତ୍ତିକା ମଧ୍ୟରେ ଉତ୍ତମରୂପେ ପୋତି ଦେବାକୁ କହିବେ ବା ନାପିତ ସହିତ କାହାକୁ ପଠାଇ ଦେବେ, ସେ ତାହାଦ୍ୱାରା ଉପରୋକ୍ତ କାର୍ଯ୍ୟ କରାଇନେବେ ।

---

* ଯଥାମଂଗଲଂ କେଶଶେଷକରଣମ୍ ॥ ପାର. ଗୃ. ସୂ. କା ୨। କଂ ୧। ସୂ ୨୨। କେଶକଲାପର ଶେଷ ରଖିବ ଅର୍ଥାତ୍ ଶିଖା ରଖିବ । ଯଥା ମଙ୍ଗଳ ଅର୍ଥାତ୍ ଯେଉଁପରି ବା ଯେଉଁଥିରେ ମଙ୍ଗଲ ହେବ, ସେହିପରି ରଖିବା ଉଚିତ୍ । ( ସଂସ୍କାର ଚନ୍ଦ୍ରିକା )

କ୍ଷୌରକାର୍ଯ୍ୟପରେ ଲବଣୀ ବା ଦଦ୍ଧିସର ଶିଶୁର ମସ୍ତକରେ ଲଗାଇ ସ୍ନାନ କରାଇବେ ଏବଂ ଉତ୍ତମ ବସ୍ତ୍ର ପରିଧାନ କରାଇ ପିତା ଶିଶୁକୁ ନିଜନିକଟକୁ ନେଇ ଶୁଭାସନରେ ପୂର୍ବାଭିମୁଖରେ ଉପବେଶନ କରି ୩୭ପୃଷ୍ଠାରୁ ୩୮ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ସାମବେଦର ମହାବାମଦେବ୍ୟ ଗାନ କରିବେ । ଶିଶୁରମାତା ମହିଳାମାନଙ୍କୁ ଓ ପିତା ପୁରୁଷମାନଙ୍କୁ ଯଥାଯୋଗ୍ୟ ଆଦର ସମ୍ମାନ କରି ବିଦାୟ କରିବେ । ଯିବା ସମୟରେ ସମସ୍ତେ ତଥା ଶିଶୁର ମାତାପିତା ପରମେଶ୍ୱରଙ୍କର ଧ୍ୟାନ କରି ନିମ୍ନଲିଖିତ ମନ୍ତ୍ର ଉଚ୍ଚାରଣ କରିବେ—

"ଓଁ ତ୍ୱଂ ଜୀବ ଶରଦଃ ଶତଂ ବର୍ଧମାନଃ" ।।

ଏହି ମନ୍ତ୍ର ଉଚ୍ଚାରଣକରି ଶିଶୁକୁ ଆଶୀର୍ବାଦ ପ୍ରଦାନ କରି ସ୍ୱସ୍ୱ ଗୃହକୁ ପ୍ରସ୍ଥାନ କରିବେ । ଶିଶୁର ମାତାପିତା ପ୍ରସନ୍ନ ହୋଇ ଶିଶୁକୁ ଆନନ୍ଦ ଦାନ କରିବେ ।

## ଇତି ଚୂଡ଼ାକର୍ମ ସଂସ୍କାରବିଧିଃ ସମାପ୍ତଃ ।



# * ଅଥ କର୍ଣ୍ଣବେଧସଂସ୍କାରବିଧିଂ ବକ୍ଷ୍ୟାମଃ

ଅତ୍ରପ୍ରମାଣମ୍— କର୍ଣ୍ଣବେଧୋ ବର୍ଷେ ତୃତୀୟେ ପଞ୍ଚମେ ବା ।

ଏହା କାତ୍ୟାୟନ ଗୃହ୍ୟସୂତ୍ରର ( ୧-୨ ) ବଚନ । ଶିଶୁ ଜନ୍ମପରେ ତୃତୀୟ ବା ପଞ୍ଚମ ବର୍ଷରେ ଶିଶୁର କର୍ଣ୍ଣ ଓ ନାସିକା ବିଦ୍ଧକରିବା ଉଚିତ୍ । ଯେଉଁଦିନ କର୍ଣ୍ଣ ବା ନାସିକା ବିଦ୍ଧ କରାଇବାର ଦିନ ନିର୍ଦ୍ଧାରିତ ହେବ, ସେଦିନ ଶିଶୁର ମାତା ଶିଶୁକୁ ପ୍ରାତଃକାଳେ ଶୁଦ୍ଧ ଜଳରେ ସ୍ନାନ କରାଇ ବସ୍ତ୍ରାଳଂକାରରେ ଭୂଷିତ କରିବେ । ତତ୍‌ପରେ

---

* ଉଦ୍ଦେଶ୍ୟ— ଶିଶୁର ଜନ୍ମପରେ ତୃତୀୟ ବା ପଞ୍ଚମ ବର୍ଷରେ କାନ ଫୋଡ଼ାଇ ଦେବେ । ଅଳଂକାର ପରିଧାନ ଏହାର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । ପାରସ୍କର ଗୃହ୍ୟ ସୂତ୍ରରେ ଏହାର ଉଲ୍ଲେଖ ଅଛି । ସୁଶ୍ରୁତ ଋଷିଙ୍କ ମତରେ ( ସୁଶ୍ରୁ. ଚିକିତ୍ସା ସ୍ଥାନ ଅଧ୍ୟାୟ ୧୯ ) ଶିଶୁର କାନ ଫୋଡ଼ାଇ ଦେଲେ ଜୀବନରେ ତାହାର ଅନ୍ତ୍ର ଓ ଅଣ୍ଡକୋଷ ବୃଦ୍ଧି ହେବନାହିଁ । ପ୍ରାଚୀନ କାଳରୁ ଭାରତ ବର୍ଷରେ ଏହି କର୍ଣ୍ଣବେଧ ସଂସ୍କାରର ପ୍ରଚଳନ ଅଛି । ଶରୀରର ଶିରା - ଉପଶିରାଦି ଅନ୍ତ୍ରର ଉପରେ ଏହି ସଂସ୍କାରର ଯେ ପ୍ରଭାବ ଅଛି, ତାହା ଏକ ପରୀକ୍ଷିତ ସତ୍ୟ ।

(ପଂ ଶ୍ରୀ ଦୀନବନ୍ଧୁ, ବେଦଶାସ୍ତ୍ରୀ)



ଶିଶୁର ମାତା ଶିଶୁକୁ ଯଜ୍ଞଶାଳାକୁ ଆଣି ୨ ପୃଷ୍ଠାରୁ ୩୬ପୃଷ୍ଠା (ଈଶ୍ୱର ସ୍ତୁତିପ୍ରାର୍ଥନା ଉପାସନାଠାରୁ ସାମାନ୍ୟ ପ୍ରକରଣ ଶେଷଯାଏଁ) ପର୍ଯ୍ୟନ୍ତ ଲିଖିତ ସବୁ କ୍ରିୟା ଯଥାବିଧି କରିବେ ।

ତାପରେ ଶିଶୁ ଆଗରେ କିଛି ଭୋଜ୍ୟପଦାର୍ଥ ବା ଖେଳନା ରଖି ନିମ୍ନଲିଖିତ ମନ୍ତ୍ର ପାଠକରି—

**ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା ଭଦ୍ରଂ ପଶ୍ୟେମାକ୍ଷଭିର୍ୟଜତ୍ରାଃ ॥**
**ସ୍ଥିରୈରଙ୍ଗୈ ସ୍ତୁଷ୍ଟୁବାଁ ସସ୍ତନୂଭି ର୍ବ୍ୟଶେମହି ଦେବହିତଂ ଯଦାୟୁଃ ॥ ୧ ॥**

ଯଜୁ ୨୫।୨୧

ଯେ ଶିଖ୍ୟାପଣିଗ୍ୱନ୍ଧ ରକ୍ଷା କରି ବିଦ୍ଧ କରିପାରେ ସେପରି ଚରକ ଓ ସୁଶ୍ରୁତାଦି ଆୟୁର୍ବେଦଜ୍ଞ ସୁଚିକିତ୍ସକଙ୍କଦ୍ୱାରା କର୍ଣ୍ଣ ଓ ନାସିକା ବିଦ୍ଧ କରାଇବେ ଏବଂ ଉକ୍ତ ମନ୍ତ୍ରଦ୍ୱାରା ହିଁ ଦକ୍ଷିଣକର୍ଣ୍ଣ ବିଦ୍ଧ କରିବେ ।

ନିମ୍ନ ମନ୍ତ୍ରପାଠକରି ବାମକର୍ଣ୍ଣ ବିଦ୍ଧ କରିବେ—

**ଓଁ ବକ୍ଷ୍ୟନ୍ତୀ ବେଦା ଗନୀଗନ୍ତି କର୍ଣ୍ଣଁ ପ୍ରିୟଁ ସଖାୟଂ ପରିଷସ୍ୱଜାନା ।**
**ଯୋଷେବ ଶିଙ୍କ୍ତେ ବିତତାଧି ଧନ୍ୱଞ୍ଜ୍ୟା ଇୟଂ ସମନେ ପାରୟନ୍ତୀ ॥**

ଯଜୁ ୨୯।୪୦।।ପାରିୀ।୧୭ ପଦାର୍ଥକ୍ରମ

ତାପରେ ସେଇ ଚକ୍ରସ୍ତକ ସେଇ ( କର୍ଣ୍ଣର ) ଛିଦ୍ରରେ ଶଳାକା କାଠି ପ୍ରବେଶ କରାଇ ଦେବେ, ଯାହାଦ୍ୱାରା ଛିଦ୍ର ବନ୍ଦ ହୋଇ ନ ଯିବ ଏବଂ ଏଥିରେ ଏପରି ଔଷଧ ପ୍ରୟୋଗ କରିବେ ଯାହାଦ୍ୱାରା କାନ ପାଚିବ ନାହିଁ ଏବଂ ଶୀଘ୍ର ଆରୋଗ୍ୟ ପ୍ରାପ୍ତ ହେବ ।

ଇତି କର୍ଣ୍ଣବେଧ ସଂସ୍କାରବିଧିଃ ସମାପ୍ତଃ ।



# ଅଥୋପନୟନ* ସଂସ୍କାରବିଧିଂ ବକ୍ଷ୍ୟାମଃ

## ଅତ୍ର ପ୍ରମାଣାନି

ଅଷ୍ଟମେ ବର୍ଷେ ବ୍ରାହ୍ମଣମୁପନୟେତ୍ ।।୧।। ଗର୍ଭାଷ୍ଟମେ ବା ।।୨।। ଏକାଦଶେ କ୍ଷତ୍ରିୟମ୍ ।।୩।। ଦ୍ୱାଦଶେ ବୈଶ୍ୟମ୍ ।।୪।। ଆଷୋଡଶାଦ୍ ବ୍ରାହ୍ମଣସ୍ୟାନତୀତଃ କାଲଃ ।।୫।। ଆଦ୍ୱାବିଂଶାତ୍‌କ୍ଷତ୍ରିୟସ୍ୟ, ଆଚତୁର୍ବିଂଶାଦ୍ୱୈଶ୍ୟସ୍ୟ । ଅତ ଊର୍ଦ୍ଧ୍ୱଂ ପତିତସାବିତ୍ରୀକା ଭବନ୍ତି ।।୬।।

ଏ ସବୁ ଆଶ୍ୱଳାୟନ ଗୃହ୍ୟସୂତ୍ରର (୧।୧୯।୧-୬) ପ୍ରମାଣ । ପାରସ୍କରାଦ ଗୃହ୍ୟସୂତ୍ରାଦି ମାନଙ୍କରେ ମଧ୍ୟ ଏହିପରି ପ୍ରମାଣ ଅଛି ।

---

* ଏହାର ଅର୍ଥ ସମୀପେ ନୟନ ଅର୍ଥାତ୍ ଲାଭକରିବା ବା ପ୍ରାପ୍ତହେବା ।

( ଉପଅର୍ଥ ନିକଟକୁ ଏବଂ ନୟନ ଅର୍ଥ ନେଇଯିବା, ଉପନୟନ ଅର୍ଥ ନିକଟକୁ ନେଇଯିବା ବା ଆଚାର୍ଯ୍ୟ ଯେଉଁ ସଂସ୍କାର ଦ୍ୱାରା ଶିଷ୍ୟକୁ ବ୍ରହ୍ମର ସାନ୍ନିଧ୍ୟକୁ ନେଇ ଯା'ନ୍ତି ତାହାକୁ ଉପନୟନ ସଂସ୍କାର କହନ୍ତି । ମାତାର ଗର୍ଭରୁ ଭୂମିଷ୍ଠ ହେଲେ ସନ୍ତାନ ଭୌତିକଜନ୍ମ ଲାଭକରେ । ଯେତେବେଳେ ଆଚାର୍ଯ୍ୟଙ୍କର ଶିକ୍ଷାଦୀକ୍ଷାର ଆବେଷ୍ଟନୀରେ

**ଅର୍ଥ—** ଯେଉଁଦିନ ଜନ୍ମ ହୋଇଛି ଅଥବା ଯେଉଁଦିନ ଗର୍ଭସ୍ଥିତିଲାଭ କରିଥିଲା, ସେହିଦିନଠାରୁ ଅଷ୍ଟମ ବର୍ଷରେ ବ୍ରାହ୍ମଣଶିଶୁର, ଜନ୍ମ ବା ଗର୍ଭଠାରୁ ଏକାଦଶ ବର୍ଷରେ

---

ବା ଗର୍ଭରେ ବାସ କରି ଶିଷ୍ୟ ପାରମାର୍ଥିକ ଜ୍ଞାନ ଲାଭ କରେ ସେତେବେଳେ ତା'ର ଦ୍ୱିତୀୟ ଜନ୍ମ ବା ନବଜନ୍ମ ଲାଭ ହୁଏ । ଏହାକୁ ଆଧ୍ୟାତ୍ମିକ ଜନ୍ମ ମଧ୍ୟ କୁହାଯାଏ । ମାତାର ଗର୍ଭରୁ ପ୍ରଥମ ଜନ୍ମ ଲାଭକରି ସନ୍ତାନ ଏତେଦିନ ଭୋଜ୍ୟ-ପାନୀୟାଦି ସ୍ଥୂଳ ଆହାର ଦ୍ୱାରା ଓ ମାତା ପିତାଙ୍କର ସ୍ନେହବାତ୍ସଲ୍ୟାଦି ମାନସିକ ଆହାର ଦ୍ୱାରା ପୁଷ୍ଟ ହେଉଥିଲା । ବର୍ତ୍ତମାନ ଆଚାର୍ଯ୍ୟଙ୍କ ନିକଟରୁ ସେ ଆଧ୍ୟାତ୍ମିକ ଆହାର ପାଇବାକୁ ଆରମ୍ଭ କଲା । ସ୍ଥୂଳ ଆହାରଦ୍ୱାରା ଆମ୍ଭମାନଙ୍କ ଶରୀର ପୁଷ୍ଟ ହୁଏ, ମାନସିକ ଆହାର ଦ୍ୱାରା ଆମ୍ଭମାନଙ୍କର ମନ ସତେଜ ଓ ପରିପୁଷ୍ଟ ହୁଏ । କିନ୍ତୁ ଆଧ୍ୟାତ୍ମିକ ଆହାର ଦ୍ୱାରା ଆମମାନଙ୍କର ଆତ୍ମା ପୁଷ୍ଟ ହୁଏ । କେବଳ ସ୍ଥୂଳ ଆହାର ଦ୍ୱାର ଶରୀରକୁ ପୁଷ୍ଟ କଲେ ମନୁଷ୍ୟ ପଶୁତୁଲ୍ୟ ରହେ । ମାନସିକ ଆହାର ମନୁଷ୍ୟକୁ ପୁଷ୍ଟ କଲେ ସେ ହୁଏ ମନୁଷ୍ୟ ଏବଂ ଆଧ୍ୟାତ୍ମିକ ଆହାରରେ ଆତ୍ମାକୁ ପୁଷ୍ଟ କଲେ ସେ ହୁଏ ଦେବତା । ପ୍ରତ୍ୟେକ ମନୁଷ୍ୟ ଏହି ଦେବତ୍ୱ ଲାଭର ଅଧିକାରୀ । ଆଚାର୍ଯ୍ୟ ଉପାସ୍ୟ ଦେବତା ନୁହନ୍ତି । ସେ ଉପଦେଷ୍ଟା ଓ ପଥପ୍ରଦର୍ଶକ । ସେ ହିଁ ମୁକ୍ତିର ପଥ ଦେଖାଇ ଦିଅନ୍ତି ଏବଂ ବ୍ରହ୍ମର ପ୍ରତ୍ୟକ୍ଷ ପରିଚୟ ଦିଅନ୍ତି । ବ୍ରହ୍ମକୁ ନ ଜାଣିଲେ ମଣିଷ ଜନ୍ମ ବୃଥାହୁଏ । କେବଳ ବିଷୟଭୋଗ ଓ ଇନ୍ଦ୍ରିୟ ସେବା ବା ଉଦର ପୂରଣ କଲେ ନରଦେହ ସାର୍ଥକ ହୁଏନାହିଁ । ମନୁଷ୍ୟେତର ଯେ କୌଣସି ପ୍ରାଣୀର ହିଁ ବିଷୟଭୋଗ, ଇନ୍ଦ୍ରିୟସେବା ଉଦର-ପୂରଣର ସୁଯୋଗ ରହିଛି । ଆମେମାନେ ବ୍ରହ୍ମଜ୍ଞାନ ଲାଭକଲେ ହିଁ ଆମ୍ଭମାନଙ୍କର ମନୁଷ୍ୟ ଜନ୍ମ ସାର୍ଥକ ହୁଏ । ଉପନୟନ ସଂସ୍କାରରେ ବ୍ରହ୍ମଜ୍ଞାନଲାଭର ପଥରେ ଅଗ୍ରସର ହେବାକୁ ହୁଏ । ବାଳକ ଓ ବାଳିକା ଉଭୟଙ୍କର ଉପନୟନରେ ଅଧିକାର ଅଛି) ।

କ୍ଷତ୍ରିୟ ଶିଶୁର ଏବଂ ଜନ୍ମ ବା ଗର୍ଭଠାରୁ ଦ୍ୱାଦଶ ବର୍ଷରେ ବୈଶ୍ୟଶିଶୁର ଯଜ୍ଞୋପବୀତ ସଂସ୍କାର କରିବେ । ବ୍ରାହ୍ମଣର ୧୬ ( ଷୋଳ ), କ୍ଷତ୍ରିୟର ୨୨ ( ବାଇଶି ) ଏବଂ ବୈଶ୍ୟର ୨୪ ( ଚବିଶ ) ବର୍ଷ ବୟସ ପୂର୍ବରୁ ଅବଶ୍ୟ ଯଜ୍ଞୋପବୀତ ହେବା ଦରକାର । ଯଦି ପୂର୍ବୋକ୍ତ କାଳରେ ଯଜ୍ଞୋପବୀତ ନ ହୁଏ, ତେବେ ସେ ପତିତ ବୋଲି ଗଣ୍ୟ ହୁଅନ୍ତି ।

**ଶ୍ଲୋକ—ବ୍ରହ୍ମବର୍ଚସକାମସ୍ୟ କାର୍ଯ୍ୟଂ ବିପ୍ରସ୍ୟ ପଞ୍ଚମେ ରାଜ୍ଞୋ ବଳାର୍ଥିନଃ ଷଷ୍ଠେ ବୈଶ୍ୟସ୍ୟେହାର୍ଥିନୋଽଷ୍ଟମେ ।** ମନୁ ୨।୩୭

ଏହା ମନୁସ୍ମୃତିର ପ୍ରମାଣ । ଯାହାର ଶୀଘ୍ର ବିଦ୍ୟା, ବଳ ଓ ବୈଷୟିକ କାର୍ଯ୍ୟରେ ଇଚ୍ଛା ହେବ ଏବଂ ଶିଶୁର ଯଦି ଅଧ୍ୟୟନର ସାମର୍ଥ୍ୟ ଥାଏ, ତେବେ ଜନ୍ମ ବା ଗର୍ଭରୁ ପଞ୍ଚମ ବର୍ଷରେ ବ୍ରାହ୍ମଣର, ଜନ୍ମ ବା ଗର୍ଭରୁ ଷଷ୍ଠ ବର୍ଷରେ କ୍ଷତ୍ରିୟର ଏବଂ ଜନ୍ମ ବା ଗର୍ଭଠାରୁ ଅଷ୍ଟମ ବର୍ଷରେ ବୈଶ୍ୟ ସନ୍ତାନର ଯଜ୍ଞୋପବୀତ ସଂସ୍କାର କରିବେ । କିନ୍ତୁ ଏହି ସମସ୍ତ ବ୍ୟବସ୍ଥା ସମ୍ଭବ ହେବ ଯଦି ଶିଶୁର ମାତାପିତାଙ୍କର ବିବାହ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନପରେ ହୋଇଥାଏ, ତେବେ ସେମାନଙ୍କର ଏହିଭଳି ଶ୍ରେଷ୍ଠ ବୁଦ୍ଧି ଓ ଦ୍ରୁତ ସାମର୍ଥ୍ୟ ଲାଭ କରିଥିବା ଉତ୍କୃଷ୍ଟ ସନ୍ତାନ ଜାତ ହୋଇଥାଏ । ଶିଶୁର ଶରୀର ଓ ବୁଦ୍ଧି ଯେତେବେଳେ ଏଇଭଳି ଅଧ୍ୟୟନର ଯୋଗ୍ୟ ହେବ ସେତେବେଳେ ତାହାକୁ ଯଜ୍ଞୋପବୀତ ଦାନ କରିବ ।

**ଯଜ୍ଞୋପବୀତର ସମୟଃ**— ଉତ୍ତରାୟଣ ସୂର୍ଯ୍ୟରେ ଏବଂ— **ବସନ୍ତେ ବ୍ରାହ୍ମଣମୁପନୟେତ୍ । ଗ୍ରୀଷ୍ମେ ରାଜନ୍ୟମ୍ । ଶରଦି ବୈଶ୍ୟମ୍ । ସର୍ବକାଲମେକେ ।**
ଏଗୁଡ଼ିକ ଶତପଥ ବ୍ରାହ୍ମଣର ବଚନ ।

**ଅର୍ଥ**:— ବ୍ରାହ୍ମଣର ବସନ୍ତରେ, କ୍ଷତ୍ରିୟର ଗ୍ରୀଷ୍ମରେ ଏବଂ ବୈଶ୍ୟର ଶରତ୍ ଋତୁରେ ଯଜ୍ଞୋପବୀତ ସଂସ୍କାର କରିବେ ଅଥବା ସବୁ ଋତୁରେ ହିଁ ଯଜ୍ଞୋପବୀତ ହୋଇପାରେ ଏବଂ ପ୍ରାତଃକାଳ ଏହାର ସମୟ ।

## ବ୍ରତପାଳନ

**ପୟୋବ୍ରତୋ ବ୍ରାହ୍ମଣୋ ଯବାଗୂବ୍ରତୋ ରାଜନ୍ୟ ଆମିକ୍ଷାବ୍ରତୋ ବୈଶ୍ୟଃ ॥**
ଏହା ଶତପଥ ବ୍ରାହ୍ମଣର ଉକ୍ତି ॥ ଗୋ. ୨।୧୦।୭ର ଟୀକା ।

ଯେଉଁଦିନ ବାଳକର ଯଜ୍ଞୋପବୀତ କରିବାକୁ ଥିବ, ତାର ତିନିଦିନ ବା ଏକଦିନ ପୂର୍ବେ ଶିଶୁକୁ ଛୋଟିଆ ବା ଗୋଟିଏ ବ୍ରତ ପାଳନ କରିବାକୁ ହେବ । ସେହି ବ୍ରତରେ ବ୍ରାହ୍ମଣ ଶିଶୁ ଥରେ ବା ଏକାଧିକଥର ଦୁଗ୍ଧପାନ କରିବେ । କ୍ଷତ୍ରିୟ ଶିଶୁକୁ "ଯବାଗୁ" ଅର୍ଥାତ୍ ଯବଚୂର୍ଣ୍ଣ ଦାନାଯୁକ୍ତ ଗୁଡ଼ ସଂଯୁକ୍ତ ଜଳରେ ପାକ କରି ତରଳ ଅବସ୍ଥାରେ ପାନ କରାଇବେ । ବୈଶ୍ୟଶିଶୁ "ଆମିକ୍ଷା" ଅର୍ଥାତ୍ ଦୁଇଗୁଣ ଦଧି ଓ ଏକଗୁଣ ଦୁଧରେ ଯଥାଯୋଗ୍ୟ ଖଣ୍ଡ ( ଖଣ୍ଡ ଗୁଡ଼-

ଶକ୍ତ ଦାନାଯୁକ୍ତ ଗୁଡ଼ ) ଓ କେଶର ମିଶ୍ରିତ କରି ଲୁଗାରେ ଛାଣି ତାହା ପାନ କରିବେ । ଏହିଭଳି ବ୍ରତପାଳନ କରିବେ ଅର୍ଥାତ୍ ଯେତେବେଳେ ଶିଶୁର କ୍ଷୁଧାର ଉଦ୍ରେକ ହେବ ସେତେବେଳେ ଜନକଜନନୀ ଓ ଶିଶୁ ଏଇ ତିନ ପଦାର୍ଥ ସେବନ କରିବେ । ଅନ୍ୟ କୌଣସି ପଦାର୍ଥ ପାନ ବା ଆହାର କରିବେ ନାହିଁ ।

## ବିଧି

ଯେଉଁଦିନ ଉପନୟନ ହେବ ତାହାର ପୂର୍ବଦିନ ସମସ୍ତ ସାମଗ୍ରୀ ସଂଗ୍ରହ କରି ଯଥାବିଧି ଶୁଦ୍ଧ କରିନେବେ । ସେହିଦିନ ଈଶ୍ୱର ସ୍ତୁତିପ୍ରାର୍ଥନା ଉପାସନାଠାରୁ ବାମଦେବ୍ୟ-ଗାନ ( ଏହି ପୁସ୍ତକର ଆରମ୍ଭ ଦେଖନ୍ତୁ ) ପର୍ଯ୍ୟନ୍ତ ଲିଖିତ ବିଧି ଅନୁଯାୟୀ ସମସ୍ତ ସାମଗ୍ରୀ କୁଣ୍ଡ ନିକଟରେ ରଖିବେ । ପ୍ରାତଃକାଳରେ ଶିଶୁକୁ କ୍ଷୌର କରାଇ ଶୁଦ୍ଧ ଜଳରେ ସ୍ନାନ କରାଇବେ ଓ ଉତ୍ତମ ବସ୍ତ୍ର ପରିଧାନ କରାଇବେ । ପିତା ବା ଆଚାର୍ଯ୍ୟ ଶିଶୁକୁ ଯଜ୍ଞମଣ୍ଡପରେ ମିଷ୍ଟାନ୍ନାଦି ଭୋଜନ କରାଇ ବେଦୀର ପଶ୍ଚିମଦିଗରେ ପୂର୍ବାଭିମୁଖେ ସୁନ୍ଦର ଆସନରେ ବସାଇବେ । ଶିଶୁର ପିତା ୨୫ ପୃଷ୍ଠାରେ ଲିଖିତ ବିଧି ଅନୁସାରେ "ଋତ୍ୱିଗ୍‌ବରଣ" କରିବେ ଏବଂ ୨୬-୨୭ ପୃଷ୍ଠାରେ ଲିଖିତ ବିଧି ଅନୁସାରେ ଋତ୍ୱିଗଗଣ ମଧ୍ୟ ପୂର୍ବୋକ୍ତ ପ୍ରକାରରେ ସ୍ୱ ସ୍ୱ ଆସନରେ ଉପବେଶନ କରି ଯଥାବିଧି 'ଆଚମନ' ଓ "ଅଙ୍ଗସ୍ପର୍ଶ" କରିବେ ।

## ଶିଶୁର ପ୍ରାର୍ଥନା

ତତ୍ପରେ କର୍ମକର୍ତ୍ତା ଶିଶୁର ମୁଖରେ ନିମ୍ନ ବାକ୍ୟ ଉଚ୍ଚାରଣ କରାଇବେ ।

ଶିଶୁ – **ବ୍ରହ୍ମଚର୍ଯ୍ୟମାଗାମ୍, ବ୍ରହ୍ମଚାର୍ଯ୍ୟସାନି ॥**

ପାର.ଗୃ. ୨।୨।୭

## ବସ୍ତ୍ର ପରିଧାନ

ଆଚାର୍ଯ୍ୟ * ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରି ଶିଶୁକୁ ସୁନ୍ଦର ବସ୍ତ୍ର ଓ ଉପବସ୍ତ୍ର ପରିଧାନ କରାଇବେ— ଆଚାର୍ଯ୍ୟ – **ଓଁ ୟେନେନ୍ଦ୍ରାୟ ବୃହସ୍ପତିର୍ବାସଃ ପର୍ଯ୍ୟଦଧାଦମୃତମ୍ । ତେନ ତ୍ୱା ପରିଦଧାମ୍ୟାୟୁଷେ ଦୀର୍ଘାୟୁତ୍ୱାୟ ବଳାୟ ବର୍ଚସେ ॥**

ପାର.ଗୃ. ୨।୨।୭

---

( * ଆଚାର୍ଯ୍ୟ ତାହାଙ୍କୁ କହନ୍ତି ଯେ ସାଙ୍ଗୋପାଙ୍ଗ ବେଦର ଶବ୍ଦ, ଅର୍ଥ, ସମ୍ବନ୍ଧ ଓ କ୍ରିୟାର ଜ୍ଞାତା, ଛଳନା ଓ କପଟତାରହିତ, ଯେ ଅତି ପ୍ରେମ ସହିତ ସମସ୍ତଙ୍କୁ ବିଦ୍ୟା ଦାନ କରନ୍ତି, ଯେ ଶରୀର ମନ ଓ ଧନଦ୍ୱାରା ସକଳର ସୁଖବୃଦ୍ଧି ପାଇଁ ତତ୍ପର, ଯେ ମହାନୁଭବ, ଯେ କାହାପ୍ରତି ପକ୍ଷପାତ କରନ୍ତି ନାହିଁ ଯେ ସତ୍ୟୋ-ପଦେଷ୍ଟା, ସମସ୍ତଙ୍କର ହିତୈଷୀ, ଧର୍ମାତ୍ମା ଓ ଜିତେନ୍ଦ୍ରିୟ ଅଟନ୍ତି । )

ଏହି ମନ୍ତ୍ର ବୋଲିଲେ ବାଳକ ସୁନ୍ଦର ବସ୍ତ୍ର ଓ ଉପବସ୍ତ୍ର ପିନ୍ଧି ଆଚାର୍ଯ୍ୟଙ୍କ ସମ୍ମୁଖରେ ଉପବେଶନ କରିବେ ଆଚାର୍ଯ୍ୟ ନିଜ ହସ୍ତରେ ଯଜ୍ଞୋପବୀତ ନେଇ ନିମ୍ନୋକ୍ତ ମନ୍ତ୍ର ପାଠ କରିବେ—

## ଯଜ୍ଞୋପବୀତ ପ୍ରଦାନ

ଆଚାର୍ଯ୍ୟ—**ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ ପ୍ରଜାପତେର୍ଯତ୍ ସହଜଂ ପୁରସ୍ତାତ୍ । ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚ ଶୁଭ୍ରଂ ଯଜ୍ଞୋପବୀତଂ ବଲମସ୍ତୁ ତେଜଃ ।୧। ଯଜ୍ଞୋପବୀତମସି ଯଜ୍ଞସ୍ୟ ତ୍ୱା ଯଜ୍ଞୋପବୀତେ-ନୋପନହ୍ୟାମି ।।୨।।**

ପାର ଗୃ. ୨।୨।୧୧ ॥

ଏବଂ ଶିଶୁର ବାମସ୍କନ୍ଧ ଉପର କଂଠପାର୍ଶ୍ୱର ଯଜ୍ଞୋପବୀତର ମଧ୍ୟଦେଇ ମସ୍ତକବାହାର କରି ଦକ୍ଷିଣ ହସ୍ତର ନିମ୍ନଦେଶରେ ବାହାର କରି କଟିଦେଶ ପର୍ଯ୍ୟନ୍ତ ଧାରଣ କରାଇବେ ।

ତତ୍ପରେ ଆଚାର୍ଯ୍ୟ ଶିଶୁକୁ ନିଜର ଦକ୍ଷିଣପାର୍ଶ୍ୱରେ ଏକସଙ୍ଗରେ ଉପବେଶନ କରାଇ ଈଶ୍ୱରସ୍ତୁତି; ପ୍ରାର୍ଥନୋ-ପାସନା, ସ୍ୱସ୍ତିବାଚନ, ଓ ଶାନ୍ତିପ୍ରକରଣ ପାଠ ସମାପ୍ତ କରିବାପରେ "ଅଗ୍ନ୍ୟାଧାନ, ସମିଧାଦାନ ଓ ପଞ୍ଚଘୃତାହୁତି" ପ୍ରଦାନ କରି ୩୦ ପୃଷ୍ଠାରେ ଲିଖିତ ( ଓଁ ଅଦିତେ ଅନୁ-ମନ୍ୟସ୍ୱ ) ଇତ୍ୟାଦି ପୂର୍ବୋକ୍ତ ଚାରି ମନ୍ତ୍ରରେ ପୂର୍ବୋକ୍ତ ରୀତିରେ କୁଣ୍ଡର ଚତୁର୍ଦ୍ଦିଗରେ "ଜଳସିଞ୍ଚନ" କରିବା ପରେ ଆଜ୍ୟାହୁତି ଆରମ୍ଭ କରିବେ ।

ହୋମାଗ୍ନିର ପ୍ରଦୀପ୍ତ ସମିଧା ପ୍ରତି ଲକ୍ଷ୍ୟକରି ଆଜ୍ୟ-ସ୍ଥାଳୀରୁ ସ୍ରୁମଦ୍ୱାରା ଘୃତନେଇ ୩୧ ପୃଷ୍ଠାରୁ ୩୨ ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ଆଘାରାବାଜ୍ୟଭାଗାହୁତି ୪ ( ଚାରି ), ବ୍ୟାହୃତି ଆହୁତି ୪ ( ଚାରି ) ଏବଂ ୩୪ ପୃଷ୍ଠାରୁ ୩୬ ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ଅଷ୍ଟାଜ୍ୟାହୁତି ୮ ( ଆଠ ), ଏହି ତିନୋଟିରେ ମୋଟ ୧୬ ( ଷୋଳଟି ) ଘୃତାହୁତି ପ୍ରଦାନ କରିବେ ।

ତତ୍ପରେ ୩୩ ପୃଷ୍ଠାରୁ ୩୪ ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ଓଁ ଭୂର୍ଭୁବଃସ୍ୱଃ । ଅଗ୍ନଆୟୂଂଷି ଇତ୍ୟାଦି ପ୍ରଧାନ ହୋମର ମନ୍ତ୍ରରେ ଶିଶୁଦ୍ୱାରା ( ବିଶେଷଭାବରେ ପ୍ରସ୍ତୁତ ) ଶାକଲ୍ୟର ଚତୁରାଜ୍ୟାହୁତି ପ୍ରଦାନ କରାଇ ପରେ ନିମ୍ନଲିଖିତ ୫ଟି ମନ୍ତ୍ରରେ ୫ଟି ଆଜ୍ୟାହୁତି ପ୍ରଦାନ କରାଇବେ ।

## ପଞ୍ଚାଜ୍ୟାହୁତି

ଶିଶୁ—**ଓ୩ମ୍ ଅଗ୍ନେ ବ୍ରତପତେ ବ୍ରତଂ ଚରିଷ୍ୟାମି ତତ୍ତେ ପ୍ରବ୍ରବୀମି ତଚ୍ଛକେୟମ୍ । ତେନର୍ଧ୍ୟାସମି-ଦମହମନୃତାତ୍ ସତ୍ୟମୁପୈମିସ୍ୱାହା ॥ ଇଦଂ-ଅଗ୍ନୟେ-ଇଦନ୍ନ ମମ ॥୧॥ ଓଁ ବାୟୋ ବ୍ରତପତେ** * **ସ୍ୱାହା ।**

( ....... * ଏହାପରେ "ବ୍ରତଂଚରିଷ୍ୟାମି" ଇତ୍ୟାଦି ସମ୍ପୂର୍ଣ୍ଣ ମନ୍ତ୍ର ବୋଲିବାକୁ ହେବ । )

ଇଦଂ ବାୟବେ—ଇଦନ୍ନ ମମ ॥୨॥ ଓଁମ୍ ସୂର୍ଯ୍ୟ ବ୍ରତପତେ ...... * ସ୍ୱାହା ॥ ଇଦଂ ସୂର୍ଯ୍ୟାୟ— ଇଦନ୍ନ ମମ ॥୩॥ ଓଁମ୍ ଚନ୍ଦ୍ରବ୍ରତପତେ ...... * ସ୍ୱାହା ॥ ଇଦଂ ଚନ୍ଦ୍ରାୟ—ଇଦନ୍ନ ମମ ॥୪॥ ଓଁମ୍ ବ୍ରତାନାଂ ବ୍ରତପତେ ...... * ସ୍ୱାହା ॥ ଇଦଂ ଇନ୍ଦ୍ରାୟ ବ୍ରତପତୟେ ଇଦନ୍ନ ମମ ॥୫॥

ମଂ.ବ୍ରା. ୧।୬।୯-୧୩ ॥ ଗୋଭି· ୨।୧୦।୧୬

ତତ୍ପରେ ଶିଶୁଦ୍ୱାରା ବ୍ୟାହୃତି ଆହୃତି ୪ ( ଚାରି ), ସ୍ୱିଷ୍ଟକୃତ୍ ଆହୃତି ୧ ( ଏକ ) ଏବଂ ପ୍ରାଜାପତ୍ୟାହୁତି୧ (ଏକ) ଏବଂ ଛଅଟି ଆହୃତି ଅର୍ଥାତ୍ ସର୍ବସମେତ ୧୫ ( ପନ୍ଦରଟି ) ଆହୃତି ପ୍ରଦାନ କରାଇବେ ।

## ଶିଶୁର ପରିଚୟ

ତତ୍ପରେ ଆଚାର୍ଯ୍ୟ ଯଜ୍ଞକୁଣ୍ଡର ଉତ୍ତର ଦିଗରେ ପୂର୍ବାଭିମୁଖରେ ଏବଂ ଶିଶୁ ଆଚାର୍ଯ୍ୟଙ୍କର ସମ୍ମୁଖରେ ପଶ୍ଚିମାଭିମୁଖରେ ଉପବେଶନ କରିବେ । ଆଚାର୍ଯ୍ୟ ଶିଶୁ ପ୍ରତି ଦୃଷ୍ଟିପାତ କରି ନିମ୍ନୋକ୍ତ ମନ୍ତ୍ର ଜପ କରିବେ—

...... * ଏହାପରେ "ବ୍ରତଂ ଚରିଷ୍ୟାମି" ଇତ୍ୟାଦି ସମ୍ପୂର୍ଣ୍ଣ ମନ୍ତ୍ର ବୋଲିବାକୁ ହେବ ।



ଆଚାର୍ଯ୍ୟ— ଓଁ ଆଗନ୍ତ୍ରା ସମଗନ୍ମହି ପ୍ର ସୁମର୍ତ୍ତ୍ୟଂ ଯୁଯୋତନ । ଅରିଷ୍ଟାଃ ସଂଚରେମହି ସ୍ୱସ୍ତି ଚରତା- ଦୟମ୍ ॥

ମଂ. ବ୍ରା. ୧।୬।୧୪ ॥ ଗୋଭିଲ୍ଂ ୨।୧୦।୨୦-୨୨

ଶିଶୁ ଆଚାର୍ଯ୍ୟଙ୍କୁ କହିବ— (ମାଣବକ ବାକ୍ୟମ୍)

ଶିଶୁ—ଓଁ ବ୍ରହ୍ମଚର୍ଯ୍ୟମାଗାମୁପ ମା ନୟସ୍ୱ ॥

ମଂ.ବ୍ରା. ୧।୬।୧୬ ॥ ଗୋଭିଲ୍ଂ ୨।୧୦।୨୦-୨୨

* ଆଚାର୍ଯ୍ୟ—କୋ ନାମାସି ॥

ମନ୍ତ୍ର ବ୍ରା. ୧।୬।୧୭ ॥ ଗୋଭିଲ ୨।୧୦।୨୨

● ଶିଶୁ—ଏତନ୍ନାମାସ୍ମି ॥

ମଂ.ବ୍ରା. ୧।୬।୧୮

## ପ୍ରଥମ ଜଳ-ଅଞ୍ଜଳି

ତତ୍ପରେ ଆଚାର୍ଯ୍ୟ ନିମ୍ନୋକ୍ତ ତିନୋଟି ମନ୍ତ୍ର ପାଠ କରି ଶୁଦ୍ଧ ଜଳଦ୍ୱାରା ବଟୁକର ଦକ୍ଷିଣ ହସ୍ତାଞ୍ଜଳି ପୂର୍ଣ୍ଣ କରିବେ—

ଆଚାର୍ଯ୍ୟ—ଓଁ ଆପୋ ହି ଷ୍ଠା ମୟୋଭୁବସ୍ତା ନଃ ଊର୍ଜେ ଦଧାତନ । ମହେ ରଣାୟ ଚକ୍ଷସେ ॥୧॥

---

* ଆଚାର୍ଯ୍ୟ ପଚାରିବେ—ତୁମ ନାମ କଣ ?

● ଶିଶୁକହିବ—ମୋନାମ (ଅମୁକ)



ଯୋ ବଃ ଶିବତମୋ ରସସ୍ତସ୍ୟ ଭଜୟତେହ ନଃ
ଉଶତୀରିବ ମାତରଃ ॥୨॥
ତସ୍ମା ଅରଂ ଗମାମ ବୋ ଯସ୍ୟ କ୍ଷୟାୟ ଜିନ୍ୱଥ ।
ଆପୋ ଜନୟଥା ଚ ନଃ ॥୩॥

ଋ. ମଂ. ୧୦। ସୂ ୯।ମଂ ୧-୩।ପାର. ୨।୨।୧୪

ତତ୍ପରେ ଆଚାର୍ଯ୍ୟ ସ୍ୱୀୟ ହସ୍ତାଞ୍ଜଳି (ଶୁଦ୍ଧଜଳଦ୍ୱାରା) ପୂର୍ଣ୍ଣ କରି ନିମ୍ନୋକ୍ତ ମନ୍ତ୍ର ପାଠ ପୂର୍ବକ ସ୍ୱୀୟ ଅଞ୍ଜଳିର ଜଳ ଶିଶୁର ଅଞ୍ଜଳିରେ ପ୍ରଦାନ କରିବେ—

ଓଁ ତତ୍ସବିତୁର୍ବୃଣୀମହେ ବୟଂ ଦେବସ୍ୟ ଭୋଜନମ୍ ।
ଶ୍ରେଷ୍ଠଂ ସର୍ବଧାତମଂ ତୁରଂ ଭଗସ୍ୟ ଧୀମହି ॥

ଋ. ମଂ. ୫।ସୂ ୮୨।ମଂ ୧।ଆଶ୍ୱ. ୧।୨୦।୪

ତତ୍ପରେ ଆଚାର୍ଯ୍ୟ ବାଳକର ହସ୍ତ ଅଙ୍ଗୁଷ୍ଠ ସହିତ ଧାରଣ ପୂର୍ବକ ନିମ୍ନୋକ୍ତ ମନ୍ତ୍ର ପାଠକରି ବାଳକର ଅଞ୍ଜଳିର ଜଳ ନିମ୍ନସ୍ଥ ପାତ୍ରରେ ନିକ୍ଷେପ କରିବେ—

ଆଚାର୍ଯ୍ୟ—ଓଁ ଦେବସ୍ୟ ତ୍ୱା ସବିତୁଃ ପ୍ରସବେଽ-ଶ୍ୱିନୋର୍ବାହୁଭ୍ୟାଂ ପୂଷ୍ଣୋ ହସ୍ତାଭ୍ୟାଂ ହସ୍ତଂ ଗୃହ୍ଣାମ୍ୟସୌ ॥ *

ସ. ଅ. ୫।ମଂ ୨୬

* "ଅସୌ" ଏହି ପଦ ସ୍ଥାନରେ ଏବଂ ବାଳକର ସମ୍ବୋଧନାନ୍ତ ନାମୋଚ୍ଚାରଣ କରିବେ ।

## ଦ୍ୱିତୀୟ ଜଳ-ଅଞ୍ଜଳି

ଠିକ୍ ଏହିପରି ଦ୍ୱିତୀୟଥର ଆଗୃର୍ଯ୍ୟ ପୂର୍ବୋକ୍ତ ମନ୍ତ୍ରରେ ପ୍ରଥମେ ବାଳକର ଅଞ୍ଜଳି ପୂର୍ଣ୍ଣ କରିବେ । ତତ୍ପରେ ସ୍ୱୀୟ ଅଞ୍ଜଳି ପୂର୍ଣ୍ଣ କରି ପୂର୍ବୋକ୍ତ ମନ୍ତ୍ରରେ ବାଳକର ଅଞ୍ଜଳିରେ ତାହା ପ୍ରଦାନ କରିବେ ଏବଂ ତାହାର ଅଙ୍ଗୁଷ୍ଠସହ ହସ୍ତ ଧାରଣପୂର୍ବକ ନିମ୍ନୋକ୍ତ ମନ୍ତ୍ର ପାଠ କରି ବାଳକର ଅଞ୍ଜଳିର ଜଳ ନିମ୍ନସ୍ଥ ପାତ୍ରରେ ନିକ୍ଷେପ କରିବେ—

ଆଗୃର୍ଯ୍ୟ - ଓଁ ସବିତା ତେ ହସ୍ତମଗ୍ରଭୀତ୍, ଅସୌ

ଆ. ୧।୨୦।୫

## ତୃତୀୟ ଜଳ—ଅଞ୍ଜଳି

ଠିକ୍ ଏହିପରି ତୃତୀୟଥର ଆଗୃର୍ଯ୍ୟ ପୂର୍ବୋକ୍ତ ମନ୍ତ୍ରରେ ପ୍ରଥମେ ବାଳକର ଅଞ୍ଜଳି ପୂର୍ଣ୍ଣ କରିବେ । ସ୍ୱୀୟ ଅଞ୍ଜଳି ପୂର୍ଣ୍ଣ କରି ପୂର୍ବୋକ୍ତ ମନ୍ତ୍ରରେ ବାଳକର ଅଞ୍ଜଳିରେ ତାହା ପ୍ରଦାନ କରିବେ ଏବଂ ତାହାର ଅଙ୍ଗୁଷ୍ଠ ସହ ହସ୍ତଧାରଣ ପୂର୍ବକ ନିମ୍ନୋକ୍ତ ମନ୍ତ୍ର ପାଠକରି ବାଳକର ଅଞ୍ଜଳିର ଜଳ ନିମ୍ନସ୍ଥ ପାତ୍ରରେ ନିକ୍ଷେପ କରିବେ—

ଆଗୃର୍ଯ୍ୟ—ଓଁ ଅଗ୍ନିରାଗୃର୍ଯ୍ୟସ୍ତବ, ଅସୌ ॥ *

ମ°. ବ୍ରା° ୧।୬।୧୫।ଆ ୧।୨୦।୫

---

* "ଅସୌ" ଏହି ପଦ ସ୍ଥାନରେ ସର୍ବତ୍ର ବାଳକର ସମ୍ବୋଧନାନ୍ତ ନାମୋଚ୍ଚାରଣ କରିବେ ।

## ସୂର୍ଯ୍ୟପ୍ରଦର୍ଶନ

ତତ୍ପରେ ଆଚାର୍ଯ୍ୟ ବାହାରକୁ ଆସି ବାଳକ ସହିତ ସୂର୍ଯ୍ୟଙ୍କର ସମ୍ମୁଖରେ ଦଣ୍ଡାୟମାନ ହୋଇ ନିମ୍ନୋକ୍ତ ମନ୍ତ୍ର—

ଆଚାର୍ଯ୍ୟ—**ଓଁ ଦେବ ସବିତରେଷ ତେ ବ୍ରହ୍ମଚାରୀ ତଂ ଗୋପାୟ ସମାମୃତ ॥**

ଆଶ୍ୱ. ଗୃ. ୧।୨୦।୬

ଏହି ଗୋଟିକ ମନ୍ତ୍ର ଏବଂ ୯୪ ପୃଷ୍ଠାରେ ଲିଖିତ "ଓଁ ତଚ୍ଚକ୍ଷୁର୍ଦେବହିତଂ." ଏହି ବିଶିଷ୍ଟ ମନ୍ତ୍ର ପାଠ କରି ବାଳକକୁ ସୂର୍ଯ୍ୟାବଲୋକନ କରାଇବେ । †

## ଆଚାର୍ଯ୍ୟ ପ୍ରଦକ୍ଷିଣ

ତତ୍ପରେ ଆଚାର୍ଯ୍ୟ ବାଳକ ସହିତ ଯଜ୍ଞମଣ୍ଡପକୁ ପ୍ରତ୍ୟାଗମନ ପୂର୍ବକ କୁଣ୍ଡର ଉତ୍ତର ଦିଗରେ ଉପବେଶନ କରି ନିମ୍ନୋକ୍ତ ମନ୍ତ୍ର ପାଠ କରିବେ—

ଆଚାର୍ଯ୍ୟ—**ଓଁ ଯୁବା ସୁବାସାଃ ପରିବୀତ ଆଗାତ୍ସ ଉ ଶ୍ରେୟାନ୍ ଭବତି ଜାୟମାନଃ ॥**

ଋ. ମଂ. ୩।୩।ସୂକ୍ତ୮।ମଂ୪॥ଆ. ୧।୨୦।୮

**ଓଁ ସୂର୍ଯ୍ୟସ୍ୟାବୃତମନ୍ୱାବର୍ତ୍ତସ୍ୱ, ଅସୌ * ॥**

ଗୋଭିଲ ୨।୧୦।୨୮

---

† ପାର. ଗୃ. ସୂ. ୨।୨।୧୫

* ସଂସ୍କାର ଚନ୍ଦ୍ରିକାରେ "ସମାବୃତନ୍ତୁ" ପାଠଅଛି ।

ବାଳକ ଆଚାର୍ଯ୍ୟଙ୍କୁ ପ୍ରଦକ୍ଷିଣ କରି ତାଙ୍କ ସମ୍ମୁଖରେ ଉପବେଶନ କରିବେ ।

## ଅଙ୍ଗସ୍ପର୍ଶ

ତତ୍ପରେ ଆଚାର୍ଯ୍ୟ ସ୍ୱୀୟ ଦକ୍ଷିଣ ହସ୍ତଦ୍ୱାରା ବାଳକର ଦକ୍ଷିଣସ୍କନ୍ଧ ସ୍ପର୍ଶ କରିବେ ଏବଂ ଉପରେ ବସ୍ତ୍ରଦ୍ୱାରା ସ୍ୱୀୟହସ୍ତ ଆଚ୍ଛାଦିତ କରି, ନିମ୍ନୋକ୍ତ ମନ୍ତ୍ର ପାଠ କରିବେ—

ଆଚାର୍ଯ୍ୟ—**ଓଁ ପ୍ରାଣାନାଂ ଗ୍ରନ୍ଥିରସି ମା ବିସ୍ରସୋଽନ୍ତକ ଇଦଂତେ ପରିଦଦାମି, ଅମୁମ୍ * ॥୧॥**

ତାପରେ ନିମ୍ନୋକ୍ତ ମନ୍ତ୍ର ପାଠ କରି ଉଦର ସ୍ପର୍ଶ କରିବେ—

**ଓଁ ଅହୁର ଇଦଂ ତେ ପରିଦଦାମି ଅମୁମ୍ * ॥୨॥**

ତାପରେ ନିମ୍ନୋକ୍ତ ମନ୍ତ୍ର ପାଠ କରି ହୃଦୟ ସ୍ପର୍ଶ କରିବେ—

**ଓଁ କୃଶନ ଇଦଂ ତେ ପରିଦଦାମି, ଅମୁମ୍ * ॥୩॥**

ତାପରେ ନିମ୍ନୋକ୍ତ ମନ୍ତ୍ର ପାଠ କରିଦକ୍ଷିଣ ସ୍କନ୍ଧ ସ୍ପର୍ଶ କରିବେ—

**ଓଁ ପ୍ରଜାପତୟେ ତ୍ୱା ପରିଦଦାମି, ଅସୌ * ॥୪॥**

ତାପରେ ନିମ୍ନୋକ୍ତ ମନ୍ତ୍ର ବୋଲି ବାମ ହସ୍ତରେ ବାମ ସ୍କନ୍ଧ ସ୍ପର୍ଶ କରିବେ—

**ଓଁ ଦେବାୟ ତ୍ୱା ସବିତ୍ରେ ପରିଦଦାମି, ଅସୌ * ॥୫॥**

ମଂ. ବ୍ରା. ୧।୬।୨୧-୨୪ ॥ ଗୋଭି· ୨।୧୦।୨୮,୩୪

* "ଅମୁମ୍" ଓ "ଅସୌ" ଏହି ଦୁଇପଦ ସ୍ଥାନରେ ସର୍ବତ୍ର ବାଳକର ନାମୋଚ୍ଚାରଣ କରିବେ ।

ଏବଂ ତାପରେ ବାଳକର ହୃଦୟୋପରେ ହସ୍ତ ସ୍ଥାପନ କରି ନିମ୍ନୋକ୍ତ ମନ୍ତ୍ର ପାଠ କରିବେ—

ଆଚାର୍ଯ୍ୟ—ଓଁ ତଂ ଧୀରାସଃ କବୟ ଉନ୍ନୟନ୍ତି ସ୍ୱାଧ୍ୟୈାଽ ମନସା ଦେବୟନ୍ତଃ ॥

## ଗୁରୁ ଓ ଶିଷ୍ୟର ପ୍ରତିଜ୍ଞା

ତତ୍ପରେ ଆଚାର୍ଯ୍ୟ ବାଳକର ସମ୍ମୁଖରେ ରହି, ତାର ଦକ୍ଷିଣ ହୃଦୟୋପରେ ହସ୍ତ ସ୍ଥାପନ କରି ନିମ୍ନୋକ୍ତ ପ୍ରତିଜ୍ଞା ମନ୍ତ୍ର ପାଠ କରିବେ ଏବଂ ପରେ ବାଳକକୁ ତାହା ବୋଲିବାକୁ ଆଦେଶ ଦେବେ—

ଆଚାର୍ଯ୍ୟ —ଓଁ ମମ ବ୍ରତେ ତେ ହୃଦୟଂ ଦଧାମି ମମ ଚିତ୍ତମନୁଚିତ୍ତଂ ତେ ଅସ୍ତୁ । ମମ ବାଚମେକମନା ଜୁଷସ୍ୱ ବୃହସ୍ପତିଷ୍ଟ୍ୱା ନିଯୁନକ୍ତୁ ମହ୍ୟମ୍ ॥ ପାର. କା. ୨।କଂ. ୨।୧୬

ଅର୍ଥାତ୍ ହେ ଶିଷ୍ୟ ବାଳକ ! ମୁଁ ତୁମର ହୃଦୟକୁ ମୋର ଅଧୀନ କରୁଛି । ତୁମର ଚିତ୍ତ ସର୍ବଦା ମୋ ଚିତ୍ତର ଅନୁକୂଳ ଥାଉ । ତୁମେ ଏକାଗ୍ରଚିତ୍ତରେ ପ୍ରୀତିର ସହିତ ମୋର ବାଣୀ ଶ୍ରବଣ କରି ତାହାର ମର୍ମ ଉପଲବ୍ଧି କର । ଆଜିଠାରୁ ତୁମର ପ୍ରତିଜ୍ଞାର ଅନୁକୂଳ ବୃହସ୍ପତି, ପରମାତ୍ମା ତୁମକୁ ମୋ ସହିତ ଯୁକ୍ତ କରନ୍ତୁ ।

ଏହିପରି ଶିଷ୍ୟ ମଧ୍ୟ ଆଚାର୍ଯ୍ୟଙ୍କ ନିକଟରେ ପ୍ରତିଜ୍ଞା କରିବେ—ହେ ଆଚାର୍ଯ୍ୟ ! ଆପଣଙ୍କ ହୃଦୟକୁ ମୁଁ ସ୍ୱୀୟ କର୍ମ ଅର୍ଥାତ୍ ଉତ୍ତମ ଶିକ୍ଷା ଓ ବିଦ୍ୟାର ଉନ୍ନତିକଳ୍ପେ


ଧାରଣ କରୁଅଛି । ମୋର ଚିତ୍ତ ସର୍ବଦା ଆପଣଙ୍କ ଚିତ୍ତର ଅନୁକୂଳ ରହୁ । ଆପଣ ମୋର ବାଣୀ ଏକାଗ୍ରଚିତ୍ତରେ ଶ୍ରବଣ କରିବେ ଏବଂ ପରମାତ୍ମା ମୋପାଇଁ ସର୍ବଦା ଆପଣଙ୍କୁ ନିଯୁକ୍ତ ରଖନ୍ତୁ । ଏହିଭଳି ଉଭୟେ ପ୍ରତିଜ୍ଞା କରିବେ ।

## ଆଶୀର୍ବାଦ

ଆଚାର୍ଯ୍ୟୋକ୍ତିଃ—**କୋ ନାମାଽସି** ॥ ତୁମର ନାମ କଣ ?
ବାଳକୋକ୍ତିଃ – **ଅହମ୍ଭୋଃ** ★ ॥ ମୋର ନାମ ( ଅମୁକ, ) ବୋଲି ଉତ୍ତର ଦେବେ ।
ଆଚାର୍ଯ୍ୟଃ—**କସ୍ୟ ବ୍ରହ୍ମଚାର୍ଯ୍ୟସି** ॥ ତୁ କାହାର ବ୍ରହ୍ମଚାରୀ ?
ବାଳକଃ – **ଭବତଃ** ॥ ଆପଣଙ୍କର ।

ପାର· କା. ୨ କ· ୨।୧୭-୨୦

ଆଚାର୍ଯ୍ୟ ବାଳକର ରକ୍ଷା ନିମିତ୍ତ ନିମ୍ନୋକ୍ତ ମନ୍ତ୍ର ଉଚ୍ଚାରଣ କରିବେ –

ଆଚାର୍ଯ୍ୟ – **ଇନ୍ଦ୍ରସ୍ୟ ବ୍ରହ୍ମଚାର୍ଯ୍ୟସ୍ୟଗ୍ନି ରାଚାର୍ଯ୍ୟସ୍ତବାହ-ମାଚାର୍ଯ୍ୟସ୍ତବ ଅସୌ** ✝ ॥

ପାର. କା. ୨।କ.୨।୨୧

ପୁନଶ୍ଚ ଆଚାର୍ଯ୍ୟ ବାଳକର ରକ୍ଷା ନିମିତ୍ତ ନିମ୍ନୋକ୍ତ ମନ୍ତ୍ର ପାଠ କରି ବାଳକକୁ ଏହିଭଳି ଉପଦେଶ ଦେବେ ଯେ, ତୁମେ ପ୍ରାଣ ଆଦି ବିଦ୍ୟା ଶିକ୍ଷାପାଇଁ ଯତ୍ନବାନ ହୁଅ—

---

★ଏହି ଶବ୍ଦପରେ କହିବାକୁ ହେବ—"ଏତନ୍ନାମାସ୍ମି" ଯଥା—"ଯଜ୍ଞଦତ୍ତ ନାମାସ୍ମି"

✝ "ଅସୌ" ଏହି ପଦ ସ୍ଥାନରେ ବାଳକର ନାମୋଚ୍ଚାରଣ କରିବେ ।

ଆଚାର୍ଯ୍ୟ—ଓଁ କସ୍ୟ ବ୍ରହ୍ମଚାର୍ଯ୍ୟସି ପ୍ରାଣସ୍ୟ ବ୍ରହ୍ମଚାର୍ଯ୍ୟସି କସ୍ତ୍ୱା କମୁପନୟତେ କାୟ ତ୍ୱା ପରିଦଦାମି ॥୧॥ ଆଶ୍ୱ. ୧।୨୦।୭ ॥

ଓଁ ପ୍ରଜାପତୟେ ତ୍ୱା ପରିଦଦାମି । ଦେବାୟ ତ୍ୱା ସବିତ୍ରେ ପରିଦଦାମି । ଅଦ୍‌ଭ୍ୟସ୍ତ୍ୱୌଷଧୀଭ୍ୟଃ ପରିଦଦାମି । ଦ୍ୟାବାପୃଥିବୀଭ୍ୟାଂ ତ୍ୱା ପରିଦଦାମି । ବିଶ୍ୱେଭ୍ୟସ୍ତ୍ୱା ଦେବେଭ୍ୟଃ ପରିଦଦାମି । ସର୍ବେଭ୍ୟସ୍ତ୍ୱା ଭୂତେଭ୍ୟଃ ପରିଦଦାମ୍ୟରିଷ୍ଟ୍ୟୈ ॥୨॥ ପାର. କା. ୨।୨।୨୧

ଏହିଠାରେ ହିଁ ଉପନୟନ ସଂସ୍କାର ପୂର୍ଣ୍ଣ ହେଲା । ଯଦି ଏହିଦିନ ପିତା ଓ ଆଚାର୍ଯ୍ୟ ବାଳକର ବେଦାରମ୍ଭ ସଂସ୍କାର କରିବାକୁ ଇଚ୍ଛା କରନ୍ତି ତେବେ ଏହିଦିନହିଁ କରିବେ । ଯଦି ଅନ୍ୟଦିନ କରିବାକୁ ଇଚ୍ଛାଥାଏ ତେବେ ୩୭ପୃଷ୍ଠାରୁ ୩୮ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ଆର୍ଚ୍ଚିକ ଓ ମହାବାମଦେବ୍ୟ ଗାନ କରି ସଂସ୍କାରରେ ଯୋଗଦାନ କରିଥିବା ମହିଳା ମାନଙ୍କୁ ବାଳକର ମାତା ଓ ପୁରୁଷ ମାନଙ୍କୁ ବାଳକର ପିତା ଆଦର ସମ୍ମାନ କରି ବିଦାୟଦାନ କରିବେ । ମାତା, ପିତା, ଆଚାର୍ଯ୍ୟ, ଆତ୍ମୀୟ, ବନ୍ଧୁ, ବ୍ରାହ୍ମଣ ପ୍ରଭୃତି ସମସ୍ତେ ମିଳିତ ଭାବରେ ନିମ୍ନଲିଖିତ ମନ୍ତ୍ରରେ ଆଶୀର୍ବାଦ ପ୍ରଦାନ କରି ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କରିବେ—

ସମସ୍ତେ—ଓଁ ତ୍ୱଂ ଜୀବ ଶରଦଃ ଶତଂ ବର୍ଦ୍ଧମାନଃ । ଆୟୁଷ୍ମାନ୍ ତେଜସ୍ୱୀ ବର୍ଚ୍ଚସ୍ୱୀ ଭୂୟାଃ ॥

ଇତ୍ୟୁପନୟନ ସଂସ୍କାର ବିଧିଃ ସମାପ୍ତଃ

---

# ଅଥ ବେଦାରମ୍ଭ ସଂସ୍କାର ବିଧିର୍ବିଧୀୟତେ

ଗାୟତ୍ରୀ ମନ୍ତ୍ରଠାରୁ ଆରମ୍ଭକରି ସାଙ୍ଗୋପାଙ୍ଗ * ଋଗ୍ବେଦ ଅଧ୍ୟୟନପାଇଁ ଯେଉଁ ନିୟମ ଧାରଣ କରା ହୁଏ, ତାହାକୁ ବେଦାରମ୍ଭ ସଂସ୍କାର କହନ୍ତି ।

**ସମୟ**—ଯେଉଁଦିନ ଉପନୟ୍ନ ସଂସ୍କାର ହେବ, ସେହିଦିନ ହିଁ ବେଦାରମ୍ଭ ସଂସ୍କାର ହେବ । ଯଦି ସେଦିନ ସଂସ୍କାର ହୋଇ ନପାରେ ବା ସଂସ୍କାର କରିବାକୁ ଇଚ୍ଛା ହୁଏନା, ତେବେ ତାହା ଅନ୍ୟଦିନ କରିବେ । ଯଦି ଅନ୍ୟଦିନ ବି ଅନୁକୂଳ ନ ହେଲା, ତେବେ ଏକବର୍ଷ ମଧ୍ୟରେ ଯେକୌଣସି ଦିନ କରିବେ ।

**ବିଧି**—ବେଦାରମ୍ଭ ପାଇଁ ଯେଉଁଦିନ ନିର୍ଦ୍ଧାରିତ ହେବ, ସେଦିନ ପ୍ରାତଃରେ ବାଳକକୁ ଶୁଦ୍ଧ ଜଳରେ ସ୍ନାନ କରାଇ ଓ ଶୁଦ୍ଧ ବସ୍ତ୍ର ପରିଧାନ କରାଇ କର୍ମକର୍ତ୍ତା ଅର୍ଥାତ୍ ପିତା, ପିତା ନଥିଲେ ଆଚାର୍ଯ୍ୟ ବାଳକକୁ ସଙ୍ଗରେ ନେଇ ଉତ୍ତମ ଆସନରେ ବେଦୀର ପଶ୍ଚିମ ଦିଗରେ ପୂର୍ବାଭିମୁଖହୋଇ ଉପବେଶନ କରିବେ । ତତ୍ପରେ ଏହି ପୁସ୍ତକର ପ୍ରଥମାଂଶରେ

---

* ଅଙ୍ଗ—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ
ଉପାଙ୍ଗ—ପୂର୍ବବ ମୀମାଂସା, ବୈଶେଷିକ, ନ୍ୟାୟ, ଯୋଗ, ସାଂଖ୍ୟ ଓ ବେଦାନ୍ତ ।
ଉପବେଦ—ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବବେଦ ଓ ଅର୍ଥବେଦ ବା ଶିଳ୍ପଶାସ୍ତ୍ର ।
ବ୍ରାହ୍ମଣ—**ଐତରେୟ, ଶତପଥ, ସାମ ଓ ଗୋପଥ** ।

ଥିବା ଈଶ୍ୱରସ୍ତୁତି ††, ପ୍ରାର୍ଥନୋପାସନା, ସ୍ୱସ୍ତିବାଚନ ଓ ଶାନ୍ତିପ୍ରକରଣ କରିବେ । ୨୮ ପୃଷ୍ଠାରେ ଥିବା **ଓଁମ୍ ଭୂର୍ଭୁବଃ ସ୍ୱଃ** ଏହି ମନ୍ତ୍ରରେ **ଅଗ୍ନ୍ୟାଧାନ**, ଓଁମ୍ । **ଉଦ୍‌ବୁଧ୍ୟସ୍ୱାଗ୍ନେ**··· ଏହି ମନ୍ତ୍ରରେ ଅଧିକ ପ୍ରଦୀପ୍ତ କରି ପ୍ରଦୀପ୍ତ ଅଗ୍ନି ଉପରେ **ଓଁମ୍ ଅୟନ୍ତ ଇଧ୍ମ**··· ଇତ୍ୟାଦି ୪ ମନ୍ତ୍ରରେ ସମିଧାଦାନାଦି, ୩୦ ପୃଷ୍ଠାରେ ଲିଖିତ **ଓଁମ୍ ଅଦିତେଽନୁମନ୍ୟସ୍ୱ** ଇତ୍ୟାଦି ତିନି ମନ୍ତ୍ରରେ କୁଣ୍ଡର ତିନି ଦିଗରେ ଏବଂ **ଓଁମ୍ ଦେବ ସବିତଃ** ଇତ୍ୟାଦି ତିନି ମନ୍ତ୍ରରେ କୁଣ୍ଡର ଚାରି ଦିଗରେ ଜଳସିଞ୍ଚନ କରିବେ ।

ତତ୍ପରେ ୩୧ ପୃଷ୍ଠାରେ ଲିଖିତ ଆଘାରାବାଜ୍ୟଭାଗାହୁତି ୪ଟି, ବ୍ୟାହୃତି ଆହୁତି ୪ଟି ଓ ଅଷ୍ଟାଜ୍ୟାହୁତି—ମୋଟରେ ୧୬ ( ଷୋଳ ) ଆଜ୍ୟାହୁତି ପ୍ରଦାନ ପରେ ପ୍ରଧାନ * ହୋମାହୁତି ପ୍ରଦାନ କରାଇବେ । ୩୨ ପୃଷ୍ଠାରେ ଲିଖିତ ବ୍ୟାହୃତି ଆହୁତି ୪ ( ଚାରି ), ୩୨ ପୃଷ୍ଠାରେ ଲିଖିତ ସ୍ୱିଷ୍ଟକୃତ୍ ଆହୁତି ୧ ( ଏକ ) ଏବଂ ପ୍ରାଜାପତ୍ୟାହୁତି ୧ ( ଏକ ) ସର୍ବମୋଟ ଛଅଟି ଆଜ୍ୟାହୁତି ବାଳକଦ୍ୱାରା ପ୍ରଦାନ କରାଇବେ ।

---

ବେଦ—ଋକ୍, ଯଜୁଃ, ସାମ ଓ ଅଥର୍ବ । ଏହି ସମସ୍ତ ଗ୍ରନ୍ଥ କ୍ରମାନୁସାରେ ଅଧ୍ୟୟନ କରିବେ ।

†† ଯଦି କେହି ଉପନୟନ ସଂସ୍କାର କରିବାପରେ ସେହିଦିନ ହିଁ ବେଦାରମ୍ଭ ସଂସ୍କାର କରେ, ତେବେ ତାହାର ପୁନଶ୍ଚ ବେଦାରମ୍ଭର ଆଦ୍ୟରେ ଈଶ୍ୱରସ୍ତୁତି, ପ୍ରାର୍ଥନୋପାସନା, ଓ ଶାନ୍ତିପ୍ରକରଣ କରିବାରେ କିଛି ପ୍ରୟୋଜନ ନାହିଁ ।

* ସଂସ୍କାରରେ ଯାହା ପ୍ରଧାନତଃ ବା ପ୍ରଧାନରୂପେ କରାଯାଏ, ତାକୁ ପ୍ରଧାନ କହନ୍ତି ।

## ଅଗ୍ନି ସନ୍ଦୀପନ ଓ ବେଦୀପ୍ରଦକ୍ଷିଣ ।

ତତ୍ପରେ ବାଳକ ନିମ୍ନଲିଖିତ ମନ୍ତ୍ରରେ ବେଦୀର ଅଗ୍ନି ଏକତ୍ର କରିବେ ଏବଂ ଯଜ୍ଞକୁଣ୍ଡ ପ୍ରଦକ୍ଷିଣ କରିବେ—

ବାଳକ—ଓମ୍ ଅଗ୍ନେ ସୁଶ୍ରବଃ ସୁଶ୍ରବସଂ ମା କୁରୁ । ଓମ୍ । ଯଥା ତ୍ୱମଗ୍ନେ ସୁଶ୍ରବଃ ସୁଶ୍ରବା ଅସି । ଓମ୍ ଏବଂ ମାଂ ସୁଶ୍ରବଃ ସୌଶ୍ରବସଂ କୁରୁ । ଓମ୍ ଯଥା ତ୍ୱମଗ୍ନେ ଦେବାନାଂ ଯଜ୍ଞସ୍ୟ ନିଧିପା ଅସି । ଓମ୍ ଏବମହଂ ମନୁଷ୍ୟାଣାଂ ବେଦସ୍ୟ ନିଧିପୋ ଭୂୟାସମ୍ ॥

ତତ୍ପରେ ୩୦ ପୃଷ୍ଠାରେ ଲିଖିତ ବିଧିଅନୁସାରେ ଓମ୍ । ଅଦିତେଽନୁମନ୍ୟସ୍ୱ··· ଇତ୍ୟାଦି ୪ ( ଚାରି ) ମନ୍ତ୍ରରେ କୁଣ୍ଡର ଚତୁର୍ଦ୍ଦିଗରେ ଜଳସିଞ୍ଚନ କରିବେ ।

## ତିନି ସମିଧାହୁତି

ତଦନନ୍ତର ବାଳକ କୁଣ୍ଡର ଦକ୍ଷିଣ ଦିଗରେ ଉତ୍ତରାଭିମୁଖରେ ଦଣ୍ଡାୟମାନ ହୋଇ ନିମ୍ନଲିଖିତ ମନ୍ତ୍ରରେ ବେଦିସ୍ଥ ଅଗ୍ନିର ମଧ୍ୟଭାଗରେ ଗୋଟିଏ ଘୃତସିକ୍ତ ସମିଧାର ଆହୁତି ପ୍ରଦାନ କରିବେ ।

ବାଳକ—ଓମ୍ ଅଗ୍ନୟେ ସମିଧମାହାର୍ଷଂ ବୃହତେ ଜାତବେଦସେ । ଯଥା ତ୍ୱମଗ୍ନେ ସମିଧା ସମିଧ୍ୟସ

ଏବମହମାୟୁଷା ମେଧୟା ବର୍ଚସା ପ୍ରଜୟା ପଶୁଭିର୍ବ୍ରହ୍ମବର୍ଚସେନ ସମିନ୍ଧେ ଜୀବପୁତ୍ରୋ ମମା-ଚାର୍ଯୋ ମେଧାବ୍ୟହମସାନ୍ୟନିରାକରିଷ୍ଣୁର୍ଯଶସ୍ୱୀ ତେଜସ୍ୱୀ ବ୍ରହ୍ମବର୍ଚସ୍ୟନ୍ନାଦୋ ଭୂୟାସଁ ସ୍ୱାହା ॥

( ପାର. କା. ୨।ଙ୍କ ୪।୩ )

ଏହାପରେ ଦକ୍ଷିଣସ୍ଥ ଓ ଉତ୍ତରସ୍ଥ ଘୃତସିକ୍ତ ସମିଧାର ଆହୁତି ପ୍ରଦାନ କରିବେ । ପୁନର୍ବାର ବାଳକ ଓଁ ଅଗ୍ନେ ସୁଶ୍ରବଃ ସୁଶ୍ରବସଂ... ଏହି ମନ୍ତ୍ରରେ ବେଦସ୍ଥ ଅଗ୍ନି ଏକତ୍ର କରିବେ ଏବଂ ୩୦ ପୃଷ୍ଠାରେ ଲିଖିତ ଓଁ । ଅଦିତେଽନୁମନ୍ୟସ୍ୱ... ଇତ୍ୟାଦି ଚାରି ମନ୍ତ୍ରରେ କୁଣ୍ଡର ଚାରିଦଗରେ ଜଳସିଞ୍ଚନ କରିବେ ।

ଏହାପରେ ବାଳକ ବେଦୀର ପଶ୍ଚିମପଟେ ପୂର୍ବାଭିମୁଖ ହୋଇ ବସିବେ ଏବଂ—

ଓମ୍ ତନୂପା ଅଗ୍ନେଽସି ତନ୍ୱଂ ମେ ପାହି ॥୧॥
ଓମ୍ ଆୟୁର୍ଦା ଅଗ୍ନେଽସ୍ୟାୟୁର୍ମେ ଦେହି ॥୨॥
ଓମ୍ ବର୍ଚୋଦା ଅଗ୍ନେଽସି ବର୍ଚୋମେ ଦେହି ॥୩॥
ଓମ୍ ଅଗ୍ନେ ଯନ୍ମେ ତନ୍ୱା ଊନଂ ତନ୍ମ ଆପୃଣ ॥୪॥
ଓମ୍ ମେଧାଂ ମେ ଦେବଃ ସବିତା ଆ ଦଧାତୁ ॥୫॥
ଓମ୍ ମେଧାଂ ମେ ଦେବୀ ସରସ୍ୱତୀ ଆଦଧାତୁ ॥୬॥
ଓମ୍ ମେଧାଂ ମେ ଅଶ୍ୱିନୌ ଦେବାବାଧତ୍ତାଂ ପୁଷ୍କରସ୍ରଜୌ ॥୭॥ ( ପାର. କାଂ. ୨।ଙ୍କ. ୪,୭,୮ )

ଏହି ସାତଟି ମନ୍ତ୍ରରେ ସାତଥର ହାତପାପୁଲିକୁ ଯଜ୍ଞାଗ୍ନିରେ ଅଳ୍ପ ଉଷୁମକରି ଏବଂ ଜଳ ସ୍ପର୍ଶକରି ମୁଖସ୍ପର୍ଶ କରିବେ । ତତ୍ପରେ ବାଳକ—

ଓମ୍ ବାକ୍ ଚ ମ ଆପ୍ୟାୟତାମ୍ ॥୧॥ ଏହି ମନ୍ତ୍ରରେ ମୁଖ । ଓମ୍ ପ୍ରାଣଶ୍ଚ ମ ଆପ୍ୟାୟତାମ୍ ॥୨॥ ଏହି ମନ୍ତ୍ରରେ ନାସାରନ୍ଧ୍ର । ଓମ୍ ଚକ୍ଷୁଶ୍ଚ ମ ଆପ୍ୟାୟତାମ୍ ॥୩॥ ଏହି ମନ୍ତ୍ରରେ ନେତ୍ରଦ୍ୱୟ । ଓମ୍ ଶ୍ରୋତ୍ରଞ୍ଚ ମ ଆପ୍ୟାୟତାମ୍ ॥୪॥ ଏହି ମନ୍ତ୍ରରେ କର୍ଣ୍ଣଦ୍ୱୟ । ଓମ୍ ଯଶୋବଳଞ୍ଚ ମ ଆପ୍ୟାୟତାମ୍ ॥୫॥ ଏହି ମନ୍ତ୍ରରେ ବାହୁଦ୍ୱୟକୁ ସ୍ପର୍ଶ କରିବେ । [ ପାର.୨।୪।୮ ପରି. ]

ଓମ୍ ମୟି ମେଧାଂ ମୟି ପ୍ରଜାଂ ମୟ୍ୟଗ୍ନିସ୍ତେଜୋ ଦଧାତୁ ।
ମୟି ମେଧାଂ ମୟି ପ୍ରଜାଂ ମୟୀନ୍ଦ୍ର ଇନ୍ଦ୍ରିୟଂ ଦଧାତୁ ।
ମୟି ମେଧାଂ ମୟି ପ୍ରଜାଂ ମୟି ସୂର୍ଯ୍ୟୋଭ୍ରାଜୋ ଦଧାତୁ

ଯତ୍ତେ ଅଗ୍ନେ ତେଜସ୍ତେନାହଂ ତେଜସ୍ୱୀ ଭୂୟାସମ୍ ।
ଯତ୍ତେ ଅଗ୍ନେ ବର୍ଚସ୍ତେନାହଂ ବର୍ଚସ୍ୱୀ ଭୂୟାସମ୍ ।
ଯତ୍ତେ ଅଗ୍ନେ ହରସ୍ତେନାହଂ ହରସ୍ୱୀ ଭୂୟାସମ୍ ।

ଆଶ୍ୱ. ଅ. ୧।କଂ. ୨୧ ସୂ. ୪

ଏହିସବୁ ମନ୍ତ୍ର ପାଠ କରି ବାଳକ ପରମେଶ୍ୱରଙ୍କର ଉପସ୍ଥାନ କରିବେ ଏବଂ କୁଣ୍ଡର ଉତ୍ତରକୁ ଯାଇ ଆଣ୍ଠୁମାଡ଼ି ପୂର୍ବାଭିମୁଖ ହୋଇ ବସିବେ । ଆଚାର୍ଯ୍ୟ ବାଳକ ସମ୍ମୁଖରେ ପଶ୍ଚିମାଭିମୁଖ ହୋଇ ବସିବେ ।

ବାଳକୋକ୍ତିଃ--**ଅଧୀହି ଭୂଃ ସାବିତ୍ରୀ ଭୋ ଅନୁବ୍ରୂହି ॥**

ଅର୍ଥାତ୍ ଆଚାର୍ଯ୍ୟଙ୍କୁ ବାଳକ କହିବେ – ହେ ଆଚାର୍ଯ୍ୟ ! ପ୍ରଥମେ ଏକ ଓଁକାର ତା'ପରେ ତିନି ବ୍ୟାହୃତି ଏବଂ ତା'ପରେ ସାବିତ୍ରୀ ଏହିପରି ବିକ୍ ଅର୍ଥାତ୍ ଏହି ତିନୋଟି ଏକତ୍ର ହେବାପରେ ପରମାତ୍ମା ବାଚକ ଯେଉଁ ମନ୍ତ୍ର ହୁଏ, ତାହା ମୋତେ ଉପଦେଶ ଦିଅନ୍ତୁ ।

ଆଚାର୍ଯ୍ୟ ଗୋଟିଏ ବସ୍ତ୍ରକୁ ନିଜର ତଥା ବାଳକର କାନ୍ଧରେ ପକାଇବେ ଏବଂ ବାଳକର ଦୁଇହାତରେ ଅଙ୍ଗୁଳିକୁ ନିଜ ହାତରେ ଧାରଣକରି ନିମ୍ନପ୍ରକାରେ ତିନିବାର ଗାୟତ୍ରୀ ମନ୍ତ୍ରୋପଦେଶ କରିବେ ।

ପ୍ରଥମବାର – **ଓମ୍ ଭୂର୍ଭୁବଃ ସ୍ୱଃ । ତତ୍ ସବିତୁର୍ବରେଣ୍ୟମ୍ ।**

ଏହାର ପ୍ରତ୍ୟେକ ପଦର ଶୁଦ୍ଧ ଉଚ୍ଚାରଣ ବାଳକଦ୍ୱାରା କରାଇବେ ।

ଦ୍ୱିତୀୟବାର – **ଓମ୍ ଭୂର୍ଭୁବଃ ସ୍ୱଃ । ତତ୍ ସବିତୁର୍ବରେଣ୍ୟମ୍ ଭର୍ଗୋ ଦେବସ୍ୟ ଧୀମହି ।**

ଏହାର ପ୍ରତ୍ୟେକପଦ ପୂର୍ବପରି ଧୀରେଧୀରେ ଉଚ୍ଚାରଣ କରାଇବେ ।

ଡୃଷ୍ଣସ୍ଵବାର – ଓ୩ମ୍ ଭୂର୍ଭୁବଃ ସ୍ଵଃ । ତତ୍‌ସବିତୁ-ର୍ବରେଣ୍ୟମ୍ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ॥

ଧୀରେ-ଧୀରେ ଏହି ସମ୍ପୂର୍ଣ୍ଣ ମନ୍ତ୍ରଟିକୁ ବାଳକଦ୍ୱାରା ଉଚ୍ଚାରଣ କରାଇ ଆଚାର୍ଯ୍ୟ ବାଳକକୁ ନିମ୍ନଲିଖିତ ସଂକ୍ଷିପ୍ତ ଅର୍ଥ ଶୁଣାଇବେ—

ଅର୍ଥ:—( ଓ୩ମ୍ ) ଏହା ପରମେଶ୍ଵରଙ୍କର ମୁଖ୍ୟନାମ ଅଟେ । ( ଭୂଃ ) ପ୍ରାଣର ପ୍ରାଣ, ( ଭୁବଃ ) ସମସ୍ତ ଦୁଃଖ ଦୂରକାରୀ, ( ସ୍ଵଃ ) ସ୍ଵୟଂ ସୁଖସ୍ଵରୂପ ଏବଂ ନିଜର ଉପାସକ ମାନଙ୍କର ସୁଖ ବିଧାୟକ, ସେହି ( ସବିତୁଃ ) ସକଳଜଗତର ଉତ୍ପତ୍ତିକର୍ତ୍ତା, ସୂର୍ଯ୍ୟାଦି ଜ୍ୟୋତିପିଣ୍ଡର ଜ୍ୟୋତିଉତ୍ସ ତଥା ଐଶ୍ଵର୍ଯ୍ୟଦାତା, ( ଦେବସ୍ୟ ) କାମନା-ଯୋଗ୍ୟ, ସର୍ବତ୍ର ବିଜୟପ୍ରଦାନକାରୀ ପରମାତ୍ମା ( ବରେଣ୍ୟମ୍ ) ଅତିଶ୍ରେଷ୍ଠ, ଗ୍ରହଣ ଓ ଧ୍ୟାନଯୋଗ୍ୟ ତଥା ( ଭର୍ଗଃ ) ସମସ୍ତ କ୍ଳେଶ ଭସ୍ମକାରୀ ପବିତ୍ର ଓ ଶୁଦ୍ଧସ୍ଵରୂପ ଅଟନ୍ତି । ( ତତ୍ ) ତାଙ୍କୁ ଆମ୍ଭେମାନେ ( ଧୀମହି ) ଧାରଣ କରୁଅଛୁ, ( ଯଃ ) ସେହି ପରମାତ୍ମା ( ନଃ ) ଆମ୍ଭମାନଙ୍କର ( ଧିୟଃ ) ବୁଦ୍ଧି, ଉତ୍ତମ ଗୁଣ, କର୍ମ, ସ୍ଵଭାବରେ ( ପ୍ର. ଚୋଦୟାତ୍ ) ପ୍ରେରିତ କରନ୍ତୁ । ଏହି ପ୍ରୟୋଜନ ନିମନ୍ତେ ଜଗଦୀଶ୍ଵରଙ୍କର ସ୍ତୁତିପ୍ରାର୍ଥନା ଉପାସନା କରିବା ଉଚିତ୍ । ତାଙ୍କ ଭିନ୍ନ ଅନ୍ୟକାହାକୁ ତାଙ୍କତୁଲ୍ୟ ଜ୍ୟେଷ୍ଠ, ଶ୍ରେଷ୍ଠ ବା ଇଷ୍ଟଦେବ ଜ୍ଞାନକରି ଭକ୍ତିକରିବା ଉଚିତ ନୁହେଁ ।

ଅର୍ଥ ଶୁଣାଇସାରିବା ପରେ—

ଓମ୍ ମମ ବ୍ରତେ ହୃଦୟଂ ତେ ଦଧାମି ମମ ଚିତ୍ତମନୁଚିତ୍ତଂ ତେ ଅସ୍ତୁ ।

ମମ ବାଚମେକବ୍ରତୋ ଜୁଷସ୍ୱ ବୃହସ୍ପତିଷ୍ଟ୍ୱା ନିଯୁନକ୍ତୁ ମହ୍ୟମ ॥ ( ଆ. ୧।୨୧।୭ )

ଏହି ମନ୍ତ୍ରରେ ବାଳକ ଏବଂ ଆଚାର୍ଯ୍ୟ ପୂର୍ବପରି ବ୍ରତ ପ୍ରତିଜ୍ଞା କରି

ଓମ୍ ଇୟଂ ଦୁରକ୍ତଂ ପରିବାଧମାନା ବର୍ଣ୍ଣଂ ପବିତ୍ରଂ ପୁନତୀ ମ ଆଗାତ୍ ।

ପ୍ରାଣାପାନାଭ୍ୟାଂ ବଲମାଦଧାନା ସ୍ୱସା ଦେବୀ ସୁଭଗା ମେଖଲେୟମ୍ ॥ ( ପାର· କାଂ. ୨।କଂ. ୨।୮ )

ଏହି ମନ୍ତ୍ରରେ ଆଚାର୍ଯ୍ୟ ବାଳକର ଅଣ୍ଟାରେ ପୂର୍ବରୁ ତିଆରି-ହୋଇ ରଖାଯାଇଥିବା ସୁନ୍ଦର, ଚିକ୍କଣ ମେଖଳାକୁ * ବାନ୍ଧିବେ । ଏହାପରେ—

ଓମ୍ ଯୁବା ସୁବାସାଃ ପରିବୀତ ଆଗାତ୍ ସ ଉ ଶ୍ରେୟାନ୍ ଭବତି ଜାୟମାନଃ । ତଂ ଧୀରାସଃ କବୟ ଉନ୍ନୟନ୍ତି ସ୍ୱାଧ୍ୟୋ ମନସା ଦେବୟନ୍ତଃ ॥

( ଋ. ମଂ. ୩।ସୂ.୮।ମନ୍ତ୍ର୪॥ ପାର· ୨।୨।୯॥ )

---

* ବ୍ରାହ୍ମଣର ମୁଞ୍ଜ ଜମ୍ଭା ତୃଣ ନିର୍ମିତ ମେଖଳା, କ୍ଷତ୍ରିୟର ଧନୁଷ ନାମକ ଏକ ତୃଣ ବିଶେଷର ମେଖଳା, ବୈଶ୍ୟର ଶଣମ ଜମ୍ଭା ଶଣର ମେଖଳା ହେବା ଆବଶ୍ୟକ ।

ଏହି ମନ୍ତ୍ର ପାଠକରି ଦୁଇଟି ଶୁଦ୍ଧକୌପୀନ, ଦୁଇଟି ଖାମୁଛା, ଗୋଟିଏ ଉତ୍ତରୀୟ ଏବଂ ଦୁଇଟି କଟିବସ୍ତ୍ର ଆଚାର୍ଯ୍ୟ ବାଳକକୁ ଦେବେ। ସେଥିରୁ ଗୋଟିଏ କୌପୀନ, ଗୋଟିଏ କଟିବସ୍ତ୍ର ଓ ଗୋଟିଏ ଉତ୍ତରୀୟ ଆଚାର୍ଯ୍ୟ ବାଳକକୁ ପିନ୍ଧାଇବେ।

ତତ୍‌ପରେ ଆଚାର୍ଯ୍ୟ ହାତରେ ଦଣ୍ଡ* ଧରି ଛିଡାହେବେ। ବାଳକ ଆଚାର୍ଯ୍ୟଙ୍କ ସମ୍ମୁଖରେ ଛିଡ଼ାହୋଇ ହାତ ଯୋଡ଼ି—

ଓମ୍ ଯୋ ମେ ଦଣ୍ଡଃ ପରାପତଦ୍ୱୈହାୟସୋଽଧି-ଭୂମ୍ୟାମ୍। ତମହଂ ପୁନରାଦଦ ଆୟୁଷେ ବ୍ରହ୍ମଣେ ବ୍ରହ୍ମବର୍ଚସାୟ॥ (ପାର· କା°. ୨କଂ. ୨।୧୨॥)

ଏହି ମନ୍ତ୍ର ପାଠ କରି ଆଚାର୍ଯ୍ୟଙ୍କ ହାତରୁ ଦଣ୍ଡ ଗ୍ରହଣ କରିବେ। ତତ୍‌ପରେ ପିତା ବ୍ରହ୍ମଚାରୀଙ୍କୁ ବ୍ରହ୍ମଚର୍ଯ୍ୟାଶ୍ରମ ବିଷୟରେ ଉପଦେଶ ଦେବେ।

ବ୍ରହ୍ମଚାର୍ଯ୍ୟସି ଅସୌ ॥୧॥ †

---

* ଏହି ଦଣ୍ଡ ବ୍ରାହ୍ମଣ ବାଳକ ନିମନ୍ତେ ଭୂମିଠାରୁ ଲଲାଟ ପର୍ଯ୍ୟନ୍ତ ଉଚ୍ଚ ଏବଂ ପଳାଶ ବା ବେଲକାଠରେ ତିଆରି, କ୍ଷତ୍ରିୟ ବାଳକ ନିମନ୍ତେ ବଟ ବା ଖଇର ତିଆରି ଭୂମିଠାରୁ ଭ୍ରୂଲତା ପର୍ଯ୍ୟନ୍ତ ଉଚ୍ଚ, ବୈଶ୍ୟବାଳକ ନିମନ୍ତେ ପୀଲୁ (ଏକ ବୃକ୍ଷ ବିଶେଷ) କିମ୍ବା ଡ଼ିମ୍ବିରି କାଠରେ ତିଆରି ନାସିକାର ଅଗ୍ରଭାଗ ପର୍ଯ୍ୟନ୍ତ ଉଚ୍ଚହେବା ବିଧେୟ। ସେହି ଦଣ୍ଡ ପୋଡ଼ା, ବଙ୍କା କିମ୍ବା ପୋକଲଗା ହୋଇ-ନଥିବ ଅର୍ଥାତ୍ ଚିକ୍‌କଣ ସିଧା ଦଣ୍ଡ ପ୍ରଦାନ କରିବେ। ସମସ୍ତ ବ୍ରହ୍ମଚାରୀଙ୍କୁ ବସିବାକୁ ମୃଗଚର୍ମ, ଜଳପାତ୍ର, ଉପପାତ୍ର ଏବଂ ଆଚମନ-ପାତ୍ର, ପ୍ରତ୍ୟେକକୁ ଗୋଟିଏ ଗୋଟିଏ ଦେବା ଆବଶ୍ୟକ।

† ଅସୌ ପଦଟିର ସ୍ଥାନରେ ସବୁବେଳେ ବ୍ରହ୍ମଚାରୀର ନାମ ଉଚ୍ଚାରଣ କରାଯିବ।

ଅପୋଽଶାନ ॥୨॥ କର୍ମକୁରୁ ॥୩॥ ଦିବା ମା ସ୍ୱାପ୍ସୀଃ ॥୪॥ ଆଚାର୍ଯ୍ୟାଧୀନୋ ବେଦମଧୀଷ୍ୱ ॥୫॥
( ଆଶ୍ୱ. ୧।୨୨।୨ ॥ )

ଦ୍ୱାଦଶ ବର୍ଷାଣି ପ୍ରତିବେଦଂ ବ୍ରହ୍ମଚର୍ଯ୍ୟଂ ଗୃହାଣ ବା ବ୍ରହ୍ମଚର୍ଯ୍ୟ ଚର ॥୬॥
( ଭୂ. ଆଶ୍ୱ. ଗୃ. ୧।୨୨।୩. ୪ ॥ ତଥା ପା. ଗୃ. ୨।୫।୧୩-୧୫ )

ଆଚାର୍ଯ୍ୟାଧୀନୋ ଭବାନ୍ୟତ୍ରାଧର୍ମାଚରଣାତ୍ ॥୭॥ କ୍ରୋଧାନୃତେ ବର୍ଜୟ ॥୮॥ ମୈଥୁନଂ ବର୍ଜୟ ॥୯॥ ଉପରି ଶୟ୍ୟାଂ ବର୍ଜୟ ॥୧୦॥ କୌଶୀଲବଗନ୍ଧା-ଞ୍ଜନାନି ବର୍ଜୟ ॥୧୧॥ ( ଗୋ. ଗୃ. ୩।୧।୧୫-୧୯ ) ଅତ୍ୟନ୍ତଂ ସ୍ନାନଂ ଭୋଜନଂ ନିଦ୍ରାଂ ଜାଗରଣଂ ନିନ୍ଦାଂ ଲୋଭମୋହଭୟଶୋକାନ୍ ବର୍ଜୟ ॥୧୨॥ ପ୍ରତିଦିନଂ ରାତ୍ରେଃ ପଶ୍ଚିମେ ଯାମେ ଚୋତ୍‌ଥାୟାବଶ୍ୟକଂ କୃତ୍ୱା ଦନ୍ତଧାବନସ୍ନାନସଂଧ୍ୟୋପାସନେଶ୍ୱରସ୍ତୁତିପ୍ରାର୍ଥନୋ-ପାସନାଯୋଗାଭ୍ୟାସାନ୍ନିତ୍ୟମାଚର ॥୧୩॥ କ୍ଷୁର-କୃତ୍ୟଂ ବର୍ଜୟ ॥୧୪॥ ମାଂସରୁକ୍ଷାହାରଂ ମଦ୍ୟାଦିପା-ନଂ ଚ ବର୍ଜୟ ॥୧୫॥ ଗବାଶ୍ୱହସ୍ତ୍ୟୁଷ୍ଟ୍ରାଦିଯାନଂ ବର୍ଜୟ ॥୧୬॥ ଅନ୍ତର୍ଗ୍ରାମନିବାସୋପାନଚ୍ଛତ୍ରଧାରଣଂ ବର୍ଜୟ ॥୧୭॥ ଅକାମତଃ ସ୍ୱୟମିନ୍ଦ୍ରିୟସ୍ପର୍ଶେନ ବୀର୍ଯ୍ୟସ୍ଖଳନଂ

ବ୍ରହ୍ମାସ୍ଯ ବୀର୍ଯ୍ୟଂ ଶରୀରେ ସଂରକ୍ଷୋର୍ଦ୍ଧ୍ୱରେତାଃ ସତତଂ ଭବ ॥୯॥ ତୈଲାଭ୍ୟଙ୍ଗମର୍ଦନାତ୍ୟମ୍ଳାତି-ତିକ୍ତକଷାୟକ୍ଷାରରେଚନଦ୍ରବ୍ୟାଣି ମା ସେବସ୍ୱ ॥୧୯॥ ନିତ୍ୟଂ ଯୁକ୍ତାହାରବିହାରବାନ୍ ବିଦ୍ୟୋପାର୍ଜନେ ଚ ଯତ୍ନବାନ୍ ଭବ ॥୨୦॥ ସୁଶୀଲୋମିତଭାଷୀ ସଭ୍ୟୋ ଭବ ॥୨୧॥ ମେଖଳାଦଣ୍ଡଧାରଣଭୈକ୍ଷଚର୍ଯ୍ୟସମିଦା ଧାନୋଦକସ୍ପର୍ଶନାଚାର୍ଯ୍ୟପ୍ରିୟାଚରଣପ୍ରାତଃସାୟମଭି-ବାଦନବିଦ୍ୟାସଂଚୟଜିତେନ୍ଦ୍ରିୟତ୍ୱାଦୀନ୍ୟେତେ ତେ ନିତ୍ୟଧର୍ମାଃ ॥୨୨॥

( ଗୋଭିଲ· ୩।୧।୧୫-୨୬ )

**ଅର୍ଥ:**—ଆଜିଠାରୁ ତୁମେ ବ୍ରହ୍ମଚାରୀ ଅଟ ॥୧॥ ନିତ୍ୟ ସଂଧ୍ୟା-ଉପାସନା ଏବଂ ଭୋଜନ ପୂର୍ବରୁ ଶୁଦ୍ଧ ଜଳରେ ଆଚମନ କର ॥୨॥ ଦୁଷ୍ଟକର୍ମ ଛାଡ଼ ଧର୍ମଯୁକ୍ତ କର୍ମ କର ॥୩॥ ଦିନରେ କଦାପି ଶୟନ କରନାହିଁ ॥୪॥ ଆଚାର୍ଯ୍ୟଙ୍କ ଅଧୀନସ୍ଥ ରହି ପ୍ରତ୍ୟହ ସାଙ୍ଗୋପାଙ୍ଗ ବେଦ ଅଧ୍ୟୟନ ନିମନ୍ତେ ପୁରୁଷାର୍ଥ କର ॥୫॥ ପ୍ରତ୍ୟେକ ସାଙ୍ଗୋପାଙ୍ଗ ବେଦ ଅଧ୍ୟୟନ ନିମନ୍ତେ ବାରବର୍ଷ ହିସାବରେ ମୋଟ ୪୮ ବର୍ଷ ପର୍ଯ୍ୟନ୍ତ କିମ୍ବା ଯେପର୍ଯ୍ୟନ୍ତ ସାଙ୍ଗୋପାଙ୍ଗ ଚାରିବେଦ ଅଧ୍ୟୟନ ପୂର୍ଣ୍ଣହୋଇନି ସେପର୍ଯ୍ୟନ୍ତ ଅଖଣ୍ଡିତବ୍ରହ୍ମଚର୍ଯ୍ୟ ଧାରଣ କର ॥୬॥ ଆଚାର୍ଯ୍ୟ-ଙ୍କର ଅଧୀନ ରହି ଧର୍ମାଚରଣ କର ; କିନ୍ତୁ ଯଦି ଆଚାର୍ଯ୍ୟ ଧର୍ମାଚରଣର ବିପରୀତ ଉପଦେଶ ଦେଉଛନ୍ତି ତେବେ ତୁମେ ତାହା କଦାପି ପାଳନ କରନାହିଁ ॥୭॥ କ୍ରୋଧ ଏବଂ

ମିଥ୍ୟାକଥନ ତ୍ୟାଗ କର ।।୮।। ଆଠ* ପ୍ରକାରର ମୈଥୁନକୁ ତ୍ୟାଗ କରିବ ।।୯।। ଭୂମି ବ୍ୟତୀତ ପଲଙ୍କ ଆଦିରେ ଶୟନ କରନାହିଁ ।।୧୦।। କୌଶୀଲବ ଅର୍ଥାତ୍ ଗାଇବା, ବଜାଇବା ଓ ନୃତ୍ୟକରିବା ଆଦି ନିନ୍ଦିତକର୍ମ, ଗନ୍ଧ ଏବଂ ଅଞ୍ଜନର ସେବନ କରନାହିଁ ।।୧୧।। ଅତିସ୍ନାନ, ଅତିଭୋଜନ, ଅଧିକ ନିଦ୍ରା, ଅଧିକ ଜାଗରଣ, ନିନ୍ଦା, ଲୋଭ, ମୋହ, ଭୟ, ଶୋକ କଦାପି କରନାହିଁ ।।୧୨।। ପ୍ରତିଦିନ ରାତ୍ରିର ଚତୁର୍ଥ ପ୍ରହରରେ ନିଦ୍ରା ତ୍ୟାଗକରି ଆବଶ୍ୟକୀୟ ଶୌଚାଦି କ୍ରିୟା ତଥା ଦନ୍ତଧାବନ, ସ୍ନାନ, ସନ୍ଧ୍ୟୋପାସନା, ଈଶ୍ୱରସ୍ତୁତି, ପ୍ରାର୍ଥନା ଏବଂ ଉପାସନା, ଯୋଗାଭ୍ୟାସ କର ।।୧୩।। କ୍ଷୌର ହୁଅନାହିଁ ।।୧୪।। ମାଂସ, ରୁକ୍ଷ, ଶୁଷ୍କ ଅନ୍ନ ଭୋଜନ କରନାହିଁ, ମଦ୍ୟପାନ କରନାହିଁ ।।୧୫।। ବଳଦ, ଘୋଡ଼ା, ହାତୀ, ଓଟ ପ୍ରଭୃତି ବାହନରେ ବସି ଯାତ୍ରା କରନାହିଁ ।।୧୬।। ଗ୍ରାମରେ ନିବାସ ଏବଂ ଜୋତାଯୋତା ଧାରଣ କରନାହିଁ ।।୧୭।। ପରିଶ୍ରା କରିବା ସମୟ ବ୍ୟତୀତ ଅନ୍ୟ ସମୟରେ ଉପସ୍ଥେନ୍ଦ୍ରିୟ ସ୍ପର୍ଶକରି କଦାପି ବୀର୍ଯ୍ୟସ୍ଖଳନ କରନାହିଁ । ବୀର୍ଯ୍ୟକୁ ଶରୀରରେ ଧାରଣକରି ଊର୍ଦ୍ଧ୍ୱରେତା ହୁଅ ।।୧୮।। ତୈଳ ଦ୍ୱାରା ଅଙ୍ଗମର୍ଦ୍ଦନ କରନାହିଁ, ସାବୁନ୍ ପ୍ରଭୃତି କୃତ୍ରିମ ଅଙ୍ଗ ଶୋଧକର ବ୍ୟବହାର କରନାହିଁ । ଅତିଖଟା, ଅତିକଟୁ, ଅତିତିକ୍ତ ଲଙ୍କାମରିଚ, ଆଦି ଅତି କଷାୟ ଏବଂ କ୍ଷାର ଓ ରେଚକ ଦ୍ରବ୍ୟ ସେବନ କରନାହିଁ ।।୧୯।।

* ସ୍ତ୍ରୀର ଧ୍ୟାନ, କଥା, ସ୍ପର୍ଶ, କ୍ରୀଡ଼ା, ଦର୍ଶନ, ଆଲିଙ୍ଗନ, ଏକାନ୍ତବାସ ଏବଂ ସମାଗମ ଏହାକୁ ଆଠପ୍ରକାର ମୈଥୁନ କହନ୍ତି, ଯେ ଏହାକୁ ଛାଡ଼ିଦେଇ ପାରେ, ସେ ବ୍ରହ୍ମଚାରୀ ହୁଏ ।

ନିତ୍ୟଯୁକ୍ତ ଆହାର ବିହାର କରି ବିଦ୍ୟାଗ୍ରହଣରେ ପ୍ରବୃତ୍ତ ହୁଅ ॥୨୦॥ ସୁଶୀଳ, ଅଲ୍ପଭାଷୀ ଏବଂ ସଭାରେ ବସିବାର ଯୋଗ୍ୟ ହେବାପରି ଗୁଣ ଆହରଣ କର ॥୨୧॥ ମେଖଳା ଓ ଦଣ୍ଡଧାରଣ, ଭିକ୍ଷାଚରଣ, ଅଗ୍ନିହୋତ୍ର, ସ୍ନାନ, ସନ୍ଧ୍ୟୋପାସନା, ଆଚାର୍ଯ୍ୟଙ୍କ ପ୍ରିୟାଚରଣ, ସାୟଂପ୍ରାତଃ ଆଚାର୍ଯ୍ୟଙ୍କୁ ନମସ୍କାର କରିବା, ଏ ସମସ୍ତ କର୍ମ ତୋର ନିତ୍ୟପ୍ରତି କରଣୀୟ ଅଟେ ଏବଂ ଯାହା ନିଷେଧ କରାଯାଇଛି ତାହା କରଣୀୟ ନୁହେଁ ॥୨୨॥

ପିତା ଏହିପରି ଉପଦେଶ ବାକ୍ୟ କହିବାପରେ ପୁତ୍ର ପିତାଙ୍କୁ ନମସ୍କାର କରି ହାତଯୋଡ଼ି କହିବେ ଯେ, ଆପଣ ଯେପରି ଉପଦେଶ ଦେଲେ ମୁଁ ସେହିପରି ଆଚରଣ କରିବି ।

ତତ୍ପରେ ବ୍ରହ୍ମଚାରୀ ଯଜ୍ଞକୁଣ୍ଡକୁ ପ୍ରଦକ୍ଷିଣ କରି କୁଣ୍ଡର ପଶ୍ଚିମପଟେ ଛିଡ଼ାହୋଇ ମାତା, ପିତା, ଭଗିନୀ, ଭାଇ, ମାମୁଁ, ମଉସା, କକା ପ୍ରଭୃତି ତଥା ଅନ୍ୟ ଯେଉଁମାନେ ଭିକ୍ଷାଦେବାକୁ ମନା କରିବେନାହିଁ ସେମାନଙ୍କୁ ଭିକ୍ଷା* ମାଗିବେ

---

* ବ୍ରାହ୍ମଣ ବାଳକ ପୁରୁଷଠାରୁ ଭିକ୍ଷା ମାଗିଲେ "ଭବାନ୍ ଭିକ୍ଷାଂ ଦଦାତୁ" ଏବଂ ସ୍ତ୍ରୀ ଠାରୁ ଭିକ୍ଷା ମାଗିଲେ "ଭବତୀ ଭିକ୍ଷାଂ ଦଦାତୁ" ବାକ୍ୟ ଉଚ୍ଚାରଣ କରିବେ । କ୍ଷତ୍ରିୟ ବାଳକ ପୁରୁଷ ଠାରୁ "ଭିକ୍ଷାଂ ଭବାନ୍ ଦଦାତୁ" ଓ ସ୍ତ୍ରୀ ଠାରୁ "ଭିକ୍ଷାଂ ଭବତୀ ଦଦାତୁ" କହି ଭିକ୍ଷା ମାଗିବେ । ବୈଶ୍ୟ ବାଳକ ପୁରୁଷକୁ "ଭିକ୍ଷାଂ ଦଦାତୁ ଭବାନ୍" ଓ ସ୍ତ୍ରୀକୁ "ଭିକ୍ଷାଂ ଦଦାତୁ ଭବତୀ" କହି ଭିକ୍ଷା କରିବେ ।

ଏବଂ ଯାହା ଭିକ୍ଷା ମିଳିବ ତାହା ଆଚାର୍ଯ୍ୟଙ୍କୁ ଦେଇଦେବେ । ଆଚାର୍ଯ୍ୟ ସେଥିରୁ ଅଳ୍ପଅନ୍ନ ଲାଗି ବାଳକାଦିକ ବ୍ରହ୍ମଚାରୀଙ୍କୁ ଫେରାଇଦେବେ ଏବଂ ବାଳକ ସେହି ଅନ୍ନକୁ ନିଜର ଭୋଜନ ସମୟରେ ଭକ୍ଷିବେ ।

ତା'ପରେ ବାଳକକୁ ଶୁଭଆସନ ଉପରେ ବସାଇ ବାମଦେବ୍ୟଗାନ କରିବେ । ତା'ପରେ ବାଳକ ପୂର୍ବରୁ ରଖିଥିବା ଅନ୍ନକୁ ଭୋଜନ କରିବ । ଭୋଜନ ପରେ ସାୟଂକାଳ ପର୍ଯ୍ୟନ୍ତ ବିଶ୍ରାମ କରିବେ । ସନ୍ଧ୍ୟା ସମୟରେ ଆଚାର୍ଯ୍ୟ ବାଳକଦ୍ୱାରା ସନ୍ଧ୍ୟୋପାସନା କରାଇବେ ।

ଏବଂ ତତ୍ପରେ ବ୍ରହ୍ମଚାରୀ ସହିତ ଆଚାର୍ଯ୍ୟ କୁଣ୍ଡର ପଶ୍ଚିମପଟେ ଥିବା ଆସନ ଉପରେ ପୂର୍ବାଭିମୁଖ ହୋଇ ବସି ସ୍ଥାଲୀପାକ ( ପୃ. ୨୧-୨୨ ଲିଖିତ ବିଧାନାନୁଯାୟୀ ) ତିଆରି କରି, ସେଥିରେ ଘିଅ ଢାଳି, ପାଖରେ ରଖିବେ । ପୂର୍ବକଥିତ ( ପୃ. ୨୮-୨୯ ) ବିଧିଅନୁସାରେ ସମିଧା ଦାନକରି ପୁନଶ୍ଚ ସମିଧା ପ୍ରଦାନ କରି ଆଘାରାବାଜ୍ୟଭାଗାହୁତି ( ପୃ. ୩୧-୩୨ ) ମନ୍ତ୍ରର ଚାରି ଓ ବ୍ୟାହୃତି ( ପୃ.୩୨ )ମନ୍ତ୍ରରେ ଚାରି ଏହାପରେ ଉଭୟ ମିଶି ଆଠଟି ମନ୍ତ୍ରର ଆଠ ଆଜ୍ୟାହୁତି ଦେବେ ।

ତତ୍ପରେ ବ୍ରହ୍ମଚାରୀ ଛିଡାହୋଇ " ଓମ୍ ଅଗ୍ନେ ସୁଶ୍ରବଃ—" ( ପୃ. ୧୩୬ ) ମନ୍ତ୍ରରେ ତିନୋଟି ସମିଧା ଆହୁତି ଦେବେ । ତା'ପରେ ବମିକାର ଯଜ୍ଞାଗ୍ନିରେ ହାତ ଉଷୁମକରି ପୂର୍ବବତ୍ ମନ୍ତ୍ର ପାଠ କରି ମୁଖସ୍ପର୍ଶ କରିସାରି ଅଙ୍ଗସ୍ପର୍ଶ କରିବେ ।

ତତ୍‌ପରେ ସ୍ଥାଲୀପାକର ଅନ୍ନକୁ ବାଳକ ଆଚାର୍ଯ୍ୟଙ୍କୁ ହୋମ ତଥା ଭୋଜନ ନିମନ୍ତେ ଦେବେ । ଆଚାର୍ଯ୍ୟ ସେଥିରୁ ଆହୁତି ପାଇଁ ଯେତିକି ଦରକାର ସେତିକି ଅନ୍ନ ଥାଳିରେ ରଖି ସେଥିରେ ଘିଅ ମିଶାଇ—

**ଓମ୍ ସଦସସ୍ପତିମଦଭୁତଂ ପ୍ରିୟମିନ୍ଦ୍ରସ୍ୟ କାମ୍ୟମ୍ ।**

**ସନିଂ ମେଧାମୟାସିଷଁ ସ୍ୱାହା ॥ ଇଦଂ ସଦସସ୍ପତୟେ**

**ଇଦନ୍ନ ମମ ॥୧॥** ( ଯଜୁ. ଅ. ୩୨।ମଂ. ୧୩ )

**ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ।**

**ଧିୟୋ ଯୋ ନଃ ପ୍ରଚୋଦୟାତ୍ ( ସ୍ୱାହା ) ॥ ଇଦଂ**

**ସବିତ୍ରେ-ଇଦନ୍ନ ମମ ॥୨॥** ( ଯଜୁ. ଅ. ୨୨।ମଂ.୯ )

**ଓମ୍ ଋଷିଭ୍ୟଃ ସ୍ୱାହା ॥ ଇଦଂ ଋଷିଭ୍ୟଃ-ଇଦନ୍ନ ମମ**

**॥୩॥** ( ଆଶ୍ୱ. ଅ. ୧।କଂ. ୨୨।ସୂ. ୧୪ )

ଏହି ତିନୋଟି ମନ୍ତ୍ରରେ ତିନି ଆହୁତି ଦେଇ ସ୍ୱିଷ୍ଟକୃତ୍ ମନ୍ତ୍ର ( **ଓମ୍ ଯଦସ୍ୟ କର୍ମଣୋ**··· ) ରେ ଚତୁର୍ଥ ଆହୁତି ଦେବେ । ତତ୍‌ପରେ ଚାରି ବ୍ୟାହୃତି ଆହୁତି, **ଓମ୍ ତ୍ୱଂନୋ**··· ପ୍ରଭୃତି ଆଠଟି ମନ୍ତ୍ରରେ ଆଠ ଆଜ୍ୟାହୁତି ଏହିପରି ମୋଟ ୧୬ ଟି ଆଜ୍ୟାହୁତି ଦେଇସାରି ବ୍ରହ୍ମଚାରୀ ଶୁଦ୍ଧସନିଦ୍ଧପରେ ପୂର୍ବାଭିମୁଖ ହୋଇ ବସିବେ ଏବଂ ଆଚାର୍ଯ୍ୟଙ୍କ ସହିତ ବାମଦେବ୍ୟଗାନ କରିବେ । ତତ୍‌ପରେ—

**ଅମୁକଗୋତ୍ରୋତ୍ପନ୍ନୋଽହଂ ଭୋ ଭବନ୍ତମଭିବାଦୟେ**

( ଗୋଭିଳ ୨।୧୦।୨୫ )

ଏହିବାକ୍ୟ କହି ଆଚାର୍ଯ୍ୟଙ୍କର ପଦବନ୍ଦନ କରିବେ ।
ଆଚାର୍ଯ୍ୟ ମନ୍ତ୍ର—
ଆୟୁଷ୍ମାନ୍ ବିଦ୍ୟାବାନ୍ ଭବ ସୌମ୍ୟ ॥

ଏହାକହି ଆଶୀର୍ବାଦ କରିବେ । ତତ୍ପରେ ହୋମା-ବଶିଷ୍ଟ ଅନ୍ନ ଏବଂ ଅନ୍ୟ ମିଷ୍ଟାନ୍ନାଦି ବ୍ରହ୍ମଚାରୀ ଓ ଆଚାର୍ଯ୍ୟ ଏକ ସମୟରେ ଅଲଗା ଅଲଗା ପାତ୍ରରେ ଭୋଜନ କରିବେ । ତତ୍ପରେ ହସ୍ତମୁଖାଦି ପ୍ରକ୍ଷାଳନ କରିସାରି ସଂସ୍କାରକୁ ନିମନ୍ତ୍ରିତ ହୋଇଥିବା ଭଦ୍ରବ୍ୟକ୍ତି ମାନଙ୍କୁ ଭୋଜନ କରାଇବେ । ଶେଷରେ ସ୍ତ୍ରୀମାନଙ୍କୁ ସ୍ତ୍ରୀ ଏବଂ ପୁରୁଷ ମାନଙ୍କୁ ପୁରୁଷ ପ୍ରେମପୂର୍ବକ ବିଦାୟ ଦେବେ । ବିଦାୟ ପୂର୍ବରୁ ସମସ୍ତେ ବ୍ରହ୍ମଚାରୀଙ୍କୁ ନିମ୍ନପ୍ରକାରେ ଆଶୀର୍ବାଦ କରି ନିଜନିଜର ଗୃହକୁ ଯିବେ ।

ହେ ବାଳକ ! ତ୍ୱମୀଶ୍ୱରକୃପୟା ବିଦ୍ୱାନ୍ ଶରୀ-ରାତ୍ମବଲଯୁକ୍ତଃ କୁଶଳୀ ବୀର୍ଯ୍ୟବାନରୋଗଃ ସର୍ବା ବିଦ୍ୟା ଅଧୀତ୍ୟାଽସାନ୍ ଦିଦୃକ୍ଷୁଃ ସନ୍ନାଗମ୍ୟାଃ ॥

ତା'ପରଦିନଠାରୁ ତିନଦିନ ପର୍ଯ୍ୟନ୍ତ ବ୍ରହ୍ମଚାରୀ ଭୂମିରେଶୟନ କରିବେ । "ଓଁ ମଗ୍ନେ ସୁଶ୍ରବଃ" ପ୍ରାତଃସାୟଂ ମନ୍ତ୍ରରେ ସମିଧା ହୋମ ଏବଂ ପୃଷ୍ଠା୨୬-୨୭ ଅନୁସାରେ ମୁଖ ଓ ଅଙ୍ଗ ସ୍ପର୍ଶ ଆଚାର୍ଯ୍ୟ ବାଳକ ଦ୍ୱାରା କରାଇବେ । ସେହି ତିନଦିନ "ଓମ୍ ସଦସସ୍ପତିମଦ୍ଭୁତଂ—" ପ୍ରଭୃତି ପୂର୍ବୋକ୍ତ ଚାରି ମନ୍ତ୍ରରେ ବ୍ରହ୍ମଚାରୀ ହାତରେ ସ୍ଥାଳୀପାକ ଆହୁତି ଦିଆଇବେ । ସେହି ତିନଦିନ ବ୍ରହ୍ମଚାରୀ କ୍ଷାରଲବଣ ରହିତ ପଦାର୍ଥ ଭୋଜନ କରିବେ ।

ତତ୍ପରେ ପାଠଶାଳାକୁ ଯାଇ ଗୁରୁଙ୍କ ନିକଟରେ ବିଦ୍ୟାଭ୍ୟାସ ଆରମ୍ଭକରିବା ନିମନ୍ତେ ଉର୍ଦ୍ଧିଷ୍ଟ ପ୍ରତିଜ୍ଞାମନ୍ତ୍ର ପାଠ କରିବେ । ଆଚାର୍ଯ୍ୟ ମଧ୍ୟ ତାଙ୍କ ସହିତ ଯେଉଁ ପ୍ରତିଜ୍ଞା କରିବେ—

ଆଚାର୍ଯ୍ୟ ଉପନୟମାନୋ ବ୍ରହ୍ମଚାରିଣଂ କୃଣୁତେ ଗର୍ଭମନ୍ତଃ । ତଂ ରାତ୍ରୀସ୍ତିସ୍ର ଉଦରେ ବିଭର୍ତ୍ତି ତଂ ଜାତଂ ଦ୍ରଷ୍ଟୁମଭିସଂୟନ୍ତିଦେବାଃ ॥୧॥

ଇୟଂ ସମିତ୍ପୃଥିବୀ ଦ୍ୟୌର୍ଦ୍ୱିତୀୟୋତାନ୍ତରିକ୍ଷଂ ସମିଧା ପୃଣାତି । ବ୍ରହ୍ମଚାରୀ ସମିଧା ମେଖଲୟା ଶ୍ରମେଣ ଲୋକାଁସ୍ତପସା ପିପର୍ତ୍ତି ॥୨॥

ବ୍ରହ୍ମଚର୍ଯ୍ୟେତି ସମିଧା ସମିଦ୍ଧଃ କାର୍ଷ୍ଣଂ ବସାନୋ ଦୀକ୍ଷିତୋ ଦୀର୍ଘଶ୍ମଶ୍ରୁଃ । ସ ସଦ୍ୟ ଏତି ପୂର୍ବସ୍ମାଦୁ-ତ୍ତରଂ ସମୁଦ୍ରଂ ଲୋକାନ୍ତସଂଗୃଭ୍ୟ ମୁହୁରାଚରିକ୍ରତ୍ ॥୩॥

ବ୍ରହ୍ମଚର୍ଯ୍ୟେଣ ତପସା ରାଜା ରାଷ୍ଟ୍ରଂ ବି ରକ୍ଷତି । ଆଚାର୍ଯ୍ୟୋ ବ୍ରହ୍ମଚର୍ଯ୍ୟେଣ ବ୍ରହ୍ମଚାରୀଣମିଚ୍ଛତେ ॥୪॥

ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନଂ ବିନ୍ଦତେ ପତିମ୍ ॥୫॥

ବ୍ରହ୍ମଚାରୀ ବ୍ରହ୍ମ ଭ୍ରାଜଦ୍ ବିଭର୍ତ୍ତି ତସ୍ମିନ୍ଦେବା ଅଧି ବିଶ୍ୱେ ସମୋତାଃ । ପ୍ରାଣାପାନୌ ଜନୟନ୍ନାଦ୍ ବ୍ୟାନଂ ବାଚଂ ମନୋ ହୃଦୟଂ ବ୍ରହ୍ମ ମେଧାମ୍ ॥୬॥

ଅଥର୍ବ· କାଂ. ୧୧।ସୂ. ୫। ( ମଂ. ୩,୪,୬,୧୭,୧୮,୨୩ )

ସଂକ୍ଷେପରେ ଭାବାର୍ଥ:—ଆଚାର୍ଯ୍ୟ ବ୍ରହ୍ମଚାରୀକୁ ପ୍ରତିଜ୍ଞାପୂର୍ବକ ସମୀପରେ ରଖି ତିନିରାତ୍ରୀ ପର୍ଯ୍ୟନ୍ତ ଗୃହାଶ୍ରମପ୍ରକରଣରେ ଲିଖିତ ସନ୍ଧ୍ୟୋପାସନାଦି ସଦାଚାରର ଶିକ୍ଷାଦାନକରି ତାହାର ଆତ୍ମାଭିତରେ ଗର୍ଭରୂପକି ବିଦ୍ୟାସ୍ଥାପନ କରିବା ନିମନ୍ତେ ତାକୁ ଧାରଣ କରନ୍ତୁ । ସେହି ବ୍ରହ୍ମଚାରୀକୁ ସେ ପୂର୍ଣ୍ଣ ବିଦ୍ୱାନ୍ କରନ୍ତୁ । ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ସହିତ ବିଦ୍ୟାଶିକ୍ଷା ସମ୍ପୂର୍ଣ୍ଣ ହେଲେ ସେ ଯେତେବେଳେ ଘରକୁ ଫେରିଆସେ ତାଙ୍କୁ ଦେଖିବା ନିମନ୍ତେ ବିଦ୍ୱାନ୍‌ଗଣ ତାହା ସମ୍ମୁଖକୁ ଯାଇ ବହୁତ ସମ୍ମାନ କରନ୍ତୁ ॥୧॥

ସେହି ବ୍ରହ୍ମଚାରୀ ବେଦାରମ୍ଭ ସମୟରେ ଯେ ସମିଧା ହୋମକରି ନିୟମପୂର୍ବକ ବ୍ରହ୍ମଚର୍ଯ୍ୟବ୍ରତ ଧାରଣକରି ବିଦ୍ୟାପୂର୍ଣ୍ଣ କରିବା ନିମନ୍ତେ ଦୃଢ଼ୋତ୍ସାହୀ ହୁଏ, ସେ ପୃଥିବୀ, ସୂର୍ଯ୍ୟ ଏବଂ ଅନ୍ତରିକ୍ଷ ସମ୍ବନ୍ଧୀ ସମସ୍ତଙ୍କୁ ପାଳନକରେ, ଏବଂ ସମିଦାଧାନ ମେଖଳାଦି ଚିହ୍ନ ଧାରଣ ଓ ପରିଶ୍ରମ ସହକାରେ ବିଦ୍ୟା ଉପାର୍ଜନ ସହିତ ବ୍ରହ୍ମଚର୍ଯ୍ୟାନୁଷ୍ଠାନରୂପକ ତପଦ୍ୱାରା ଲୋକ-ମାନଙ୍କୁ ସଦ୍‌ଗୁଣ ଓ ଆନନ୍ଦରେ ତୃପ୍ତ କରିଦଏ ॥୨॥

ଯେତେବେଳେ ବିଦ୍ୟାଦ୍ୱାରା ଆଲୋକିତ, ମୃଗଚର୍ମାଦି ଧାରଣ କରିଥିବା ଦୀକ୍ଷିତ ବ୍ରହ୍ମଚାରୀ ୪୦ ବର୍ଷ ପର୍ଯ୍ୟନ୍ତ ଦାଢ଼ୀନିଶ ପ୍ରଭୃତି ଦୀର୍ଘକେଶକୁ ଧାରଣ କରି ବ୍ରହ୍ମଚର୍ଯ୍ୟ ପାଳନ କରିପାରିବା ପରେ ପୂର୍ବ ସମୁଦ୍ରରୂପ ବ୍ରହ୍ମଚର୍ଯ୍ୟା-ନୁଷ୍ଠାନକୁ ପୂର୍ଣ୍ଣ କରି ଗୁରୁକୁଳରୁ ବିଦାୟ ନିଏ, ତତ୍ପରେ ଉତ୍ତର ସମୁଦ୍ରରୂପୀ ଗୃହାଶ୍ରମରେ ଶୀଘ୍ର ପ୍ରବେଶ କରେ । ସେ ଲୋକ ସଂଗ୍ରହ କରି ବାରମ୍ବାର ପୁରୁଷାର୍ଥ ଦ୍ୱାରା ଏବଂ ସତ୍ୟୋପଦେଶ ଦ୍ୱାରା ଜଗତକୁ ଆନନ୍ଦିତ କରେ ।

ଯେଉଁ ରଜା ତପଶ୍ଚରଣ ଦ୍ୱାରା ପୂର୍ଣ୍ଣ ବିଦ୍ୱାନ୍, ସୁଶିକ୍ଷିତ, ସୁଶୀଳ ଓ ଜିତେନ୍ଦ୍ରିୟ ହୋଇ ରାଜ୍ୟକୁ ସବୁପ୍ରକାରେ ପାଳନ କରେ, ସେ ଉତ୍ତମ ରଜା ଅଟେ । ସେହିପରି ଯେଉଁ ବ୍ୟକ୍ତି ୪୮ ବର୍ଷାବଧି ବ୍ରହ୍ମଚର୍ଯ୍ୟ ପୂର୍ଣ୍ଣ କରି ବିଦ୍ୱାନ୍ ହୋଇଥାଏ, ସେ ବ୍ରହ୍ମଚାରୀ ଦେବମାନଙ୍କ ଇଚ୍ଛାକରେ ଏବଂ ଆଚାର୍ଯ୍ୟ ହୋଇପାରେ ॥୪॥

ଯେପରି ପୁରୁଷ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ଏବଂ ପୂର୍ଣ୍ଣବିଦ୍ୟା ପ୍ରାପ୍ତି ପରେ ଯୌବନାବସ୍ଥାରେ ନିଜର ଯୋଗ୍ୟ କନ୍ୟାକୁ ବିବାହ କରେ ସେହିପରି କନ୍ୟା ମଧ୍ୟ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଧାରଣ ସହିତ ବିଦ୍ୟା ଶିକ୍ଷାକରି ପୂର୍ଣ୍ଣ ଯୌବନ ଲାଭପରେ ନିଜର ଯୋଗ୍ୟ ବିଦ୍ୱାନ୍ ଯୁବକଙ୍କୁ ପତିରୂପେ ପ୍ରାପ୍ତକରେ ॥୫॥

ଯେତେବେଳେ ବ୍ରହ୍ମଚାରୀ ବ୍ରହ୍ମ ଅର୍ଥାତ୍ ସାଂଗୋପାଙ୍ଗ ଚତୁର୍ବେଦକୁ ଶବ୍ଦ, ଅର୍ଥ ଏବଂ ସଂବନ୍ଧ ସହିତ ଜ୍ଞାନପୂର୍ବକ ଧାରଣ କରେ, ସେତେବେଳେ ଜ୍ଞାନଜ୍ୟୋତିରେ ଜ୍ୟୋତିତ ହୋଇଉଠେ । ତାହାଠାରେ ସମସ୍ତ ଦିବ୍ୟଗୁଣ ନିବାସ କରନ୍ତି । ବିଦ୍ୱାନ୍‌ଗଣ ତାହାସହିତ ବନ୍ଧୁତ୍ୱ ସ୍ଥାପନ କରନ୍ତି । ସେହି ବ୍ରହ୍ମଚାରୀ କେବଳ ବ୍ରହ୍ମଚର୍ଯ୍ୟ ସାହାଯ୍ୟରେ ପ୍ରାଣ, ଦୀର୍ଘଜୀବନ, ଦୁଃଖକ୍ଲେଶର ନାଶ, ସକଳ ବିଦ୍ୟାରେ ନିପୁଣତା, ଉତ୍ତମ ବାଣୀ, ପବିତ୍ର ଆତ୍ମା, ଶୁଦ୍ଧ ହୃଦୟ, ପରମାତ୍ମା ଓ ଶ୍ରେଷ୍ଠ ପ୍ରଜ୍ଞାକୁ ଧାରଣ କରି ସଂସାରର ହିତନିମନ୍ତେ ସକଳ ପ୍ରକାର ବିଦ୍ୟାକୁ ପ୍ରକାଶ କରନ୍ତି ॥୬॥

## ବ୍ରହ୍ମଚର୍ଯ୍ୟକାଳଃ

ଏହି ବିଷୟରେ ଛାନ୍ଦୋଗ୍ୟୋପନିଷଦର ତୃତୀୟ ପ୍ରପାଠକର ଷୋଡଶ ଖଣ୍ଡର ପ୍ରମାଣ ନିମ୍ନପ୍ରକାର ଅଟେ ।

ମାତୃମାନ୍ ପିତୃମାନାଚାର୍ଯ୍ୟବାନ୍ ପୁରୁଷୋ ବେଦ ॥୧॥
ପୁରୁଷୋ ବାବ ଯଜ୍ଞସ୍ତସ୍ୟ ଯାନି ଚତୁର୍ବିଂଶ ବର୍ଷାଣି ତତ୍ ପ୍ରାତଃ ସବନଂ ଚତୁର୍ବିଂଶତ୍ୟକ୍ଷରା ଗାୟତ୍ରୀ ଗାୟତ୍ରଂ ପ୍ରାତଃ ସବନଂ ତଦସ୍ୟ ବସବୋଽନ୍ୱାୟତ୍ତାଃ ପ୍ରାଣା ବାବ ବସବ ଏତେ ହୀଦଂ ସର୍ବଂ ବାସୟନ୍ତି ॥୨॥
ତଂ ଚେଦେତସ୍ମିନ୍ ବୟସି କିଞ୍ଚିଦୁପତପେତ୍ ସ ବ୍ରୂୟାତ୍ ପ୍ରାଣା ବସବ ଇଦଂ ମେ ପ୍ରାତଃ ସବନଂ ମାଧ୍ୟନ୍ଦିନଂ ସବନମନୁସନ୍ତନୁତେତି ମାହଂ ପ୍ରାଣାନାଂ ବସୂନାଂ ମଧ୍ୟେ ଯଜ୍ଞୋ ବିଲୋପ୍ସୀୟେତ୍ୟୁଦ୍ଧୈବ ତତ ଏତ୍ୟଗଦୋ ହ ଭବତି ॥୩॥
ଅଥ ଯାନି ଚତୁଶ୍ଚତ୍ୱାରିଂଶଦ୍ୱର୍ଷାଣି ତନ୍ମାଧ୍ୟନ୍ଦିନଂ ସବନଂ ଚତୁଶ୍ଚତ୍ୱାରିଂଶଦକ୍ଷରା ତ୍ରିଷ୍ଟୁପ୍ ତ୍ରୈଷ୍ଟୁଭଂ ମାଧ୍ୟନ୍ଦିନଂ ସବନଂ ତଦସ୍ୟ ରୁଦ୍ରାଃ ଅନ୍ୱାୟତ୍ତାଃ ପ୍ରାଣା ବାବ ରୁଦ୍ରା ଏତେ ହୀଦଂ ସର୍ବଂ ରୋଦୟନ୍ତି ॥୪॥
ତଂ ଚେଦେତସ୍ମିନ୍ ବୟସି କିଞ୍ଚିଦୁପତପେତ୍ ସ ବ୍ରୂୟାତ୍ ପ୍ରାଣା ରୁଦ୍ରା ଇଦଂ ମେ ମାଧ୍ୟନ୍ଦିନଂ ସବନଂ ତୃତୀୟସବନମନୁସନ୍ତନୁତେତି ମାହଂ ପ୍ରାଣାନାଂ ରୁଦ୍ରାଣାଂ ମଧ୍ୟେ ଯଜ୍ଞୋ ବିଲୋପ୍ସୀୟେତ୍ୟୁଦ୍ଧୈବ ତତ ଏତ୍ୟଗଦୋ ହ ଭବତି ॥୫॥

ଅଥ ଯାନ୍ୟଷ୍ଟାଚତ୍ୱାରିଂଶଦ୍‌ବର୍ଷାଣି ତତ୍ ତୃତୀୟ ସବନମଷ୍ଟାଚତ୍ୱାରିଂଶଦକ୍ଷରା ଜଗତୀ ଜାଗତଂ ତୃତୀୟସବନଂ ତଦସ୍ୟାଦିତ୍ୟା ଅନ୍ୱାୟତ୍ତାଃ ପ୍ରାଣା ବାବାଦିତ୍ୟା ଏତେ ହୀଦଂ ସର୍ବମାଦଦତେ ॥୭॥

ତଂ ଚେଦେତସ୍ମିନ୍ ବୟସି କିଞ୍ଚି ଦୁପତପେତ୍ ସ ବ୍ରୂୟାତ୍ ପ୍ରାଣା ଆଦିତ୍ୟା ଇଦଂ ମେ ତୃତୀୟସବନ-ମାୟୁରନୁସନ୍ତନୁତେତି ମାହଂ ପ୍ରାଣା ନାମାଦିତ୍ୟାନାଂ ମଧ୍ୟେ ଯଜ୍ଞୋ ବିଲୋପ୍‌ସୀୟେତ୍ୟୁଦ୍ଧୈବ ତତ ଏତ୍ୟ-ଗଦୋ ହୈବ ଭବତି ॥୭॥

( ଛାନ୍ଦୋଗ୍ୟ.ଅ. ୩ ଖ. ୧୬।୧-୭ )

ଅର୍ଥ:—ଯେଉଁ ବାଳକକୁ ପାଞ୍ଚବର୍ଷ ବୟସ ପର୍ଯ୍ୟନ୍ତ ମାତା, ପାଞ୍ଚରୁ ଆଠବର୍ଷ ବୟସ ପର୍ଯ୍ୟନ୍ତ ପିତା, ଆଠରୁ ଅଡ଼ଚାଳିଶ, ଚାଳିଶ, ଛତିଶ, ତିରିଶ କିମ୍ବା ପଚିଶ ବର୍ଷ ପର୍ଯ୍ୟନ୍ତ ଏବଂ କନ୍ୟାକୁ ଆଠରୁ ଚବିଶ, ବାଇଶ, କୋଡ଼ିଏ, ଅଠର କିମ୍ବା ଷୋଳବର୍ଷ ପର୍ଯ୍ୟନ୍ତ ଆଚାର୍ଯ୍ୟଙ୍କଠାରୁ ଶିକ୍ଷାମିଳେ, ସେହିମାନେ ବିଦ୍ୟାବାନ୍ ବା ବିଦ୍ୟାବତୀ ହୋଇ ଧର୍ମାର୍ଥକାମ-ମୋକ୍ଷ ବିଷୟରେ କୁଶଳୀ ହୋଇ ପାରନ୍ତି ॥୧॥

ଏହି ମନୁଷ୍ୟଦେହ ଯଜ୍ଞ ଅର୍ଥାତ୍ ଠିକ୍‌ରୂପେ ଏହାକୁ ଆୟୁ ବଳାଦିରେ ସମ୍ପନ୍ନ କରିବା ନିମନ୍ତେ ନ୍ୟୂନାତିନ୍ୟୂନ ପକ୍ଷରେ ପୁରୁଷ ଚବିଶବର୍ଷ ପର୍ଯ୍ୟନ୍ତ ଏବଂ ସ୍ତ୍ରୀ ଷୋଳବର୍ଷ ପର୍ଯ୍ୟନ୍ତ, ଚବିଶ ଅକ୍ଷରରେ ଗାୟତ୍ରୀ ଛନ୍ଦ ପୂର୍ଣ୍ଣ ହେବାପରି, ବ୍ରହ୍ମଚର୍ଯ୍ୟାଶ୍ରମ ଯଥାବତ୍ ପୂର୍ଣ୍ଣ କରିବେ । ଏହାକୁ ପ୍ରାତଃ-

ସଞ୍ଚନ କୁହାଯାଏ, ଯଦ୍ୱାରା ଏହି ମନୁଷ୍ୟ ଦେହମଧ୍ୟରେ ବସୁ-ରୂପକ ପ୍ରାଣ ସ୍ଥାପିତ ହୁଏ ଏବଂ ତାହା ବଳବାନ୍ ହୋଇ ସମସ୍ତ ପ୍ରକାର ଦ୍ରବ୍ୟଗୁଣକୁ ଦେହ, ଆତ୍ମା ଓ ମନ ମଧ୍ୟରେ ସ୍ଥାପନ କରାଏ । ॥୨॥

ଯଦି କୌଣସି ବ୍ୟକ୍ତି ଚବିଶ ବର୍ଷ ପୂର୍ବରୁ କୌଣସି ବ୍ରହ୍ମଚାରୀଙ୍କୁ ବିବାହ କିମ୍ବା ବିଷୟଭୋଗ ବିଷୟରେ ଉପଦେଶ ଦେଇ ପ୍ରବର୍ତ୍ତାଇବେ ତେବେ ସେହି ବ୍ରହ୍ମଚାରୀ ତାଙ୍କୁ ଏହିପରି ଉତ୍ତର ଦେବେ— ଦେଖ ! ଯଦି ମୋର ପ୍ରାଣ, ମନ ଏବଂ ଇନ୍ଦ୍ରିୟ ପଚିଶ ବର୍ଷ ବୟସ ବେଳକୁ ବଳବାନ୍ ହୋଇନଥିବେ ତେବେତ୍ ମଧ୍ୟମ ସବନ ଅର୍ଥାତ୍ ଚଉରାଳିଶ ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ଧାରଣ କରିବାକୁ ମୋର ସାମର୍ଥ୍ୟ ରହି ନପାରେ ଏବଂ ପ୍ରଥମ ଆଶ୍ରମ ବ୍ରହ୍ମଚର୍ଯ୍ୟ ମଧ୍ୟମ ଆଶ୍ରମ ବ୍ରହ୍ମଚର୍ଯ୍ୟକୁ ସିଦ୍ଧକରେ । ମୁଁ ତୁମପରି ମୂର୍ଖ ନୁହେଁଯେ ଏହି ଦେହ, ପ୍ରାଣ, ଅନ୍ତଃକରଣ ଓ ଆତ୍ମା ସହିତ ସଂଯୁକ୍ତ ସମସ୍ତ ଶୁଭଗୁଣ, କର୍ମ ଓ ସ୍ୱଭାବର ମହାନ୍ ସାଧନ ଏହି ବ୍ରହ୍ମଚର୍ଯ୍ୟକୁ ଏତେ-ଶୀଘ୍ର ନଷ୍ଟ କରିଦେଇ ମନୁଷ୍ୟ ଦେହଧାରଣର ମହାନ୍ ଫଳ-ଲାଭରୁ ବଞ୍ଚିତ ହେବି । ସମସ୍ତ ଆଶ୍ରମର ମୂଳ, ସର୍ବୋତ୍ତମ କର୍ମରୂପକ ଏହି ଯେଉଁ ବ୍ରହ୍ମଚର୍ଯ୍ୟ ତାହା ସବୁକିଛିର ମୁଖ୍ୟ-କାରଣ । ଏହାକୁ ଖଣ୍ଡିତ କରି ମୁଁ ଦୁଃଖପାଇବାରରେ ନିଜର ସତ୍ତା ହଜାଇବାକୁ ଚାହେଁନାହିଁ । ଯେ ଆୟୁଷର ପ୍ରଥମ-ଭାଗରେ ବ୍ରହ୍ମଚର୍ଯ୍ୟ ପାଳନ କରେ, ସେ ବ୍ରହ୍ମଚର୍ଯ୍ୟ ସେବନ ସହିତ ବିଦ୍ୟା ପ୍ରାପ୍ତହୋଇ ରୋଗରହିତ ଜୀବନଯାପନ କରେ । ଏଣୁ ତୁମପରି ମୂର୍ଖ ମାନଙ୍କର କଥାମାନ ମୁଁ କଦାପି ବ୍ରହ୍ମଚର୍ଯ୍ୟ ଭଙ୍ଗ କରିବି ନାହିଁ ॥୩॥

ଏବଂ ଯେଉଁ ବ୍ୟକ୍ତି ଚଉରାଳିଶ ବର୍ଷ ପର୍ଯ୍ୟନ୍ତ ଅର୍ଥାତ୍ ଯେପରି ଚଉରାଳିଶ ଅକ୍ଷର ବିଶିଷ୍ଟ ତ୍ରିଷ୍ଟୁପ୍ ଛନ୍ଦ ହୋଇଥାଏ, ସେ ମଧ୍ୟମ ବ୍ରହ୍ମଚର୍ଯ୍ୟ ଧାରଣ କରେ, ସେହି ବ୍ରହ୍ମଚାରୀ ରୁଦ୍ର-ରୂପକ ପ୍ରାଣଙ୍କୁ ପ୍ରାପ୍ତହୁଏ। ସେମାନେ ବ୍ରହ୍ମଚାରୀ ନିକଟରେ କୌଣସି ଦୁଷ୍ଟର ଦୁଷ୍ଟତା ତିଷ୍ଠିପାରେ ନାହିଁ। ସେ ଦୁଷ୍ଟାଚାରୀ-ମାନଙ୍କୁ ସବୁବେଳେ କନ୍ଦାଇ କନ୍ଦାଇ ମାରେ ॥୪॥

ଯଦି ମଧ୍ୟମ ବ୍ରହ୍ମଚର୍ଯ୍ୟ ସେବନକାରୀ କୌଣସି ବ୍ରହ୍ମଚାରୀଙ୍କୁ କେହି କହିବେ ଯେ – ତୁ ଏହି ବ୍ରହ୍ମଚର୍ଯ୍ୟ ତ୍ୟାଗକରି ବିବାହ କରି ଆନନ୍ଦରେ ରହ ତାଙ୍କୁ ବ୍ରହ୍ମଚାରୀ ଏହିପରି ଉତ୍ତର ଦେବେ— ବ୍ରହ୍ମଚର୍ଯ୍ୟାଶ୍ରମ ସେବନଦ୍ୱାରା ଯେଉଁ ସୁଖମିଳେ ଏବଂ ବିଷୟ ସଂବନ୍ଧୀୟ ଅଧିକ ସୁଖ ବିଷୟରେ ଯାହା କୁହାଯାଏ, ସେସବୁ ବ୍ରହ୍ମଚର୍ଯ୍ୟ ପାଳନ ବିନା ସ୍ୱପ୍ନରେ ମଧ୍ୟ ମିଳେନାହିଁ। ଯେହେତୁ ସାଂସାରିକ ତଥା ପାରମାର୍ଥିକ ଉଭୟ ପ୍ରକାର ସୁଖ ବ୍ରହ୍ମଚାରୀ ଭିନ୍ନ ଅନ୍ୟ କାହାରିକୁ ମିଳେନାହିଁ। ଏଣୁ ମୁଁ ଏହି ସର୍ବୋତ୍ତମ ସୁଖପ୍ରାପ୍ତିର ସାଧନ ବ୍ରହ୍ମଚର୍ଯ୍ୟକୁ ଲୋପ ନକରି ବିଦ୍ୱାନ୍, ବଳବାନ୍, ଆୟୁଷ୍ମାନ୍ ଓ ଧର୍ମାତ୍ମାହୋଇ ସଂପୂର୍ଣ୍ଣ ଆନନ୍ଦ ଲାଭ କରିବି। ତୁମପରି ବୁଦ୍ଧିହୀନଙ୍କ କଥାରେ ପଡ଼ିଗୃହସ୍ଥହୋଇ ମୁଁ ବିବାହ କରି ନିଜକୁ ତଥା ନିଜ କୁଳକୁ ନଷ୍ଟଭ୍ରଷ୍ଟ କରିବି ନାହିଁ ॥୫॥

ବର୍ତ୍ତମାନ୍ ଅଡ଼ଚାଳିଶ ବର୍ଷ ପର୍ଯ୍ୟନ୍ତ ଯେପରିକି ଅଡ଼-ଚାଳିଶ ଅକ୍ଷରର ଜଗତୀଛନ୍ଦ ରହିଛି ସେହିପରି ଏହି ଶ୍ରେଷ୍ଠ ବ୍ରହ୍ମଚର୍ଯ୍ୟ ଦ୍ୱାରା ପୂର୍ଣ୍ଣ ବିଦ୍ୟା, ପୂର୍ଣ୍ଣ ବଳ, ପୂର୍ଣ୍ଣ ପ୍ରଜ୍ଞା, ପୂର୍ଣ୍ଣ ଶୁଭ ଗୁଣ, କର୍ମ ଓ ସ୍ୱଭାବଯୁକ୍ତ ହୋଇ ସୂର୍ଯ୍ୟପରି ପ୍ରକାଶ-ମାନ ବ୍ରହ୍ମଚାରୀ ସମସ୍ତ ବିଦ୍ୟାକୁ ଗ୍ରହଣ କରେ ॥୬॥

ଯଦି କେହି ଲୋକ ଏହି ବ୍ରହ୍ମଚାରୀଙ୍କୁ ତାଙ୍କର ସର୍ବୋତ୍ତମ ଧର୍ମରୁ ଭ୍ରଷ୍ଟ କରିବାର ଉପକ୍ରମ କରିବେ, ସେତେବେଳେ ସେହି ଆଚାର୍ଯ୍ୟ ବ୍ରହ୍ମଚାରୀ ଉତ୍ତର ଦେବେ— ହେ ମୂର୍ଖାତିମୂର୍ଖ ! ମୋ'ଠାରୁ ଦୂରେଇଯାଅ । ତୁମର ସେହି ଦୁର୍ଗନ୍ଧ ରୂପକ ଭ୍ରଷ୍ଟବାକ୍ୟଠାରୁ ମୁଁ ଦୂରେଇ ଯାଉଛି । ମୁଁ କଦାପି ଏହି ଉତ୍ତମ ବ୍ରହ୍ମଚର୍ଯ୍ୟକୁ ନଷ୍ଟ କରିବନାହିଁ । ଏହାକୁ ପୂର୍ଣ୍ଣ କରି ମୁଁ ସର୍ବରୋଗରହିତ ତଥା ସମସ୍ତ ପ୍ରକାର ବିଦ୍ୟାଯୁକ୍ତ ହେବା ସଙ୍ଗେ ସଙ୍ଗେ ଶୁଦ୍ଧଗୁଣ, କର୍ମ ଓ ସ୍ୱଭାବରେ ନିଜକୁ ମଣ୍ଡିତ କରିବି । ମୋର ଏହି ଧର୍ମାନୁକୂଳ ପ୍ରତିଜ୍ଞାକୁ ପରମେଶ୍ବର ଯଦି କୃପାକରି ପୂର୍ଣ୍ଣ କରନ୍ତି ତେବେ ମୁଁ ତୁମପରି ନିର୍ବୁଦ୍ଧିଆ ମାନଙ୍କୁ ଉପଦେଶ ଓ ବିଦ୍ୟାଶିକ୍ଷା ଦେଇ ବିଶେଷକରି ତୁମର ସନ୍ତାନ ମାନଙ୍କୁ ଆନନ୍ଦଯୁକ୍ତ କରାଇ ପାରିବି ॥୭॥

ଚତସ୍ରୋଽବସ୍ଥାଃ ଶରୀରସ୍ୟ ବୃଦ୍ଧିର୍ଯୌବନଂ ସଂପୂ-
ର୍ଣ୍ଣତା କିଞ୍ଚିତ୍ପରିହାଣିଶ୍ଚେତି । ତତ୍ରାଷୋଡ଼ଶାଦ୍
ବୃଦ୍ଧିଃ । ଆପଞ୍ଚବିଂଶତେର୍ଯୌବନମ୍ । ଆଚତ୍ୱା-
ରିଂଶତଃସଂପୂର୍ଣ୍ଣତା । ତତଃ କିଞ୍ଚିତ୍ପରିହାଣି-
ଶ୍ଚେତି ॥୧॥

ପଞ୍ଚବିଂଶେ ତତୋ ବର୍ଷେ ପୁମାନ୍ନାରୀ ତୁ ଷୋଡ଼ଶେ ।
ସମତ୍ୱା ଗତବୀର୍ଯ୍ୟୌ ତୌ ଜାନୀୟାତ୍ କୁଶଲୋ
ଭିଷକ୍ ॥୨॥

ଏହା ଧନ୍ୱନ୍ତରିକୃତ ସୁଶ୍ରୁତଗ୍ରନ୍ଥର ପ୍ରମାଣ ଅଟେ—

ଅର୍ଥ:— ଏହି ମନୁଷ୍ୟ ଦେହର ଚାରୋଟି ଅବସ୍ଥା ହୋଇଛି । ବୃଦ୍ଧି, ଯୌବନ, ସମ୍ପୂର୍ଣ୍ଣତା ଏବଂ ଚତୁର୍ଥରେ କିଞ୍ଚିତ୍ ହାନି କରାଇବାର ଅବସ୍ଥା । ଷୋଳ ବର୍ଷରୁ ପଚିଶ ବର୍ଷ ମଧ୍ୟରେ ପୂର୍ତ୍ତିକାଳୀ ବୃଦ୍ଧି ଅବସ୍ଥା ଅଟେ । ଯେଉଁ ବ୍ୟକ୍ତି ଏହି ବୃଦ୍ଧି ଅବସ୍ଥାରେ ବୀର୍ଯ୍ୟାଦିଧାତୁ ନଷ୍ଟକରିବ ସେ କୁଢ଼ାଢ଼ୀରେ ବୃକ୍ଷର ଗଣ୍ଡିକୁ ଛେଦନ କରିବାପରି କିମ୍ବା ଠେଙ୍ଗାରେ ମାଟିର ମାଠିଆକୁ ଭାଙ୍ଗିଦେବାପରି ନିଜର ସର୍ବସ୍ୱ ନଷ୍ଟକରି ପଶ୍ଚାତାପ କରିବ । ପରେ ଏହି ଅବସ୍ଥାକୁ ସଜାଡିବାପାଇଁ କୌଣସି ଉପାୟ ନଥିବ । ତତ୍ପରେ ଦ୍ୱିତୀୟ ଅବସ୍ଥା ଅର୍ଥାତ୍ ପଚିଶ-ବର୍ଷଠାରୁ ଚାଳିଶବର୍ଷ ପର୍ଯ୍ୟନ୍ତ ଯେଉଁ ଯୁବାବସ୍ଥା ତାହାକୁ ଯେ ଯଥାବିଧି ସଂରକ୍ଷଣ କରିବ ନାହିଁ ସେ ନିଜର ଭାଗ୍ୟକୁ ନଷ୍ଟ କରିବସିବ । ତୃତୀୟରେ ପୂର୍ଣ୍ଣ ଯୁବାବସ୍ଥା ୪୦ବର୍ଷରେ ହୁଏ । ଯେ ପ୍ରଥମେ ବ୍ରହ୍ମଚାରୀ ଥାଇକରି ପୁନଶ୍ଚ ଋତୁଗାମୀ, ପରସ୍ତ୍ରୀତ୍ୟାଗୀ, ଏକସ୍ତ୍ରୀବ୍ରତ, ଗର୍ଭଧାରଣପରେ ଏକବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚାରୀ ହେବନାହିଁ ତା'ର ପ୍ରଥମ ବ୍ରହ୍ମଚର୍ଯ୍ୟ ଧାରଣ ବୃଥାହେବ । ଚାଳିଶ ବର୍ଷ ପରଠାରୁ କିଞ୍ଚିତ୍ ହାନି-ରୂପକ ଅବସ୍ଥା ଅଟେ । ଏହି ଅବସ୍ଥାରେ ଯେ କିଞ୍ଚିତ୍‌ହାନି ବଦଳରେ ଅଧିକ ବୀର୍ଯ୍ୟହାନି କରିବେ ସେ ରାଜଯକ୍ଷ୍ମା, ଭଗ-ନ୍ଦର ଇତ୍ୟାଦି ରୋଗରେ ପୀଡିତ ହେବେ । ଯେ ଏହି ଚାରିଅବସ୍ଥାକୁ ଯଥାର୍ଥଭାବେ ସୁରକ୍ଷିତ ରଖିବେ ସେ ସବୁବେଳେ ନିଜେ ଆନନ୍ଦିତ ରହିବା ସଙ୍ଗେସଙ୍ଗେ ସଂସାରକୁ ସୁଖୀ କରି-ପାରିବେ ॥୧॥

କିନ୍ତୁ ଏଥିରେ ବିଶେଷ ଧ୍ୟାନଯୋଗ୍ୟର ବିଷୟ ଏହିଯେ ସ୍ତ୍ରୀ ଓ ପୁରୁଷଙ୍କର ଶରୀରରେ ପୂର୍ବୋକ୍ତ ଚାରିଅବସ୍ଥାର ସମୟ ସମାନ

ନୁହେଁ । ପଚାଶବର୍ଷର ପୁରୁଷ ଦେହରେ ଯେତିକି ସାମର୍ଥ୍ୟ, ଷୋଳବର୍ଷ ବୟସ୍କା ସ୍ତ୍ରୀ ଦେହରେ ପ୍ରାୟ ସେତିକି ସାମର୍ଥ୍ୟ ଥାଏ । ତେଣୁ ବହୁତଶୀଘ୍ର ବିବାହ କରିବାକୁ ଯେ ଚାହିଁବେ ସେ ପଚାଶବର୍ଷୀୟ ପୁରୁଷ ସହିତ ଷୋଳବର୍ଷୀୟା ସ୍ତ୍ରୀର ବିବାହ ଦେବେ, ଯେହେତୁ ଏହି ବୟସ ପାର୍ଥକ୍ୟରେ ଉଭୟଙ୍କର ସାମର୍ଥ୍ୟ ସମାନ ॥୨॥

ଏହି ଅବସ୍ଥାରେ ଯେଉଁ ବିବାହ କରାଯାଏ ତାହା ଅଧମ ବିବାହ ଅଟେ । ସତର ବର୍ଷୀୟା ସ୍ତ୍ରୀ ସହିତ ବୟାଳିଶବର୍ଷୀୟ ପୁରୁଷ, ଅଠର ବର୍ଷୀୟା ସ୍ତ୍ରୀ ସହିତ ଛତିଶବର୍ଷୀୟ ପୁରୁଷ, ଉଣେଇଶ ବର୍ଷୀୟା ସ୍ତ୍ରୀ ସହିତ ଅଠତିରିଶ ବର୍ଷୀୟ ପୁରୁଷର ବିବାହକୁ ମଧ୍ୟମ ବିବାହ କହନ୍ତି ଏବଂ କୋଡ଼ିଏ, ଏକୋଇଶ, ବାଇଶ ଓ ଚବିଶ ବର୍ଷୀୟା ସ୍ତ୍ରୀ ସହିତ ଯଥାକ୍ରମେ ଚାଳିଶ, ବୟାଳିଶ, ଚଉବାଳିଶ କିମ୍ବା ବୟାଳିଶ ଓ ଅଠଚାଳିଶ ବର୍ଷୀୟ ପୁରୁଷର ବିବାହକୁ ସର୍ବୋତ୍ତମ ବିବାହ କୁହାଯାଏ । ହେ ବ୍ରହ୍ମଚାରୀ ! ଏ ବିଷୟ ତୁ ଠିକ୍‌ରୂପେ ଜାଣିରଖ । ଭବିଷ୍ୟତ ଆଶ୍ରମରେ ତୋ'ର ଏହା ଆବଶ୍ୟକ ହେବ ।

ଯେଉଁ ମନୁଷ୍ୟ ନିଜର ସନ୍ତାନ, କୁଳ, ବନ୍ଧୁବାନ୍ଧବ ତଥା ଦେଶର ଉନ୍ନତି ଚାହାନ୍ତି ସେମାନେ ପୂର୍ବୋକ୍ତ ଏବଂ ପରବର୍ତ୍ତିତ ଉପଦେଶ ଗୁଡ଼ିକ ଯଥାବିଧି ପାଳନ କରିବା ଉଚିତ ।

**ଶ୍ରୋତ୍ରଂ ତ୍ୱକ୍ ଚକ୍ଷୁଷୀ ଜିହ୍ୱା ନାସିକା ଚୈବ ପଞ୍ଚମୀ ।**
**ପାୟୂପସ୍ଥଂ ହସ୍ତପାଦଂ ବାକ୍ ଚୈବ ଦଶମୀ ସ୍ମୃତା ॥୧॥**
**ବୁଦ୍ଧୀନ୍ଦ୍ରିୟାଣି ପଞ୍ଚୈଷାଂ ଶ୍ରୋତ୍ରାଦୀନ୍ୟନୁପୂର୍ବଶଃ ।**

କର୍ମେନ୍ଦ୍ରିୟାଣି ପଞ୍ଚୈଷାଂ ପାୟ୍ୱାଦୀନି ପ୍ରଚକ୍ଷତେ ॥୨॥
ଏକାଦଶଂ ମନୋ ଜ୍ଞେୟଂ ସ୍ୱଗୁଣେନୋଭୟାତ୍ମକମ୍ ।
ଯସ୍ମିନ୍ ଜିତେ ଜିତାବେତୌ ଭବତଃ ପଞ୍ଚକୌ ଗଣୌ ॥୩॥
ଇନ୍ଦ୍ରିୟାଣାଂ ବିଚରତାଂ ବିଷୟେଷ୍ୱପହାରିଷୁ ।
ସଂଯମେ ଯତ୍ନମାତିଷ୍ଠେଦ୍‌ବିଦ୍ୱାନ୍ ଯନ୍ତେବ ବାଜିନାମ୍ ॥୪॥
ଇନ୍ଦ୍ରିୟାଣାଂ ପ୍ରସଙ୍ଗେନ ଦୋଷମୃଚ୍ଛତ୍ୟସଂଶୟମ୍ ।
ସଂନିୟମ୍ୟ ତୁ ତାନ୍ୟେବ ତତଃ ସିଦ୍ଧିଂ ନିୟଚ୍ଛତି ॥୫॥
ବେଦାସ୍ତ୍ୟାଗଶ୍ଚ ଯଜ୍ଞାଶ୍ଚ ନିୟମାଶ୍ଚ ତପାଂସି ଚ ।
ନ ବିପ୍ରଦୁଷ୍ଟଭାବସ୍ୟ ସିଦ୍ଧିଂ ଗଚ୍ଛନ୍ତି କର୍ହିଚିତ୍ ॥୬॥
ବଶେ କୃତ୍ୱେନ୍ଦ୍ରିୟଗ୍ରାମଂ ସଂଯମ୍ୟ ଚ ମନସ୍ତଥା ।
ସର୍ବାନ୍ ସଂସାଧୟେଦର୍ଥାନକ୍ଷିଣ୍ୱନ୍ ଯୋଗତସ୍ତନୁମ୍ ॥୭॥
( ମନୁ.ଅ. ୨।୯୦-୯୨,୮୮,୯୩,୯୭,୧୦୦ )

ଯମାନ୍ ସେବେତ ସତତଂ ନ ନିୟମାନ୍ କେବଲାନ୍ ବୁଧଃ ।
ଯମାନ୍ ପତତ୍ୟକୁର୍ବାଣୋ ନିୟମାନ୍ କେବଲାନ୍ ଭଜନ ॥୮॥ ( ମନୁ. ୪।୨୦୪ )

ଅଭିବାଦନଶୀଳସ୍ୟ ନିତ୍ୟ ବୃଦ୍ଧୋପସେବିନଃ ।
ଚତ୍ୱାରି ତସ୍ୟ ବର୍ଦ୍ଧନ୍ତେ ଆୟୁର୍ବିଦ୍ୟା ଯଶୋ ବଲମ୍
॥୯॥

ଅଜ୍ଞୋ ଭବତି ବୈ ବାଲଃ ପିତା ଭବତି ମନ୍ତ୍ରଦଃ ।
ଅଜ୍ଞଂ ହି ବାଲମିତ୍ୟାହୁଃ ପିତେତ୍ୟେବ ତୁ ମନ୍ତ୍ରଦମ୍
॥୧୦॥

ନ ହାୟନୈର୍ନ ପଲିତୈର୍ନ ବିତ୍ତେନ ନ ବନ୍ଧୁଭିଃ ।
ଋଷୟଶ୍ଚକ୍ରିରେ ଧର୍ମଂ ଯୋଽନୂଚାନଃ ସ ନୋ ମହାନ୍
॥୧୧॥

ନ ତେନ ବୃଦ୍ଧୋ ଭବତି ଯେନାସ୍ୟ ପଲିତଂ ଶିରଃ ।
ଯୋ ବୈ ଯୁବାପ୍ୟଧୀୟାନସ୍ତଂ ଦେବାଃସ୍ଥବିରଂ ବିଦୁଃ
॥୧୨॥

ଯଥା କାଷ୍ଠମୟୋ ହସ୍ତୀ ଯଥା ଚର୍ମମୟୋ ମୃଗଃ ।
ଯଶ୍ଚ ବିପ୍ରୋଽନଧୀୟାନସ୍ତ୍ରୟସ୍ତେ ନାମ ବିଭ୍ରତି ॥୧୩॥
ସଂମାନାଦ୍ ବ୍ରାହ୍ମଣୋ ନିତ୍ୟମୁଦ୍ୱିଜେତ ବିଷାଦିବ ।
ଅମୃତସ୍ୟେବ ଚାକାଂକ୍ଷେଦବମାନସ୍ୟ ସର୍ବଦା ॥୧୪॥
ବେଦମେବ ସଦାଭ୍ୟସ୍ୟେତ୍ତପସ୍ତପ୍ସ୍ୟନ୍ ଦ୍ୱିଜୋତ୍ତମଃ
ବେଦାଭ୍ୟାସୋ ହି ବିପ୍ରସ୍ୟ ତପଃ ପରମିହୋଚ୍ୟତେ
॥୧୫॥

ଯୋଽନଧୀତ୍ୟ ଦ୍ୱିଜୋ ବେଦମନ୍ୟତ୍ର କୁରୁତେ ଶ୍ରମମ୍ ।
ସ ଜୀବନ୍ନେବ ଶୂଦ୍ରତ୍ୱମାଶୁ ଗଚ୍ଛତି ସାନ୍ୱୟଃ ॥୧୬॥
ଯଥା ଖନନ୍ ଖନିତ୍ରେଣ ନରୋ ବାର୍ଯ୍ୟଧିଗଚ୍ଛତି ।
ତଥା ଗୁରୁଗତାଂ ବିଦ୍ୟାଂ ଶୁଶ୍ରୂଷୁରଧିଗଚ୍ଛତି ॥୧୭॥
ଶ୍ରଦ୍ଦଧାନଃ ଶୁଭାଂ ବିଦ୍ୟାମାଦଦୀତାବରାଦପି ।
ଅନ୍ତ୍ୟାଦପି ପରଂ ଧର୍ମଂ ସ୍ତ୍ରୀରତ୍ନଂ ଦୁଷ୍କୁଲାଦପି ॥୧୮॥
ବିଷାଦପ୍ୟମୃତଂ ଗ୍ରାହ୍ୟଂ ବାଲାଦପି ସୁଭାଷିତମ୍ ।
ବିବିଧାନି ଚ ଶିଳ୍ପାନି ସମାଦେୟାନି ସର୍ବତଃ ॥୧୯॥

ଏ ସମସ୍ତ ଶ୍ଳୋକ ମନୁସ୍ମୃତିର ଦ୍ୱିତୀୟ ଅଧ୍ୟାୟର ଶ୍ଳୋକ— ୧୨୧,୧୫୩,୧୫୪,୧୫୬,୧୫୭,୧୭୨,୧୭୬,୧୬୮, ୨୧୮,୨୩୮,୨୩୯,୨୪୦ ଅଟେ ।

ଅର୍ଥ:— କାନ, ତ୍ୱକ୍, ନେତ୍ର, ଜିଭ, ନାସିକା, ମଳେନ୍ଦ୍ରିୟ, ମୂତ୍ରେନ୍ଦ୍ରିୟ, ହାତ, ପାଦ, ବାଣୀ— ଏହି ଦଶଟି ଇନ୍ଦ୍ରିୟ ଶରୀରରେ ଅଛି ॥୧॥

ଏମାନଙ୍କ ମଧ୍ୟରୁ କର୍ଣ୍ଣ ପ୍ରଭୃତି ପାଞ୍ଚଟି ଇନ୍ଦ୍ରିୟଙ୍କୁ ଜ୍ଞାନେନ୍ଦ୍ରିୟ ଏବଂ ପାୟୁ ପ୍ରଭୃତି ପାଞ୍ଚଟି ଇନ୍ଦ୍ରିୟକୁ କର୍ମେନ୍ଦ୍ରିୟ କୁହାଯାଏ ।୨। ଏକାଦଶ ଇନ୍ଦ୍ରିୟ ମନ ଅଟେ । ସେ ନିଜର ସ୍ମୃତି ପ୍ରଭୃତି ଗୁଣଦ୍ୱାରା ଇନ୍ଦ୍ରିୟ ସହିତ ସମ୍ବନ୍ଧ ରଖେ । ତେଣୁ ମନକୁ ଜୟ କଲେ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟଙ୍କୁ ଜୟ କରିହୁଏ ।୩। ଯେପରି ସାରଥି ଘୋଡ଼ାକୁ କୁପଥରେ ଚଳାଏ ନାହିଁ, ସେହିପରି ବିଦ୍ୱାନ୍ ବ୍ରହ୍ମଚାରୀ ଆକର୍ଷଣକାରୀ ବିଷୟବାସନା ଆଡ଼କୁ ଧାଉଁଥିବା ଇନ୍ଦ୍ରିୟଗଣଙ୍କୁ ଆୟତ୍ତରେ ରଖିବାକୁ ସର୍ବଦା ପ୍ରଚେଷ୍ଟା

କରେ ।।୪।। ବ୍ରହ୍ମଚାରୀ ଇନ୍ଦ୍ରିୟମାନଙ୍କ ସହିତ ମନକୁ ଯୁକ୍ତକଲେ ନିଶ୍ଚିତରୂପେ ଦୋଷଯୁକ୍ତ ହୋଇଯାଏ ଏବଂ ଏହି ଦଶଟି ଇନ୍ଦ୍ରିୟଙ୍କୁ ଆୟତ୍ତରେ ରଖିବାଦ୍ୱାରା ସିଦ୍ଧି ପ୍ରାପ୍ତ ହୁଏ ।।୫।। ଯାହାର ବ୍ରାହ୍ମଣତ୍ୱ ( ସମ୍ପୂର୍ଣ୍ଣ ଆଶା ନ କରିବା ବା ଇନ୍ଦ୍ରିୟଗଣଙ୍କୁ ବଶରେ ରଖିବା ) ବିପର୍ଯ୍ୟସ୍ତ ହୁଏ କିମ୍ବା ଯାହାର ବିଶେଷ ପ୍ରଭାବ ( ବର୍ଣ୍ଣାଶ୍ରମର ଗୁଣ, କର୍ମ ) ବିପର୍ଯ୍ୟସ୍ତ ହୁଏ, ସେହି ପୁରୁଷର ବେଦପଠନ, ତ୍ୟାଗ ( ସନ୍ନ୍ୟାସ ଗ୍ରହଣ, ) ଯଜ୍ଞ ( ଅଗ୍ନିହୋତ୍ରାଦି ) କରିବା, ( ବ୍ରହ୍ମଚର୍ଯ୍ୟାଶ୍ରମାଦି ) ନିୟମ କରିବା, ତପ ( ନିନ୍ଦା, ସ୍ତୁତି, ହାନି, ଲାଭ ସହିବା ) କରିବା ପ୍ରଭୃତି କର୍ମ କଦାପି ସିଦ୍ଧ ହୁଏନାହିଁ । ତେଣୁ ବ୍ରହ୍ମଚାରୀ ନିଜର ନିୟମଧର୍ମକୁ ଯଥାବତ୍ ପାଳନକରି ସିଦ୍ଧି ପ୍ରାପ୍ତ ହେବା ଆବଶ୍ୟକ ।।୬।। ବ୍ରହ୍ମଚାରୀ ପୁରୁଷ ସମସ୍ତ ଇନ୍ଦ୍ରିୟଙ୍କୁ ବଶୀଭୂତ କରି ଏବଂ ଆତ୍ମା ସହିତ ମନକୁ ସଂଯୁକ୍ତ କରି ଯୋଗାଭ୍ୟାସଦ୍ୱାରା ଶରୀରକୁ କିଞ୍ଚିତ୍ କିଞ୍ଚିତ୍ କଷ୍ଟଦେଇ ନିଜର ସମସ୍ତ ଆବଶ୍ୟକତା ପୂର୍ଣ୍ଣ କରିବେ ।।୭।। ବୁଦ୍ଧିମାନ୍ ବ୍ରହ୍ମଚାରୀ ପ୍ରତ୍ୟହ ନିୟମ ସହିତ ଯମ† ପାଳନ କରିବେ । କାରଣ ଯମ ପାଳନ ତ୍ୟାଗକରି କେବଳ ନିୟମ* ପାଳନ କରିବାଦ୍ୱାରା ସମୟ ସମୟରେ

---

† ଅହିଂସାସତ୍ୟାସ୍ତେୟବ୍ରହ୍ମଚର୍ଯ୍ୟାପରିଗ୍ରହାଃ ଯମାଃ ।

॥ ଯୋଗଦ: ୨-୩୦ ॥

ଅହିଂସା, ସତ୍ୟଭାଷଣ, ଚୋରୀତ୍ୟାଗ, ବୀର୍ଯ୍ୟରକ୍ଷଣ ଏବଂ ବିଷୟଭୋଗ ପ୍ରତି ଘୃଣାଭାବ— ଏହି ପାଞ୍ଚ କର୍ମର ନାମ ଯମ ॥

* ଶୌଚ ସନ୍ତୋଷତପଃ ସ୍ୱାଧ୍ୟାୟେଶ୍ୱର ପ୍ରଣିଧାନାନି ନିୟମାଃ ॥

॥ ଯୋଗଦ: ୨-୩୨ ॥

ଶୌଚ, ସନ୍ତୋଷ, ତପ ( ହାନି ଲାଭ ଆଦି ଦ୍ୱନ୍ଦ୍ୱର ସହନ ) ସ୍ୱାଧ୍ୟାୟ ( ବେଦର ପଠନ ), ଈଶ୍ୱର ପ୍ରଣିଧାନ ( ସର୍ବସ୍ୱ ଈଶ୍ୱରାର୍ପଣ )— ଏହି ପାଞ୍ଚକର୍ମ ନିୟମର ଅନ୍ତର୍ଭୁକ୍ତ ॥

ମନୁଷ୍ୟ ନିଜର କର୍ତ୍ତବ୍ୟରୁ ପତିତ ହୋଇଥାଏ । ଏଣୁ ଯମ-ପାଳନ ସହିତ ପ୍ରତ୍ୟହ ସେ ନିୟମ ପାଳନ କରିବେ ॥୮॥ ଅଭିବାଦନ କରିବା ଯାହାର ସ୍ୱଭାବ ଏବଂ ଯେ ପ୍ରତ୍ୟହ ବୃଦ୍ଧମାନଙ୍କର ସେବା କରେ, ତାର ଆୟୁ, ବିଦ୍ୟା, କୀର୍ତ୍ତି ଏବଂ ବଳ ନିତ୍ୟପ୍ରତି କ୍ରମଶଃ ବୃଦ୍ଧି ଲାଭକରେ । ତେଣୁ ବ୍ରହ୍ମଚାରୀ ନିଜର ଆଚାର୍ଯ୍ୟ, ପିତା, ମାତା ଓ ଅତିଥି ମହାତ୍ମା-ମାନଙ୍କୁ ପ୍ରତିଦିନ ନମସ୍କାର କରି ସେବା କରିବେ ॥୯॥

ଯେ କିଛି ବିଦ୍ୟାଲାଭ କରିନାହିଁ ସେ ଅଜ୍ଞ, ସେ ବାଳକ ଏବଂ ଯେ ମନ୍ତ୍ରଦ ଅର୍ଥାତ୍ ଯେ ବିଦ୍ୟାଦାତା, ବିଜ୍ଞାନଦାତା, ବିଦ୍ୟା ଓ ବୁଦ୍ଧିରେ ନିପୁଣ, ସେ ପିତୃସ୍ଥାନୀୟ । ଏହି କାରଣରୁ ହିଁ ସତ୍ପୁରୁଷମାନେ ଅଜ୍ଞବ୍ୟକ୍ତିକୁ ବାଳକ ଓ ମନ୍ତ୍ରଦାତାଙ୍କୁ ପିତା ବୋଲି କହିଥାନ୍ତି । ଏଣୁ ପ୍ରଥମେ ବ୍ରହ୍ମଚର୍ଯ୍ୟାଶ୍ରମ ସଂପନ୍ନହୋଇ ବିଦ୍ୟାବାନ୍ ହେବା ଉଚିତ୍ ॥୧୦॥ ଧର୍ମବେତ୍ତା ଋଷିଗଣ ବୟସ ପକ୍ୱକେଶ, ପଳିତ ଅଙ୍ଗ, ଧନ ବା ବନ୍ଧୁଜନଙ୍କୁ ଶ୍ରେଷ୍ଠତ୍ୱର କାରଣବୋଲି ମାନନ୍ତି ନାହିଁ । କିନ୍ତୁ ଏହା ଧର୍ମବୋଲି ସ୍ଥିର କରିଛନ୍ତିଯେ, ଯେଉଁବ୍ୟକ୍ତି ଆମମାନଙ୍କ ମଧ୍ୟରେ ବାଦବିବାଦର ଉତ୍ତରଦାତା ଅର୍ଥାତ୍ ବକ୍ତା ସେ ହିଁ ଶ୍ରେଷ୍ଠ । ଅତଏବ ସଂସାରରେ ଯାହାଦ୍ୱାରା ଶ୍ରେଷ୍ଠତ୍ୱ ସ୍ଥାପିତ ହୁଏ ଏବଂ ଅନ୍ୟର ଉତ୍ତର ଦେବାରେ ଅତି ନିପୁଣତା ଆସେ, ସେହି ବ୍ରହ୍ମଚର୍ଯ୍ୟାଶ୍ରମ ସଂପନ୍ନ ହୋଇ ବିଦ୍ୟାବାନ୍ ହେବା ଉଚିତ୍ ॥୧୧॥ ତେଣୁ ମଥା ନଇଁଗଲେ ବା କେଶ ପାଚିଗଲେ କେହି ବୃଦ୍ଧ ହୁଅନ୍ତି ନାହିଁ । ଯୁବକ ବି ବିଦ୍ୟାର୍ଜନ କରି ବିଦ୍ୱାନ୍ ହେଲେ ବିଦ୍ୱାନ୍‌ମାନେ ତାହାକୁ ବୃଦ୍ଧବୋଲି ଜାଣନ୍ତି ଓ ମାନ୍ୟ କରନ୍ତି । ଅତଏବ ବ୍ରହ୍ମଚର୍ଯ୍ୟାଶ୍ରମ ସଂପନ୍ନ ହୋଇ ବିଦ୍ୟାର୍ଜନ କରିବା ଉଚିତ୍ ॥୧୨॥

ଯେପରି କାଷ୍ଠ ନିର୍ମିତ ହସ୍ତୀ ବା ଚର୍ମ୍ମ ନିର୍ମିତ ମୃଗ, ସେହିପରି ବିଦ୍ୟାବିହୀନ ବିପ୍ର ଅର୍ଥାତ୍ ବ୍ରାହ୍ମଣ ବା ବୁଦ୍ଧିମାନ୍ ବ୍ୟକ୍ତି ଅଟନ୍ତି। ଏହି ତିନି— ହସ୍ତୀ, ମୃଗ ଓ ବିପ୍ର କେବଳ ନାମ ମାତ୍ରହିଁ ଧାରଣ କରନ୍ତି। ଅତଏବ ବ୍ରହ୍ମଚର୍ଯ୍ୟାଶ୍ରମ ସଂପନ୍ନ ହୋଇ ବିଦ୍ୟାପାଠ କରିବା ଉଚିତ ।।୧୩।।

ବ୍ରାହ୍ମଣଙ୍କୁ ସମ୍ମାନ ବିଷବତ୍ ମନେକରି ତାଠାରୁ ନିତ୍ୟ ଉଦାସୀନ ରହିବେ ଏବଂ ଅପମାନକୁ ଅମୃତଭଳି ମନେକରି ସର୍ବଦା ତାହାର ଆକାଂକ୍ଷା କରିବେ। ଅର୍ଥାତ୍ ବ୍ରହ୍ମଚର୍ଯ୍ୟାଦି ଆଶ୍ରମପାଇଁ ଭିକ୍ଷାମାତ୍ର ଯାଚନା କରିବେ, କେବେ ମାନ ଇଚ୍ଛା କରିବେ ନାହିଁ ।।୧୪।।

ଦ୍ୱିଜୋତ୍ତମ ଅର୍ଥାତ୍ ବ୍ରାହ୍ମଣ ମାନଙ୍କ ମଧ୍ୟରେ ଉତ୍ତମ ସଜ୍ଜନବ୍ୟକ୍ତି ସର୍ବଦା ତପଶ୍ଚର୍ଯ୍ୟା କରି ବେଦାଭ୍ୟାସହିଁ କରିବେ । କାରଣ ବ୍ରାହ୍ମଣ ବା ବୁଦ୍ଧିମାନ ବ୍ୟକ୍ତିପକ୍ଷେ ବେଦାଭ୍ୟାସ କରିବା ସଂସାରରେ ପରମ ତପସ୍ୟା ବୋଲି କୁହାଯାଇଛି । ଏଣୁ ବ୍ରହ୍ମଚର୍ଯ୍ୟାଶ୍ରମ ସଂପନ୍ନ ହୋଇ ଅବଶ୍ୟ ବେଦବିଦ୍ୟା ଅଧ୍ୟୟନ କରିବେ ।।୧୫।।

ଯେଉଁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବେଦପାଠ ନକରି ଅନ୍ୟଶାସ୍ତ୍ରରେ ଶ୍ରମକରେ, ସେ ଜୀବିତାବସ୍ଥାରେ ହିଁ ସବଂଶେ ଶୂଦ୍ରତ୍ୱପ୍ରାପ୍ତ ହୁଏ । ଅତଏବ ବ୍ରହ୍ମଚର୍ଯ୍ୟାଶ୍ରମ ସଂପନ୍ନ ହୋଇ ଅବଶ୍ୟ ବେଦବିଦ୍ୟା ଅଧ୍ୟୟନ କରିବେ ।।୧୬।।

ଯେପରି ଖନିତ୍ରଦ୍ୱାରା ଖନନ କରି ମନୁଷ୍ୟ ଜଳପ୍ରାପ୍ତ ହୁଏ, ସେହିଭଳି ଗୁରୁଙ୍କର ସେବାକରି ମନୁଷ୍ୟ ଗୁରୁଲବ୍ଧ ବିଦ୍ୟାଲାଭ କରେ । ଏଣୁ ବ୍ରହ୍ମଚର୍ଯ୍ୟାଶ୍ରମ ସଂପନ୍ନ ହୋଇ ଗୁରୁଜନ ମାନଙ୍କର ସେବାକରି ତାଙ୍କ ନିକଟରେ ବେଦାଧ୍ୟୟନ କରିବେ ଓ ତାଙ୍କର ବାକ୍ୟ ଶ୍ରବଣ କରିବେ ।।୧୭।।

ଉତ୍ତମ ବିଦ୍ୟାପ୍ରାପ୍ତ ଶ୍ରଦ୍ଧାଶୀଳ ପୁରୁଷ ନିଜ ଅପେକ୍ଷା ନିକୃଷ୍ଟ ବ୍ୟକ୍ତି ନିକଟରୁ ବି ବିଦ୍ୟା ଗ୍ରହଣ କରିବେ । ନୀଚ ଜାତି ହେଲେହିଁ ଉତ୍ତମ ଧର୍ମ ଓ ନିନ୍ଦନୀୟ କୁଳ ହେଲେହିଁ ଉତ୍ତମ ସ୍ତ୍ରୀ ଗ୍ରହଣ କରିବେ—ଏହାହିଁ ନୀତି । ଏଣୁ ଗୃହାଶ୍ରମରେ ପୂର୍ବବର୍ତ୍ତୀ ବ୍ରହ୍ମଚର୍ଯ୍ୟାଶ୍ରମ ସମ୍ପନ୍ନ ହୋଇ କୌଣସି ନା କୌଣସି ସ୍ଥାନରେ ଉତ୍ତମ ବିଦ୍ୟା ଅଧ୍ୟୟନ କରିବେ, ଉତ୍ତମ ଧର୍ମ ଶିକ୍ଷା କରିବେ ଏବଂ ବ୍ରହ୍ମଚର୍ଯ୍ୟ ଧାରଣପରେ ଗୃହାଶ୍ରମକୁ ଆସି ଉତ୍ତମ ସ୍ତ୍ରୀ ବିବାହ କରିବେ ॥୧୮॥ ବିଷରୁ ମଧ୍ୟ ଅମୃତ ତଥା ବାଳକ ଠାରୁବି ଉତ୍ତମ କଥା ଗ୍ରହଣ କରିବେ ଏବଂ ସମସ୍ତଙ୍କ ନିକଟରୁ ନାନାବିଧ ଶିଳ୍ପକାର୍ଯ୍ୟ ଉତ୍ତମରୂପେ ଶିକ୍ଷା କରିବେ । ତେଣୁ ବ୍ରହ୍ମଚର୍ଯ୍ୟାଶ୍ରମ ସମ୍ପନ୍ନ ହୋଇ ଦେଶ ବିଦେଶ ଭ୍ରମଣ-ପୂର୍ବକ ଉତ୍ତମ ଗୁଣ ଶିକ୍ଷା କରିବା ବିଧେୟ ॥୧୯॥

**ଯାନ୍ୟନବଦ୍ୟାନି କର୍ମାଣି ତାନି ସେବିତବ୍ୟାନି, ନୋ ଇତରାଣି । ଯାନ୍ୟସ୍ମାକଂ ସୁଚରିତାନି ତାନି ତ୍ୱୟୋପାସ୍ୟାନି, ନୋ ଇତରାଣି । ଯେ କେ ଚାସ୍ମ-ଚ୍ଛ୍ରେୟାଂସୋ ବ୍ରାହ୍ମଣାଃ, ତେଷାଂ ତ୍ୱୟାଽସନେନ ପ୍ରଶ୍ୱସିତବ୍ୟମ୍ ॥** ( ତୈତ୍ତିରୀୟାରଣ୍ୟକ.ପ୍ରପା. ୭।ଅନୁ ୧୧ )

**ଋତଂ ତପଃ ସତ୍ୟଂ ତପଃ ଶ୍ରୁତଂ ତପଃ ଶାନ୍ତଂ ତପୋ ଦମସ୍ତପଶ୍ଶମସ୍ତପୋ ଦାନଂ ତପୋ ଯଜ୍ଞସ୍ତପୋ ବ୍ରହ୍ମଭୂର୍ଭୁବଃ ସୁବର୍ବ୍ରହ୍ମୈତଦୁପାସ୍ୱୈତତ୍ତପଃ ॥୨॥**

( ତୈତ୍ତିରୀୟ.ପ୍ରପା.୧୦।ଅନୁ୮ )



ଅର୍ଥ:—ହେ ଶିଷ୍ୟ ! ଯେଉଁ କାର୍ଯ୍ୟ ଅନିନ୍ଦିତ, ପାପରହିତ ବା ଅନ୍ୟାଯ୍ୟ, ଅଧର୍ମ ରହିତ, ତାହାକୁ ସେବନ କର । ଏହାର ବିରୁଦ୍ଧକର୍ମ ସେବନ କରନା । ହେ ଶିଷ୍ୟ । ଆମ୍ଭମାନଙ୍କର ଅର୍ଥାତ୍ ପିତା, ମାତା, ଆଚାର୍ଯ୍ୟଙ୍କଠାରେ ଯେଉଁ ସତ୍‌କର୍ମ ରହିଛି ତାହା ଆଚରଣ କର ଏବଂ ଯାହା ଆମ୍ଭମାନଙ୍କର ଦୁଷ୍ଟକର୍ମ ତାହାର ଆଚରଣ କରନା । ହେ ବ୍ରହ୍ମଚାରୀ ! ଯେ ଆମ୍ଭମାନଙ୍କ ମଧ୍ୟରେ ଧର୍ମାତ୍ମା, ଶ୍ରେଷ୍ଠ, ବ୍ରହ୍ମବିତ୍ ବିଦ୍ୱାନ୍ ଅଟନ୍ତି, ତାଙ୍କ ନିକଟରେ ବସ, ତାଙ୍କର ସଙ୍ଗତ କର ଏବଂ ତାଙ୍କୁ ବିଶ୍ୱାସ କର ॥୨॥

ହେ ଶିଷ୍ୟ ! ଯଥାର୍ଥ ଗ୍ରହଣ, ସତ୍ୟର ସମ୍ମାନ, ସତ୍ୟ କଥନ, ବେଦାଦି ସତ୍ୟଶାସ୍ତ୍ର ଶ୍ରବଣ, ନିଜ ମନକୁ ଅଧର୍ମାଚରଣରେ ଯିବାକୁ ନଦେବା, ଶ୍ରୋତାଦି ଇନ୍ଦ୍ରିୟମାନଙ୍କୁ ଦୁଷ୍ଟାଚରଣରୁ ରୋକି ଶ୍ରେଷ୍ଠାଚରଣରେ ଲଗାଇବା, କ୍ରୋଧାଦି ତ୍ୟାଗପୂର୍ବକ ଶାନ୍ତ ରହିବା, ବିଦ୍ୟାଦି ଶୁଭଗୁଣଦାନ କରିବା, ଅଗ୍ନିହୋତ୍ରାଦି ଓ ବିଦ୍ୱାନ୍ ମାନଙ୍କ ସଙ୍ଗ କରିବା, ଯେତେ ଭୂମି, ଅନ୍ତରୀକ୍ଷ ଏବଂ ସୂର୍ଯ୍ୟାଦିଲୋକର ପଦାର୍ଥ ଅଛି, ତାହାର ଯଥାଶକ୍ତି ଜ୍ଞାନଲାଭ କରିବା ଏବଂ ଯୋଗାଭ୍ୟାସ, ପ୍ରାଣାୟାମ ଏକ ବ୍ରହ୍ମ ପରମାତ୍ମାଙ୍କର ଉପାସନା କରିବା, ଏସବୁ କର୍ମ କରିବା ହିଁ ପ୍ରକୃତ ତପ ଅଟେ ॥୨॥

ଋତଞ୍ଚ ସ୍ୱାଧ୍ୟାୟପ୍ରବଚନେ ଚ । ସତ୍ୟଞ୍ଚ ସ୍ୱାଧ୍ୟାୟପ୍ର-ବଚନେ ଚ । ତପଶ୍ଚ ସ୍ୱାଧ୍ୟା··· । ଦମଶ୍ଚ ସ୍ୱାଧ୍ୟା··· । ଶମଶ୍ଚ ସ୍ୱାଧ୍ୟା··· । ଅଗ୍ନୟଶ୍ଚ ସ୍ୱାଧ୍ୟା··· । ଅଗ୍ନିହୋତ୍ରଂ ଚ ସ୍ୱାଧ୍ୟା··· । ସତ୍ୟମିତି ସତ୍ୟବଚା ରାଥୀତରଃ । ତପ

ଋତଂ ତପଃସ୍ୱାଧ୍ୟାୟପ୍ରବଚନେ ଚ । ସତ୍ୟଂ ତପଃସ୍ୱାଧ୍ୟାୟପ୍ରବଚନେ ଚ । ... ସତ୍ୟମିତି ସତ୍ୟବଚା ରାଥୀତରଃ । ତପ ଇତି ତପୋନିତ୍ୟଃ ପୌରୁଶିଷ୍ଟିଃ । ସ୍ୱାଧ୍ୟାୟପ୍ରବଚନେ ଏବେତି ନାକୋ ମୌଦ୍‌ଗଲ୍ୟଃ । ତଦ୍ଧି ତପସ୍ତଦ୍ଧି ତପଃ ॥୩॥

ତୈ. ଶିକ୍ଷା. ପ୍ରପା. ୭। ଅନୁ ୯ ॥

ଅର୍ଥ:—ହେ କୃତ୍ସ୍ନଗୁଣ ! ତୁ ସତ୍ୟକୁ ଧାରଣ କର, ପଢ଼ ଏବଂ ପଢ଼ାଅ । ସତ୍ୟୋପଦେଶ କରିବା କେବେହେଲେ ଛାଡ଼ନାହିଁ, ସର୍ବଦା ସତ୍ୟ କହ ଏବଂ ପଢ଼ ଓ ପଢ଼ାଅ । ହର୍ଷ, ଶୋକାଦିକୁ ଛାଡ଼, ପ୍ରାଣାୟାମ ଯୋଗାଭ୍ୟାସ ପୂର୍ବକ ପଢ଼ ଓ ପଢ଼ାଅ । ନିଜର ଇନ୍ଦ୍ରିୟମାନଙ୍କୁ ଖରାପ କାମରୁ ଦୂରେଇ ଭଲକାମରେ ଲଗାଇ, ପଢ଼ ଓ ପଢ଼ାଅ । ନିଜର ଅନ୍ତଃକରଣ ଓ ଆତ୍ମାକୁ ଅନ୍ୟାୟାଚରଣରୁ ଦୂରେଇ ନେଇ ନ୍ୟାୟାଚରଣରେ ଲଗାଅ ଓ ଅନ୍ୟକୁ ସେହିପରି କରିବାକୁ ଉପଦେଶ ଦେଇ ପଢ଼ ଓ ପଢ଼ାଅ । ଅଗ୍ନି ବିଦ୍ୟା ସେବନ ପୂର୍ବକ ବିଦ୍ୟା ପଢ଼ ଓ ପଢ଼ାଅ । ଅଗ୍ନିହୋତ୍ର କରି ପଢ଼ ଓ ପଢ଼ାଅ । ସତ୍ୟବାଦୀ ହେବା ତପ ଅଟେ । ଏହା ସତ୍ୟବଚା **ରାଥୀତର ଆଚାର୍ଯ୍ୟଙ୍କର,** ନ୍ୟାୟାଚରଣରେ କଷ୍ଟ ସହିବା ତପ ଅଟେ, ଏହା **ତପୋନିତ୍ୟ ପୌରୁଶିଷ୍ଟି ଆଚାର୍ଯ୍ୟଙ୍କର** ଏବଂ ଧର୍ମ ପଥରେ ଚାଲିତ ହୋଇ ପଢ଼ିବା ଓ ପଢ଼ାଇବା ଏବଂ ସତ୍ୟୋପଦେଶ କରିବା ହିଁ ତପ ଅଟେ, ଏହା **ନାକୋ ମୌଦ୍‌ଗଲ୍ୟ ଆଚାର୍ଯ୍ୟଙ୍କର** ମତ ଅଟେ ଏବଂ ସମସ୍ତ ଆଚାର୍ଯ୍ୟମାନଙ୍କ ମତରେ ଏହି ପୂର୍ବୋକ୍ତ ତପ ରହିଛି, ଏହା ତୁମେ ଜାଣ ॥୩॥ ଏହି ଉପଦେଶ ସମାବର୍ତ୍ତନ ମଧ୍ୟରେ ଆଚାର୍ଯ୍ୟ ବା ବାଳକର ପିତା କରିବେ ।

ତତ୍ପରେ ଘର ଛାଡ଼ି ଗୁରୁକୁଳକୁ ଯିବେ । ଯଦି ପୁଅ ହୋଇଥାଏ, ତେବେ ପୁରୁଷମାନଙ୍କ ପାଠଶାଳା ଏବଂ କନ୍ୟା ହୋଇଥିଲେ, ସ୍ତ୍ରୀମାନଙ୍କ ପାଠଶାଳାକୁ ପଠାଇଦେବେ । ଯଦି ଗୃହରେ ବର୍ଣ୍ଣୋଚ୍ଚାରଣ ଶିକ୍ଷା ଯଥାବିଧି ହୋଇନଥାଏ, ତେବେ ଆଚାର୍ଯ୍ୟ ବାଳକମାନଙ୍କୁ ଏବଂ କନ୍ୟାମାନଙ୍କୁ ଆଚାର୍ଯ୍ୟା ପାଣିନି-ମୁନିକୃତ ବର୍ଣ୍ଣୋଚ୍ଚାରଣ ଶିକ୍ଷା ଏକ ମାସ ଭିତରେ ପଢାଇବେ । ଆଉ ମଧ୍ୟ ପାଣିନିମୁନି କୃତ ଅଷ୍ଟାଧ୍ୟାୟୀର ପାଠ ପଦଚ୍ଛେଦ ଅର୍ଥ ସହିତ ଆଠ ମାସ ବା ଏକବର୍ଷ ମଧ୍ୟରେ ପଢାଇ ଧାତୁ ପାଠ ଓ ଦଶଲକାରର ରୂପ ସାଧନା କରାଇଦେଇ ଓ ଦଶ ପ୍ରକ୍ରିୟା ମଧ୍ୟ ସାଧନା କରାଇବେ । ତତ୍ପରେ ପାଣିନିମୁନି କୃତ ଲିଙ୍ଗାନୁଶାସନ ଏବଂ ଉଣାଦି ଗଣପାଠ ତଥା ଅଷ୍ଟାଧ୍ୟାୟୀସ୍ଥ ଣ୍ବୁଲ୍ ଏବଂ ତୃଚ୍ ପ୍ରତ୍ୟୟାଦ୍ୟନ୍ତ ସୁବନ୍ତରୂପ ଛଅମାସ ମଧ୍ୟରେ ଅଭ୍ୟାସ କରାଇବେ । ତତ୍ପରେ ପୁନଶ୍ଚ ଦ୍ୱିତୀୟଥର ଅଷ୍ଟା-ଧ୍ୟାୟୀ, ପଦାର୍ଥୋକ୍ତି, ସମାସ, ଶଙ୍କାସମାଧାନ, ଉତ୍ସର୍ଗ, ଅପ-ବାଦ* ଅନ୍ୱୟପୂର୍ବକ ପଢାଇବେ ଏବଂ ସଂସ୍କୃତଭାଷଣର ଅଭ୍ୟାସ ମଧ୍ୟ କରାଇବେ । ୮ (ଆଠ) ମାସ, ମଧ୍ୟରେ ଏହା ପଢିବା ଏବଂ ପଢାଇବା ଉଚିତ ।

ତତ୍ପରେ ପତଞ୍ଜଳିମୁନି କୃତ ମହାଭାଷ୍ୟ ଯେଉଁଥିରେ ବର୍ଣ୍ଣୋଚ୍ଚାରଣ ଶିକ୍ଷା, ଅଷ୍ଟାଧ୍ୟାୟୀ, ଧାତୁପାଠ, ଗଣପାଠ, ଲିଙ୍ଗାନୁଶାସନ ଏଇ ୬ (ଛଅ) ଗ୍ରନ୍ଥର ବ୍ୟାଖ୍ୟା ଯଥାବିଧି ଲିଖିତ ଅଛି, ଦେଢ଼ ବର୍ଷରେ ଅର୍ଥାତ୍ ୧୮ (ଅଠର) ମାସରେ

* ଯେଉଁ ସୂତ୍ରର ଅଧିକ ବିଷୟ ଥାଏ, ତାହା ଉତ୍ସର୍ଗ ଏବଂ ଯେକୌଣସି ସୂତ୍ରର ବଡ଼ ବିଷୟରୁ ଅଳ୍ପ ବିଷୟରେ ପ୍ରବୃତ୍ତି ହୁଏ, ତାହା ଅପବାଦ ବୋଲାଯାଏ ।

ଏହାକୁ ପଢ଼ିବେ ବା ପଢ଼ାଇବେ । ଏହାପରେ ଶିକ୍ଷା ଓ ବ୍ୟାକରଣ ଶାସ୍ତ୍ରକୁ ୩ (ତିନି) ବର୍ଷ ୫ (ପାଞ୍ଚ) ମାସ ମଧ୍ୟରେ ବା ୯ (ନଅ) ମାସ ବା ୪ (ଚାରି) ବର୍ଷ ଭିତରେ ଶେଷ କରି ସମସ୍ତସଂସ୍କୃତ ବିଦ୍ୟାର ମର୍ମସ୍ଥଳକୁ ବୁଝିବାରେ ସମର୍ଥ ହେବେ ।

ତତ୍‌ପଶ୍ଚାତ୍ ଯାସ୍କମୁନିକୃତ ନିଘଣ୍ଟୁ ନିରୁକ୍ତ ତଥା କାତ୍ୟାୟନାଦି ମୁନିକୃତ କୋଶ ଦେଢ଼ ବର୍ଷ ମଧ୍ୟରେ ପଢ଼ି, ଅବ୍ୟୟାର୍ଥ, ଆପ୍ତମୁନିକୃତ ବାଚ୍ୟବାଚକ ସମ୍ବନ୍ଧରୂପ ଯୌଗିକ* ଯୋଗରୂଢ଼ି ଓ ରୂଢ଼ି ତିନି ପ୍ରକାର ଶବ୍ଦର ଅର୍ଥ ଯଥାବିଧି ଜାଣିବେ । ତତ୍‌ପରେ ପିଙ୍ଗଳାଚାର୍ଯ୍ୟକୃତ ପିଙ୍ଗଳସୂତ୍ର ଛନ୍ଦୋଗ୍ରନ୍ଥ ଭାଷ୍ୟସହିତ ତିନି ମାସରେ ପଢ଼ିବେ ଏବଂ ତିନି ମାସରେ ଶ୍ଳୋକାଦି ରଚନା ବିଦ୍ୟାକୁ ଶିଖିବେ । ପୁଣି ଯାସ୍କମୁନିକୃତ କାବ୍ୟାଳଙ୍କାର ସୂତ୍ର, ବାତ୍ସ୍ୟାୟନମୁନିକୃତ ଭାଷ୍ୟସହିତ, ଆକାଂକ୍ଷା ଯୋଗ୍ୟତା, ଆସତ୍ତି ଏବଂ ତାତ୍ପର୍ଯ୍ୟାର୍ଥ, ଅନ୍ୱୟସହିତ ପଢ଼ି ତା ସହ ମନୁସ୍ମୃତି, ବିଦୁରନୀତି ଏବଂ ବାଲ୍ମିକୀ ରାମାୟଣର କୌଣସି ଏକ ପ୍ରକରଣର ୧୦ ସର୍ଗ, ଏହି ସମସ୍ତ ବର୍ଷକ ମଧ୍ୟରେ ପଢ଼ିବେ ଓ ପଢ଼ାଇବେ ।

ଏକବର୍ଷ ମଧ୍ୟରେ ସୂର୍ଯ୍ୟସିଦ୍ଧାନ୍ତାଦି ମଧ୍ୟରୁ କୌଣସି ଏକ ସିଦ୍ଧାନ୍ତକୁ ଗଣିତବିଦ୍ୟା, ଯେଉଁଥିରେ ବୀଜଗଣିତ ରେଖା-ଗଣିତ ଏବଂ ପାଟୀଗଣିତ (ଅଙ୍କ ଗଣିତ) ପଢ଼ିବେ ଏବଂ ପଢ଼ାଇବେ । ନିଘଣ୍ଟୁରୁ ଆରମ୍ଭକରି ଜ୍ୟୋତିଷ ପର୍ଯ୍ୟନ୍ତ

* ଯୌଗିକ— ଯେ କ୍ରିୟା ସହିତ ସମ୍ବନ୍ଧ ରଖେ, ଯଥା: – ପାଚକ, ନାଚକାଦି । ଯୋଗରୂଢ଼ି-ଯଥା: – ପଙ୍କଜାଦି । ରୂଢ଼ି – ଯଥା,: – ଧନ, ବନ ଇତ୍ୟାଦି ।

ବେଦାଙ୍ଗକୁ ଋତ୍ୱବର୍ଷ ଭିତରେ ପଢ଼ିବେ । ତତ୍ପରେ ଜୈମି-ନିମୁନିକୃତ ସୂତ୍ର ପୂର୍ବମୀମାଂସାକୁ ବ୍ୟାସମୁନିକୃତ ବ୍ୟାଖ୍ୟା-ସହିତ, କଣାଦମୁନିକୃତ ବୈଶେଷିକ ସୂତ୍ରରୂପ ଶାସ୍ତ୍ରକୁ ଗୌତମ-ମୁନିକୃତ ପ୍ରଶସ୍ତପାଦଭାଷ୍ୟ ସହିତ, ବାତ୍ସ୍ୟାୟନମୁନିକୃତ ଭାଷ୍ୟସହିତ ଗୌତମମୁନିକୃତ ସୂତ୍ରରୂପ ନ୍ୟାୟଶାସ୍ତ୍ର, ବ୍ୟାସ-ମୁନିକୃତ ଭାଷ୍ୟସହିତ ପତଞ୍ଜଳିମୁନିକୃତ ଯୋଗସୂତ୍ର ଯୋଗ-ଶାସ୍ତ୍ର, ଭାଗୁରିମୁନିକୃତ ଭାଷ୍ୟଯୁକ୍ତ କପିଳାଚାର୍ଯ୍ୟକୃତ ସୂତ୍ରସ୍ୱରୂପ ସାଂଖ୍ୟଶାସ୍ତ୍ର, ଜୈମିନି ବା ବୌଧାୟନଆଦି ମୁନିକୃତ ବାଖ୍ୟା-ସହିତ ବ୍ୟାସମୁନିକୃତ ଶାରୀରକସୂତ୍ର ତଥା ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ଏତରେୟ, ତୈତ୍ତିରୀୟ, ଛାନ୍ଦୋଗ୍ୟ ଏବଂ ବୃହଦାରଣ୍ୟକ ୧୦ (ଦଶ) ଉପନିଷଦ, ବ୍ୟାସାଦିମୁନିକୃତ ବାଖ୍ୟାସହିତ ବେଦାନ୍ତଶାସ୍ତ୍ର ଏହି ୬ (ଛ) ଶାସ୍ତ୍ରକୁ ୨ (ଦୁଇ) ବର୍ଷ ମଧ୍ୟରେ ପଢ଼ିବେ ।

ତତ୍ପରେ ବୃହଦ୍ବୃତ ଏତରେୟ (ଋଗ୍‌ବେଦର) ବ୍ରାହ୍ମଣ, ଆଶ୍ୱଳାୟନକୃତ ଶ୍ରୌତ ତଥା ଗୃହ୍ୟସୂତ୍ର* ଏବଂ କଳ୍ପସୂତ୍ର-ପଦକ୍ରମ ଏବଂ ବ୍ୟାକରଣାଦି ସହାୟତାରେ ଛନ୍ଦଃ, ସ୍ୱର, ପଦାର୍ଥ, ଅନ୍ୱୟ ଓ ଭାବାର୍ଥସହିତ ଋଗ୍‌ବେଦର ପଠନ ୩ (ତିନି) ବର୍ଷ ଭିତରେ କରିବେ, ଏହିଭଳି ଯଜୁର୍ବେଦକୁ ଶତପଥବ୍ରାହ୍ମଣ ଓ ପଦାଦି ସହିତ ୨ (ଦୁଇ) ବର୍ଷରେ ତଥା ସାମବ୍ରାହ୍ମଣ ଏବଂ ପଦାଦି ଓ ଗାନସହିତ ସାମବେଦକୁ ୨ (ଦୁଇ) ବର୍ଷ ମଧ୍ୟରେ ପଢ଼ିବେ ଏବଂ ପଢ଼ାଇବେ । ଗୋପଥ ବ୍ରାହ୍ମଣ ଏବଂ ପଦାଦି ସହିତ ଅଥର୍ବବେଦ ୨ (ଦୁଇ) ବର୍ଷ ମଧ୍ୟରେ ପଢ଼ିବେ ଓ

* ବ୍ରାହ୍ମଣ ବା ଯେଉଁ ସୂତ୍ର ବେଦବିରୁଦ୍ଧ, ହିଂସାପରକ ହେବ, ଏହା ପ୍ରାମାଣିକ ରୂପେ ଗଣ୍ୟ ନୁହେଁ ।

ପଢ଼ାଇବେ । ମୋଟରେ ୯ (ନଅ) ବର୍ଷ ମଧ୍ୟରେ ୪ ( ଚାରି ) ବେଦକୁ ପଢ଼ିବା ଓ ପଢ଼ାଇବା ଉଚିତ୍ । ପୁଣି ଋଗ୍‌ବେଦର ଉପବେଦ ଆୟୁର୍ବେଦ, ଯାହାକୁ ବୈଦ୍ୟକଶାସ୍ତ୍ର କହନ୍ତି, ଯେଉଁଥିରେ ଧନ୍ୱନ୍ତରୀଙ୍କକୃତ ସୁଶ୍ରୁତ ଏବଂ ନିଘଣ୍ଟୁ ତଥା ପତଞ୍ଜଳି-ମୁନିକୃତ ଚରକଆଦି ଆର୍ଷଗ୍ରନ୍ଥ ଅଛି, ତାହାକୁ ୩ ( ତିନି ) ବର୍ଷରେ ପଢ଼ିବେ । ଯେପରି ସୁଶ୍ରୁତରେ ଲିଖିତ ଅଛି, ସେପ୍ରକାର କରି ଶରୀରରେ ସମସ୍ତ ଅବୟବକୁ ଚିରି ଦେଖିବେ ଏବଂ ଯାହା ସେଥିରେ ଶାସ୍ତ୍ରଚିକିତ୍ସାଦି ବିଦ୍ୟା ଲିଖିତ ଅଛି ତାହାର ସାକ୍ଷାତ୍କାର କରିବେ ।

ତତ୍‌ପରେ ଯଜୁର୍ବେଦର ଉପବେଦ ଧନୁର୍ବେଦ, ଯାହାକୁ ଶସ୍ତ୍ରାସ୍ତ୍ର ବିଦ୍ୟା କହନ୍ତି, ଯେଉଁଥିରେ ଅଂଗିରାଦି ଋଷିକୃତ ଗ୍ରନ୍ଥ ଅଛି, ଯେଉଁ ଗ୍ରନ୍ଥ ବର୍ତ୍ତମାନ ବହୁଧା ମିଳେନାହିଁ, ଏହାକୁ ତିନି-ବର୍ଷରେ ପଢ଼ିବେ ଓ ପଢ଼ାଇବେ । ପୁଣି ସାମବେଦର ଉପବେଦ ଗାନ୍ଧର୍ବ ବେଦ, ଯେଉଁଥିରେ ନାରଦ ସଂହିତାଦି ଗ୍ରନ୍ଥ ଅଛି, ତାହାକୁ ପଢ଼ି ସ୍ୱର, ରାଗରାଗିଣୀ, ସମୟ, ବାଦନ, ଗ୍ରାମ ତାଳ, ମୂର୍ଚ୍ଛନା ଆଦିର ଅଭ୍ୟାସ ଯଥାବତ୍ ୩(ତିନି) ବର୍ଷରେ କରିବେ ।

ତତ୍‌ପରେ ଅଥର୍ବ ବେଦର ଉପବେଦ ଅର୍ଥବେଦ, ଯାହାକୁ ଶିଳ୍ପଶାସ୍ତ୍ର କହନ୍ତି, ଯେଉଁଥିରେ ବିଶ୍ୱକର୍ମା, ତ୍ୱଷ୍ଟା ଏବଂ ମୟକୃତ ସଂହିତା ଗ୍ରନ୍ଥ ଅଛି, ଏହାକୁ ୬ (ଛଅ) ବର୍ଷ ମଧ୍ୟରେ ପଢ଼ି ବିମାନ, ତାର, ଭୂଗର୍ଭାଦି ବିଦ୍ୟାକୁ ସାକ୍ଷାତ୍ କରିବେ । ଏହି ଶିକ୍ଷାରୁ (ବର୍ଣ୍ଣୋଚ୍ଚାରଣ) ଆରମ୍ଭ କରି ଆୟୁର୍ବେଦ ପର୍ଯ୍ୟନ୍ତ ୧୪ (ଚଉଦ) ବିଦ୍ୟାକୁ ୩୧ ( ଏକତିରିଶ ) ବର୍ଷରେ ପଢ଼ି ମହା ବିଦ୍ୱାନ ହୋଇ ନିଜର ତଥା ସମସ୍ତ ଜଗତର କଲ୍ୟାଣ ତଥା ଉନ୍ନତି କରିବାରେ ସର୍ବଦା ପ୍ରଯତ୍ନ କରିବେ ।

॥ ଇତି ବେଦାରମ୍ଭ ସଂସ୍କାରବିଧିଃ ସମାପ୍ତଃ ॥

# ଅଥ ସମାବର୍ତ୍ତନ ସଂସ୍କାର ବିଧିଂ ବକ୍ଷ୍ୟାମଃ

ପୂର୍ବୋକ୍ତ ରୀତ୍ୟନୁସାରେ ବ୍ରହ୍ମଚର୍ଯ୍ୟ ବ୍ରତ, ସାଙ୍ଗୋପାଙ୍ଗ ବେଦ ବିଦ୍ୟା, ଉତ୍ତମ ଶିକ୍ଷା ଓ ପଦାର୍ଥ ବିଜ୍ଞାନ ପ୍ରାପ୍ତ ହୋଇ ବିବାହ ବିଧାନପୂର୍ବକ ଗୃହାଶ୍ରମ ଗ୍ରହଣ ନିମିତ୍ତ ବିଦ୍ୟାଳୟ ତ୍ୟାଗ କରି ଗୃହାଭିମୁଖେ ପ୍ରତ୍ୟାବର୍ତ୍ତନ କରିବାକୁ ସମାବର୍ତ୍ତନ ସଂସ୍କାର କହନ୍ତି । ଏ ବିଷୟରେ ପ୍ରମାଣ—

**ବେଦ ସମାପ୍ତିଂ ବାଚୟୀତ※ । କଲ୍ୟାଣୈଃ ସହ ସଂପ୍ରୟୋଗଃ† । ସ୍ନାତକାୟୋପସ୍ଥିତାୟ । ରାଜ୍ଞେ ଚ,ଆଚାର୍ଯ୍ୟ ଶ୍ୱଶୁରପିତୃବ୍ୟମାତୁଳାନାଂ ଚ ଦଧିନି ମଧ୍ୱାନୀୟ । ସର୍ପିର୍ବା ମଧ୍ୱଲାଭେ । ବିଷ୍ଟରଃ ପାଦ୍ୟ-ମର୍ଘ୍ୟମାଚମନୀୟଂ ମଧୁପର୍କଃ★ ॥୧॥**

(ଆଶ୍ୱଲାୟନ ଗୃହ୍ୟସୂତ୍ର)

**ବେଦଂ ସମାପ୍ୟ ସ୍ନାୟାଦ୍ ।**
**ବ୍ରହ୍ମଚର୍ଯ୍ୟଂ ବାଷ୍ଟଚତ୍ୱାରିଂ ଶକମ୍ ॥+**
**ତ୍ରୟଏବ ସ୍ନାତକା ଭବନ୍ତି ।**
**ବିଦ୍ୟାସ୍ନାତକୋ ବ୍ରତସ୍ନାତକୋ ବିଦ୍ୟାବ୍ରତ**
**ସ୍ନାତକଶ୍ଚେତି ॥×**

(ପାର. ଗୃହ୍ୟସୂତ୍ର)

---

※ ଆଶ୍ୱଲାୟନ: ଗୃହ୍ୟସୂତ୍ର ୧-୨୨-୧୭
† ଆଶ୍ୱ: ଗୃ: ୧-୨୩-୨୦
ଆଶ୍ୱ: ଗୃ: ୧।୨୪।୨-୭ + ପାର·ଗୃ· ୨।୬।୧-୨
× ପାର·ଗୃ. ୨।୫।୩୨ ॥

ବେଦାଧ୍ୟୟନ ସମାପ୍ତି ପରେ ସମାବର୍ତ୍ତନ ସଂସ୍କାର କରିବେ । ସର୍ବଦା ପୁଣ୍ୟାତ୍ମା ପୁରୁଷମାନଙ୍କର ସମସ୍ତ କାର୍ଯ୍ୟସହ ସମ୍ବନ୍ଧ ରଖିବେ । ରଜା, ଆଚାର୍ଯ୍ୟ, ଶ୍ୱଶୁର, ପିତୃବ୍ୟ ଏବଂ ମାତୁଳାଦିମାନଙ୍କର ଯେଉଁଠିବେଳେ ଅପୂର୍ବ ଆଗମନ ହେବ ଏବଂ ସ୍ନାତକ ଅର୍ଥାତ୍ ଯେଉଁବେଳେ ବ୍ରହ୍ମଚାରୀ ବେଦବିଦ୍ୟା ଓ ବ୍ରହ୍ମଚର୍ଯ୍ୟ ପୂର୍ଣ୍ଣ କରି ଗୃହକୁ ପ୍ରତ୍ୟାବର୍ତ୍ତନ କରିବେ, ସେଉଁବେଳେ ତାହାଙ୍କୁ ପ୍ରଥମେ (ପାଦ୍ୟମ୍) ପାଦ ପ୍ରକ୍ଷାଳନର ଜଳ (ଅର୍ଘ୍ୟମ୍) ମୁଖ ଓ ନାସିକାଦି ଧୌତ ନିମିତ୍ତ ଜଳ ଏବଂ ଆଚମନ ନିମିତ୍ତ ଜଳ ପ୍ରଦାନ କରି ଉତ୍କୃଷ୍ଟ ଆସନରେ ଉପବେଶନ କରାଇବେ ।

ତତ୍ପରେ ଦଧି ସହିତ ମଧୁ ବା ମଧୁ ନଥିଲେ ଘୃତ ମିଶ୍ରିତ କରି ତାହାଙ୍କୁ ଗୋଟିଏ ଉତ୍କୃଷ୍ଟ ପାତ୍ରରେ ମଧୁପର୍କ ପ୍ରଦାନ କରିବେ । ସ୍ନାତକ ତିନି ପ୍ରକାର (୧) ବିଦ୍ୟା ସ୍ନାତକ (୨) ବ୍ରତ ସ୍ନାତକ ଓ (୩) ବିଦ୍ୟାବ୍ରତ ସ୍ନାତକ* । ଅତଏବ ବେଦପାଠ ସମାପ୍ତ ଏବଂ ୪୮ (ଅଠଚାଳିଶ) ବର୍ଷ ବୟସ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ସମାପ୍ତ କରି ବ୍ରହ୍ମଚାରୀ ବିଦ୍ୟାବ୍ରତ ସ୍ନାନ କରିବେ ।

**ତଂ ପ୍ରତୀତଂ ସ୍ୱଧର୍ମେଣ ଧର୍ମଦାୟହରଂ ପିତୁଃ ।**
**ସ୍ରଗ୍ୱିଣଂ ତଳ୍ପ ଆସୀନମର୍ହୟେତ୍ ପ୍ରଥମଂ ଗବା ।୩।**

(ମନୁ ୩।୩)

* ଯେ କେବଳ ବିଦ୍ୟା ସମାପ୍ତ କରେ କିନ୍ତୁ ବ୍ରହ୍ମଚର୍ଯ୍ୟବ୍ରତ ସମାପ୍ତ ନକରି ସ୍ନାନ କରନ୍ତି ତାହାଙ୍କୁ ବିଦ୍ୟା ସ୍ନାତକ, ଯେ କେବଳ ବ୍ରହ୍ମଚର୍ଯ୍ୟବ୍ରତ ସମାପ୍ତ କରେ କିନ୍ତୁ ବିଦ୍ୟା ସମାପ୍ତ ନକରି ସ୍ନାନ କରନ୍ତି, ତାହାଙ୍କୁ ବ୍ରତ ସ୍ନାତକ ଏବଂ ଯେ ବିଦ୍ୟା ଓ ବ୍ରହ୍ମଚର୍ଯ୍ୟବ୍ରତ ଉଭୟ ସମାପ୍ତ କରି ସ୍ନାନ କରନ୍ତି, ତାଙ୍କୁ ବିଦ୍ୟା ବ୍ରତ ସ୍ନାତକ କହନ୍ତି ।

ଅର୍ଥ— ବିଦ୍ୱାନ୍ ମାତାପିତାଙ୍କର ଯେଉଁ ପୁତ୍ର, ଶିଷ୍ୟ ବ୍ରହ୍ମଚାରୀ ହେବେ ସେ ସ୍ୱଧର୍ମରେ ଯଥାବତ୍ ଯୁକ୍ତ ପିତୃ ସ୍ଥାନୀୟ ସେହି ଆଚାର୍ଯ୍ୟଙ୍କୁ ଉତ୍ତମ ଆସନରେ ବସାଇ, ପୁଷ୍ପମାଳା ପିନ୍ଧାଇ ପ୍ରଥମେ ଗୋଦାନ ଦେବେ, ଯଥାଶକ୍ତି ବସ୍ତ୍ର, ଧନଆଦି ମଧ୍ୟ ଦେଇ ସତ୍କାର କରିବେ ।

**ତାନି କଲ୍ପଦ୍ ବ୍ରହ୍ମଚାରୀ ସଲିଲସ୍ୟ ପୃଷ୍ଠେ ତପୋଽ-ତିଷ୍ଠତ୍ତପ୍ୟମାନଃ ସମୁଦ୍ରେ । ସ ସ୍ନାତୋ ବଭ୍ରୁଃ ପିଙ୍ଗଳଃ ପୃଥିବ୍ୟାଂ ବହୁ ରୋଚତେ ॥୪॥**

(ଅଥର୍ବ କା. ୧୧ । ସୂ. ୫ । ମ· ୨୬)

ଅର୍ଥ— ଯେଉଁ ବ୍ରହ୍ମଚାରୀ ସମୁଦ୍ରଭଳି ଗମ୍ଭୀର, ଅତି ଉତ୍ତମ ବ୍ରତ ବ୍ରହ୍ମଚର୍ଯ୍ୟରେ ନିବାସ କରି, ମହାତପଶ୍ଚରଣ ପୂର୍ବକ ବେଦ ପଠନ, ବୀର୍ଯ୍ୟନିଗ୍ରହ, ଆଚାର୍ଯ୍ୟଙ୍କର ପ୍ରିୟାଚରଣାଦି କର୍ମ ସମ୍ପୂର୍ଣ୍ଣ କରିବା ପରେ ପର ପୃଷ୍ଠାରେ ଲିଖିତ ବିଧି ଅନୁସାରେ ସ୍ନାନବିଧି କରି ପୂର୍ଣ୍ଣ ବିଦ୍ୟା ଧାରଣ କରି ଶ୍ରେଷ୍ଠ ବସ୍ତ୍ର ଯୁକ୍ତ ହୋଇ ପୃଥିବୀରେ ଅନେକ ଶୁଭ ଗୁଣ କର୍ମ ଏବଂ ସ୍ୱଭାବ ଦ୍ୱାରା ପ୍ରକାଶ-ମାନ ହୋଇଥାଏ, ସେ ହିଁ ଧନ୍ୟବାଦର ଯୋଗ୍ୟ ।

ସମାବର୍ତ୍ତନ ସମୟ— ବେଦାରମ୍ଭ ପ୍ରକରଣରେ ଲିଖିତ ପ୍ରମାଣା-ନୁସାରେ ସମାବର୍ତ୍ତନ ସମୟ ଜାଣିବା ଉଚିତ୍ କିନ୍ତୁ ଯେତେବେଳେ ବିଦ୍ୟା, ହସ୍ତା, ଶିଳ୍ପସାଧନ ବ୍ରହ୍ମଚର୍ଯ୍ୟ ବ୍ରତ ମଧ୍ୟ ପୂରାହେବ ସେତେବେଳେ ସ୍ତ୍ରୀ ପୁରୁଷ ଗୃହାଶ୍ରମର ଇଚ୍ଛା କରିବେ । ବିବାହ ଦୁଇସ୍ଥାନରେ ହୋଇପାରେ, ଆଚାର୍ଯ୍ୟଙ୍କ ଗୃହରେ ବା ସ୍ୱଗୃହରେ । ଏହି ଦୁଇ ସ୍ଥାନରୁ କୌଣସି ଏକ ସ୍ଥାନରେ ପରବର୍ତ୍ତୀ ସଂସ୍କାରର ପ୍ରମାଣ ଅନୁସାରେ ସମସ୍ତ ବିଧି କରିବେ । ଏହି ସଂସ୍କାରର ବିଧି ପୂର୍ଣ୍ଣ ହେବାପରେ ବିବାହ କରିବେ ।

ବିଧି – ସମାବର୍ତ୍ତନପାଇଁ ଯେଉଁ ଶୁଭଦିନ ସ୍ଥିର କରିଥିବେ ସେହିଦିନ ଆଗୃହସ୍ଥଙ୍କ ଗୃହରେ ସାମାନ୍ୟ ପ୍ରକରଣରେ (ଏହି ପୁସ୍ତକର) ଲିଖିତ ପ୍ରକାରରେ ଯଜ୍ଞକୁଣ୍ଡ ଆଦି ନିର୍ମାଣ କରି ଶାକଲ୍ୟ ଏବଂ ସାମଗ୍ରୀ ସଂସ୍କାର ଦିନ ପୂର୍ବରୁ ସଜାଡ଼ି ରଖିବେ ଏବଂ ସ୍ଥାଳୀପାକ* ନିଅରି କରି ଘୃତାଦି ଓ ପାତ୍ରାଦି ଯଜ୍ଞଶାଳାରେ ବେଦୀନିକଟରେ ରଖିବେ । ତତ୍ ପରେ ବେଦୀର ଗୃହଦିଗରେ ଆସନ ପକାଇ ବସି ଈଶ୍ୱରୋପାସନା, ସ୍ୱସ୍ତିବାଚନ, ଶାନ୍ତିପ୍ରକରଣ କରିବେ ଏବଂ ସେଠାକୁ ଯେଉଁ ମାନେ ଆସିଥିବେ ସମସ୍ତେ ଏକାଗ୍ରଚିତ୍ତ ହୋଇ ଈଶ୍ୱରଙ୍କ ଧ୍ୟାନରେ ମଗ୍ନହେବେ । ତତ୍-ପରେ ବିଧିଅନୁସାରେ ଅଗ୍ନ୍ୟାଧାନ, ସମିଧାଦାନ କରି ବେଦିର ଚତୁର୍ଦ୍ଦିଗରେ ଉଦକସେଚନ କରି ଆସନରେ ପୂର୍ବାଭିମୁଖରେ ଆଗୃହସ୍ଥ ବସି ୪ଟି (ଚାରିଟି) ଆଘାରବାଜ୍ୟଭାଗାହୁତି, ୪ଟି ବ୍ୟାହୃତି ଆହୁତି ଏବଂ ୮ଟି (ଆଠଟି) ଅଷ୍ଟାଜ୍ୟାହୁତି ଓ ଗୋଟିଏ ସ୍ୱିଷ୍ଟକୃତ୍ ଆହୁତି ତଥା ଗୋଟିଏ ପ୍ରଜାପତ୍ୟାହୁତି ମୋଟରେ ୧୮ (ଅଠରଟି) ଆଜ୍ୟାହୁତି ଦେବେ । ତତ୍ପରେ ବ୍ରହ୍ମଚାରୀ (୧୩୩) ପୃଷ୍ଠାରେ ଥିବା ( ଓଁ ମହେଗ୍ନ ସ୍ୱପ୍ରବ୍ଦ ) ଏହି ମନ୍ତ୍ରରେ କୁଣ୍ଡର ଅଗ୍ନିକୁ କୁଣ୍ଡ ମଧ୍ୟରେ ଏକତ୍ର କରିବେ ।
ମନ୍ତ୍ରରେ କୁଣ୍ଡର ଅଗ୍ନିକୁ କୁଣ୍ଡମଧ୍ୟରେ ଏକତ୍ର କରିବେ ।
ତତ୍ପରେ (୧୩୩) ପୃଷ୍ଠାରେ ( ଓଁ ଅଗ୍ନୟେ ସମିଧଂ ) ଏହି ମନ୍ତ୍ରରେ କୁଣ୍ଡରେ ୩ (ତିନି) ସମିଧା ହୋମକରି ପୃଷ୍ଠା (୧୩୭) ରେ

---

* ସାମାନ୍ୟ ପ୍ରକରଣରେ ଲେଖାଥିବା ବିଧାନଅନୁସାରେ ଭାତ ଆଦି ତିଆରି କରି ରଖିବେ ।

( ଓଁ ତନୂପାଂ ) ଇତ୍ୟାଦି ସାତ ମନ୍ତ୍ରରେ ଦକ୍ଷିଣ ହସ୍ତାଞ୍ଜଳି ଅଗ୍ନିରେ ସାମାନ୍ୟ ଉତ୍ତପ୍ତ କରି, ସେହି ଜଳରେ ମୁଖସ୍ପର୍ଶ ଏବଂ ତତ୍ପରେ ପୃଷ୍ଠା(୧୩୫)ରେ ଲିଖିତ ( ଓଁ ବାକ୍ ବ ମଂ ) ଇତ୍ୟାଦି ମନ୍ତ୍ର ମାନଙ୍କରେ ଉକ୍ତ ପ୍ରମାଣାନୁସାରେ ଅଙ୍ଗସ୍ପର୍ଶ କରିବେ, ପୁନଃ ସୁଗନ୍ଧାଦି ଔଷଧଯୁକ୍ତ ଜଳପୂର୍ଣ୍ଣ ଆଠଟି ମାଠିଆ ବେଦିର ଉତ୍ତର ଭାଗରେ, ଯାହା ପୂର୍ବରୁ ରଖାହୋଇଥିବ, ସେହି ମାଠିଆମାନଙ୍କରୁ ଗୋଟିଏ ମାଠିଆ ଗ୍ରହଣ କରିବେ ବା ଆଣିବେ ଆଣିବାବେଳେ ନିମ୍ନୋକ୍ତ ମନ୍ତ୍ରପାଠ କରିବେ—

**ଓଁ ଯେ ଅପ୍ସ୍ୱନ୍ତରଗ୍ନୟଃ ପ୍ରବିଷ୍ଟା ଗୋହ୍ୟ ଉପଗୋହ୍ୟୋ ମୟୂଷୋ ମନୋହାସ୍ଖଲୋ ବିରୁଜସ୍ତନୂଦୂଷୁରିନ୍ଦ୍ରିୟହା ତାନ୍ଵିଜହାମି ଯୋ ରୋଚନସ୍ତମିହ ଗୃହ୍ଣାମି ॥** ( ପାର.କା. ୨।କଂ୬।ସୂ ୧୦ ॥ )

ଘଟଗ୍ରହଣ କରିବାପରେ ସେହି ଘଟରୁ ଜଳନେଇ ନିମ୍ନ ମନ୍ତ୍ର ବୋଲି ସ୍ନାନ କରିବେ ।

**ଓଁ ତେନ ମାମଭିଷିଞ୍ଚାମି ଶ୍ରିୟୈ ଯଶସେ ବ୍ରହ୍ମଣେ ବ୍ରହ୍ମବର୍ଚସାୟ ॥** ( ପାର·କା.୨।କଂ ୬।ସୂ. ୧୧ )

ତତ୍ପରେ ଉପରିକଥିତ ( ଓଁ ଯେ ଅପ୍ ସ୍ୱନ୍ତର··· ) ଏହି ମନ୍ତ୍ରକୁ ଉଚ୍ଚାରଣ କରି ଦ୍ୱିତୀୟ ଘଟ ନେଇ ସେଥିରୁ ଜଳ ତାଳରେ ନେଇ ନିମ୍ନ ମନ୍ତ୍ର ଉଚ୍ଚାରଣ ପୂର୍ବକ ସ୍ନାନ କରିବେ ।

**ଓଁ ଯେନ ଶ୍ରିୟମକୃଣୁତାଂ ଯେନାବମୃଶତାଁ ସୁରାମ୍ । ଯେନାକ୍ଷ୍ୟାବଭ୍ୟସିଞ୍ଚତାଂ ଯଦ୍ଵାଂ ତଦଶ୍ଵିନା ଯଶଃ ॥**

( ପାର.କା° ୨।କଂ୬।ସୂ.୧୨ )

ତତ୍ପରେ ପୂର୍ବବତ୍ ଉପରର ( ଓଁ ଯେ ଅପ୍ସ୍ୱନ୍ତରଂ ) ଏହି ମନ୍ତ୍ର ପାଠ କରି ବେଦୀର ଉତ୍ତରରେ ଥିବା ଘଟ ମାନଙ୍କରୁ ତିନୋଟି ଘଟ ନେଇ ଉପନୟନ ସଂସ୍କାର ପ୍ରକରଣରେ ଲିଖିତ ( ଓଁ ଆପୋ ହି ଷ୍ଠା° )ଏହି ତିନ ମନ୍ତ୍ର ବୋଲି ଏହି ଘଟ-ମାନଙ୍କର ଜଳରେ ସ୍ନାନକରିବେ । ତତ୍ପରେ ଆଠଟି ଘଟରୁ ଅବଶିଷ୍ଟ ତିନୋଟି ଘଟକୁ ନେଇ ( ଓଁ ଆପୋ ହିଷ୍ଠା°) ଏହି ତିନ ମନ୍ତ୍ର ମନେମନେ ବୋଲି ସ୍ନାନ କରିବେ । ତତ୍ପରେ ନିମ୍ନ ମନ୍ତ୍ର ବୋଲି ବ୍ରହ୍ମଚର୍ଯ୍ୟ ଜଳର ମେଖଳା ଓ ଦଣ୍ଡ ତ୍ୟାଗ କରିବେ ।

ଓମ୍ ଉଦୁତ୍ତମଂ ବରୁଣ ପାଶମସ୍ମଦବାଧମଂ ବି ମଧ୍ୟମଁ ଶ୍ରଥାୟ । ଅଥା ବୟମାଦିତ୍ୟ ବ୍ରତେ ତବା-ନାଗସୋଽଦିତୟେ ସ୍ୟାମ ॥ ( ଯଜୁ. ୧୨।୧୨ )

ତତ୍ପରେ ସେହି ସ୍ନାତକ ବ୍ରହ୍ମଚାରୀ ସୂର୍ଯ୍ୟଙ୍କ ସମ୍ମୁଖରେ ଠିଆହୋଇ ନିମ୍ନ ମନ୍ତ୍ରରେ ପରମାତ୍ମାଙ୍କର ଉପସ୍ଥାନ ସ୍ତୁତି କରି ତତ୍ପରେ ଦହି ବା ତିଳ ପ୍ରାଶନ କରି ଜଟା, ଲୋମ ଏବଂ ନଖ କଟାଇବେ ।

ଓମ୍ ଉଦ୍ୟନ୍ ଭ୍ରାଜଭୃଷ୍ଣୁରିନ୍ଦ୍ରୋ ମରୁଦ୍ଭିରସ୍ଥାତ୍ ପ୍ରାତ ର୍ଯାବଭିରସ୍ଥାଦ୍ଦଶସନିରସି ଦଶସନିଂ ମା କୁର୍ବାବଦନ୍ ମା ଗମୟ । ଉଦ୍ୟନ୍ ଭ୍ରାଜଭୃଷ୍ଣୁରିନ୍ଦ୍ରୋ ମରୁଦ୍ଭିରସ୍ଥା-ଦ୍ଦିବା ଯାବଭିରସ୍ଥାଚ୍ଛତସନିରସି ଶତସନିଂ ମା କୁର୍ବା-ବିଦନ୍ ମା ଗମୟ । ଉଦ୍ୟନ୍ ଭ୍ରାଜଭୃଷ୍ଣୁରିନ୍ଦ୍ରୋ ମରୁ-

ଭିରସ୍ଥାତ୍ ସାୟଂଯାବଭିରସ୍ଥାତ୍ ସହସ୍ରସନରପି ସହ-
ସ୍ରସନଂ ମା କୁର୍ବାବଦନ୍ ମା ଗମୟ୍ତ ॥

( ପାର.କା· ୨ାକଂ ୭।୧୭ ॥ )

ତତ୍‌ପରେ ବ୍ରହ୍ମଚାରୀ ନିମ୍ନ ମନ୍ତ୍ର ବୋଲି ଉଦମ୍ବର କାଠରେ ( ଦାନ୍ତକାଠି ) ଦନ୍ତଧାବନ କରିବେ ।

ଓମ୍ ଅନ୍ନାଦ୍ୟାୟ ବ୍ୟୂହଧ୍ୱଂ ସୋମୋ ରାଜାଽୟମାଗ-
ମତ୍ । ସ ମେ ମୁଖଂ ପ୍ରମାର୍କ୍ଷ୍ୟତେ ଯଶସା ଚ ଭଗେନ
ଚ ॥ ( ପାର୍·କା.୨ାକଂ୭।୧୭ ॥ )

ତତ୍‌ପରେ ସୁଗନ୍ଧଦ୍ରବ୍ୟ ଶରୀରରେ ମର୍ଦ୍ଦନକରି ଶୁଦ୍ଧ ଜଳରେ ସ୍ନାନକରି ଶରୀରକୁ ପୋଛି ଅଧୋବସ୍ତ୍ର ଅର୍ଥାତ୍ ଧୋତି ବା ପୀତାମ୍ବର ଧାରଣକରି ସୁଗନ୍ଧଯୁକ୍ତ ଚନ୍ଦନାଦିର ଅନୁଲେ-ପନ କରିବେ । ତତ୍‌ପରେ ନିମ୍ନ ମନ୍ତ୍ରରେ ଚକ୍ଷୁ ମୁଖ ନାସିକାର ଛିଦ୍ରମାନଙ୍କୁ ସ୍ପର୍ଶ କରିବେ ।

ଓମ୍ ପ୍ରାଣାପାନୌ ମେ ତର୍ପୟ ଚକ୍ଷୁର୍ମେ ତର୍ପୟ
ଶ୍ରୋତ୍ରଂ ମେ ତର୍ପୟ ॥ ( ପାର.କା·୨ାକଂ୭।୧୮ ॥ )

ତତ୍‌ପରେ ହାତରେ ଜଳନେଇ; ଅପସବ୍ୟ ଓ ଦକ୍ଷିଣ ମୁଖ ହୋଇ ନିମ୍ନ ମନ୍ତ୍ର ଉଚ୍ଚାରଣ କରି ଜଳ ଭୂମିଉପରେ ଛାଡିବେ ।

ଓମ୍ ପିତରଃ ଶୁନ୍ଧଧ୍ୱମ୍ ॥ ( ପାର୍·କା.୨ାକ.୭।୧୯ ॥ )

ତତ୍‌ପରେ ସବ୍ୟହୋଇ ନିମ୍ନ ମନ୍ତ୍ର ଜପ କରିବେ ।

ଓମ୍ ସୁଚକ୍ଷା ଅହମକ୍ଷୀଭ୍ୟାଂ ଭୂୟାସଁ ସୁବର୍ଚାମୁଖେନ
ସୁଶ୍ରୁତ୍‌କର୍ଣ୍ଣାଭ୍ୟାଂ ଭୂୟାସମ୍ ॥ (ପାର୍·କାଂ୨ାକଂ୭।୧୯ ॥)

ନିମ୍ନ ମଂନ୍ତ୍ରରେ ସୁନ୍ଦର, ଅତି ଶ୍ରେଷ୍ଠ ବସ୍ତ୍ର ଧାରଣ କରିବେ ।

ଓମ୍ ପରିଧାସ୍ୟୈ ଯଶୋଧାସ୍ୟୈ ଦୀର୍ଘାୟୁତ୍ୱାୟ ଜରଦଷ୍ଟିରସ୍ମି । ଶତଂ ଚ ଜୀବାମି ଶରଦଃ ପୁରୂଚୀ ରାୟସ୍ପୋଷମଭିସଂବ୍ୟୟିଷ୍ୟେ ॥ ( ପାର.କା. ୨।କଂ.୬।୨୦ ॥ )

ନିମ୍ନ ମନ୍ତ୍ର ଉଚ୍ଚାରଣ କରି ଉତ୍ତମ ଉପବସ୍ତ୍ର ଧାରଣ କରିବେ—

ଓମ୍ ଯଶସା ମା ଦ୍ୟାବାପୃଥିବୀ ଯଶ ସେନ୍ଦ୍ରାବୃହସ୍ପତୀ । ଯଶୋ ଭଗଶ୍ଚ ମାବିନ୍ଦଦ୍ୟଶୋ ମା ପ୍ରତିପଦ୍ୟତାମ୍ ॥
( ପାର.କା.୨.କଂ.୬।୨୧ )

ନିମ୍ନ ମନ୍ତ୍ରରେ ସୁଗନ୍ଧିତ ପୁଷ୍ପମାଳା ଗ୍ରହଣ କରିବେ—

ଓମ୍ ଯା ଆହରଜ୍ଜମଦଗ୍ନିଃ ଶ୍ରଦ୍ଧାୟୈ ମେଧାୟୈ କାମାୟେନ୍ଦ୍ରିୟାୟ । ତା ଅହଂ ପ୍ରତିଗୃହ୍ଣାମି ଯଶସା ଚ ଭଗେନ ଚ ॥ ( ପାର.କା.୨।କଂ୬।୨୩

ନିମ୍ନ ମନ୍ତ୍ରରେ ଏହି ପୁଷ୍ପମାଳା ଧାରଣ କରିବେ—

ଓମ୍ ଯଦ୍ୟଶୋଽପ୍‌ସରସାମିନ୍ଦ୍ରଶ୍ଚକାର ବିପୁଳଂ ପୃଥୁ । ତେନ ସଙ୍‌ଗ୍ରଥିତାଃ ସୁମନସ ଆବଧ୍ନାମି ଯଶୋ ମୟି ॥
( ପାର.କା. ୨।କ. ୬।୨୪ )

ତତ୍ପରେ ଶିରୋବେଷ୍ଟନ ଅର୍ଥାତ୍ ପଗଡ଼ୀ, ଦୁପଟ୍ଟା, ବା ଦୋସଡ଼ା, ( ଉତ୍ତରୀୟ ) ଟୋପୀଆଦି ଅଥବା ମୁକୁଟ ହାତରେ ନେଇ ପୃଷ୍ଠା ( ୧୨୭ ) ର ଉପନୟନ ପ୍ରକରଣରେ ଥିବା ଓମ୍ ଯୁବା ସୁବାସା... ମନ୍ତ୍ରରେ ଧାରଣ କରିବେ—

ତତ୍ପରେ ଅଳଙ୍କାର ନେଇ ନିମ୍ନ ମନ୍ତ୍ରରେ ଧାରଣ କରିବେ—

ଓମ୍ ଅଲଙ୍କରଣମସି ଭୂୟୋଽଲଙ୍କରଣଃ ଭୂୟାତ୍ ॥

( ପାର.କା. ୨।କ· ୭।୨୭ )

ନିମ୍ନ ମନ୍ତ୍ରରେ ଚକ୍ଷୁରେ ଅଞ୍ଜନ ନେବେ –

ଓମ୍ ବୃତ୍ରସ୍ୟାସି କନୀନକଶ୍ଚକ୍ଷୁର୍ଦା ଅସି ଚକ୍ଷୁର୍ମେ ଦେହି ॥

(ଯଜୁ.ଅ. ୪।ମ.୩ ॥ ପାର.କା.୨।କ.୭।୨୭ ॥ )

ତତ୍ପରେ ନିମ୍ନ ମନ୍ତ୍ରରେ ମୁଖାବଲୋକନ କରିବେ –

ଓମ୍ ରୋଚିଷ୍ଣୁରସି ॥ (ପାର.କା. ୨।କ° ୭।୨୮ ॥ )

ନିମ୍ନ ମନ୍ତ୍ରରେ ଛତ୍ରଧାରଣ କରିବେ—

ଓମ୍ ବୃହସ୍ପତେଶ୍ଛଦିରସି ପାପ୍ମନୋ ମାମନ୍ତର୍ଧେହି ତେଜସୋ ଯଶସୋ ମାଽନ୍ତର୍ଧେହି ॥

( ପାର. କା· ୨।କ° ୭।୨୯ ॥ )

ନିମ୍ନ ମନ୍ତ୍ରରେ ଉପାନତ୍, ପାଦବେଷ୍ଟନ, ( ଜୋତା ବା ଖଡ଼ମ ) ଧାରଣ କରିବେ ।

ଓମ୍ ପ୍ରତିଷ୍ଠେ ସ୍ଥୋ ବିଶ୍ୱତୋ ମା ପାତମ୍ ॥

( ପାର.କା. ୨।କ° ୭।୩° ॥ )

ନିମ୍ନ ମନ୍ତ୍ରରେ ବାଉଁଶଆଦିର ଗୋଟିଏ ସୁନ୍ଦର ବାଡ଼ି ହାତରେ ଧାରଣ କରିବେ ।

ଓଁ ବିଶ୍ୱାଭ୍ୟୋ ମା ନାଷ୍ଟ୍ରାଭ୍ୟସ୍ପରିପାହି ସର୍ବତଃ ॥

(ପାର. ୨-୭-୩୧ ॥ )

ତତ୍ପରେ ବ୍ରହ୍ମଚାରୀଙ୍କର ମାତା, ପିତାଆଦି- ଏଯତେ- ବେଳେ ଆଚାର୍ଯ୍ୟ କୁଳରୁ ନିଜର ପୂର୍ବ ଘରକୁ ଆସିବେ, ତାହାଙ୍କୁ

ଶୁଭମାନ, ପ୍ରତିଷ୍ଠା, ଉତ୍ସବ, ଉତ୍ସାହରେ ନିଜ ଘରକୁ ନେଇ ଆସିବେ । ଘରକୁ ଆଣି ତାଙ୍କର ପିତା, ମାତା, ସମ୍ବନ୍ଧୀ ବନ୍ଧୁ ଆଉ ବ୍ରହ୍ମଚାରୀର ସତ୍କାର ପୃଷ୍ଠା (୧୭୧)ରେ ଲିଖିତ ବିଧି ଅନୁସାରେ କରିବେ ।

ପୁନଶ୍ଚ ଏଇ ସଂସ୍କାରରେ ଯୋଗ ଦେବାକୁ ଆସିଥିବା ଆଚାର୍ଯ୍ୟ ଆଦିଙ୍କୁ ଉତ୍ତମ ଅନ୍ନ ମିଷ୍ଟାନ୍ନାଦି ଭୋଜନ ଦ୍ୱାରା ସତ୍କାର ପୂର୍ବକ ଭୋଜନ କରାଇ ଏବଂ ସେହି ବ୍ରହ୍ମଚାରୀ ତଥା ତାର ମାତା ପିତାଦି ଆଚାର୍ଯ୍ୟଙ୍କୁ ଉତ୍ତମ ଆସନରେ ବସାଇ ପୂର୍ବୋକ୍ତ ପ୍ରକାରରେ ମଧୁପର୍କ ଦାନ କରି ସୁନ୍ଦର ପୁଷ୍ପମାଳା, ବସ୍ତ୍ର, ଗୋଦାନ, ଧନ ଆଦିର ଦକ୍ଷିଣା ଯଥାଶକ୍ତି ଦେଇ ସମସ୍ତଙ୍କ ସମ୍ମୁଖରେ ଆଚାର୍ଯ୍ୟଙ୍କର ଉତ୍ତମ ଗୁଣ ଗୁଡିକର ପ୍ରଶଂସା କରିବେ ଏବଂ ବିଦ୍ୟାଦାନର କୃତଜ୍ଞତା ସମସ୍ତଙ୍କୁ ଶୁଣାଇବେ— ହେ ! ଉପସ୍ଥିତ ଭଦ୍ରବ୍ୟକ୍ତିଗଣ ! ପୂଜ୍ୟ ଗୁରୁଦେବ ଆଚାର୍ଯ୍ୟ ମହାଶୟ ମୋର ବହୁତ ଉପକାର କରିଛନ୍ତି । ସେ ମୋତେ ପଶୁଠାରୁ ମୁକ୍ତ କରି ଉତ୍ତମ ବିଦ୍ୱାନ ରୂପେ ଗଢିଛନ୍ତି, ଏହାର ପ୍ରତ୍ୟୁପକାର ମୁଁ ଶତଚେଷ୍ଟା ସତ୍ତ୍ୱେବି କିଛି କରିପାରିବି ନାହିଁ, ଏହା ବଦଳରେ ନିଜର ଆଚାର୍ଯ୍ୟଙ୍କୁ ଅନେକ ଧନ୍ୟବାଦ ଦେଇ ନମସ୍କାର କରି ପ୍ରାର୍ଥନା କରୁଛି ଯେ ଯେପରି ଆପଣ ମୋତେ ଉତ୍ତମ ଶିକ୍ଷା ଓ ବିଦ୍ୟାଦାନ ଦେଇ କୃତକୃତ୍ୟ କରିଛନ୍ତି, ଏହି ପରି ଅନ୍ୟ ବିଦ୍ୟାର୍ଥୀମାନଙ୍କୁ ମଧ୍ୟ କୃତକୃତ୍ୟ କରିବେ । ଯେପରି ଆପଣ ମୋତେ ଉତ୍ତମ ବିଦ୍ୟାଦେଇ ଆନନ୍ଦିତ କରିଛନ୍ତି, ସେପରି ମୁଁ ମଧ୍ୟ ଅନ୍ୟ ବିଦ୍ୟାର୍ଥୀମାନଙ୍କୁ କୃତକୃତ୍ୟ ଓ ଆନନ୍ଦିତ କରୁଥିବି ଏବଂ ଆପଣଙ୍କର ଉପକାର କେବେ ଭୁଲିଯାଇବି ନାହିଁ ।

ସର୍ବଶକ୍ତିମାନ ଜଗଦୀଶ୍ୱର ଆପଣଙ୍କୁ, ମୋତେ ଏବଂ ସମସ୍ତ ବିଦ୍ୟାଦାତା ଓ ବିଦ୍ୟାର୍ଥୀଙ୍କୁ ତଥା ସାରା ସଂସାର ଉପରେ ନିଜର କୃପାଦୃଷ୍ଟି ଦ୍ୱାରା ସଭ୍ୟ, ବିଦ୍ୱାନ, ଶରୀର ଓ ଆତ୍ମବଳଯୁକ୍ତ ଏବଂ ପରୋପକାରାଦି ଶୁଭକର୍ମମାନଙ୍କର ସିଦ୍ଧି କରିବା ଓ କରିବାରେ ତତ୍ପର, ସୁସ୍ଥ, ପୁରୁଷାର୍ଥୀ, ଉତ୍ସାହୀ କରନ୍ତୁ, ଯଦ୍ୱାରା ଏହି ପରମାତ୍ମାଙ୍କର ସୃଷ୍ଟିରେ ତାଙ୍କ ଗୁଣ, କର୍ମ, ସ୍ୱଭାବାନୁକୂଳ ନିଜର ଗୁଣ, କର୍ମ, ସ୍ୱଭାବକୁ ଲଭକରି ଧର୍ମ, ଅର୍ଥ, କାମ ଓ ମୋକ୍ଷର ସିଦ୍ଧି ପ୍ରାପ୍ତକରି ଓ ଅନ୍ୟକୁ ତାହାର ପ୍ରାପ୍ତି କରାଇ ସଦା ଆନନ୍ଦରେ ଆମେମାନେ ରହିବୁ ।

॥ ଇତି ସମାବର୍ତ୍ତନ ସଂସ୍କାର ବିଧିଃ ସମାପ୍ତଃ ॥



# ଅଥ ବିବାହ ସଂସ୍କାର ବିଧିଂ ବକ୍ଷ୍ୟାମଃ

ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟବ୍ରତ ଧାରଣ ପୂର୍ବକ ବିଦ୍ୟା ଓ ବଳ ଲାଭକରି ଏବଂ ଶୁଭ-ଗୁଣ-କର୍ମ-ସ୍ୱଭାବ ଦିଗରୁ ସବୁମତେ ତୁଲ୍ୟ ଓ ପ୍ରୀତିଯୁକ୍ତ ହୋଇ ନିମ୍ନଲିଖିତ ବିଧିରେ ସନ୍ତାନୋତ୍ପତ୍ତି ଓ ସ୍ୱ ସ୍ୱ ବର୍ଣ୍ଣାଶ୍ରମର ଅନୁକୂଳ ଉତ୍ତମ କର୍ମ କରିବାପାଇଁ ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଯେଉଁ ସମ୍ବନ୍ଧ ସ୍ଥାପିତ ହୁଏ ତାହାକୁ ବିବାହ କହନ୍ତି ।

ଏ ବିଷୟରେ ପ୍ରମାଣ—

ଉଦଗୟନ ଆପୂର୍ଯ୍ୟମାଣପକ୍ଷେ ପୁଣ୍ୟେ ନକ୍ଷତ୍ରେ* ଚୌଳକର୍ମୋପନୟନଗୋଦାନ ବିବାହାଃ ॥୧॥ ସାର୍ବକାଳମେକେ ବିବାହମ୍ ॥୨॥

(ଆଶ୍ୱଳାୟନ ଗୃହ୍ୟସୂତ୍ର ୧।୪।୧,୨)

ଆବସଥ୍ୟାଧାନଂ ଦାରକାଲେ ॥୩॥

(ପାରସ୍କର ଗୃହ୍ୟସୂତ୍ର ୧।୨।୧)

ପୁଣ୍ୟେ ନକ୍ଷତ୍ରେ ଦାରାନ୍ କୁର୍ବୀତ ॥୪॥ ଲକ୍ଷଣ ପ୍ରଶସ୍ତାନ୍ କୁଶଳେନ ॥୫॥

(ଗୋଭିଲୀୟ ଗୃହ୍ୟସୂତ୍ର ୨।୧।୧,୨)

ଏହିପରି ଶୌନକ ଗୃହ୍ୟସୂତ୍ରରେ ମଧ୍ୟ ଲିଖିତ ଅଛି ।

ଅର୍ଥ:—ଉତ୍ତରାୟଣ ଶୁକ୍ଳପକ୍ଷର ଶୁଭଦିନରେ ଅର୍ଥାତ୍ ଯେଉଁଦିନ ପ୍ରସନ୍ନତା ଥିବ, ସେହିଦିନ (ଚୌଳକର୍ମ, ଉପନୟନ, ଗୋଦାନ ଓ) ବିବାହ କରିବେ ॥୧॥ ବହୁ ଆଚାର୍ଯ୍ୟଙ୍କର ଏପରି ଅଭି-

*ଏହି ନକ୍ଷତ୍ରଆଦିର ବିଚାର କାଳ୍ପନିକ, ସୁତରାଂ ଏହା ପ୍ରାମାଣିକ ନୁହେଁ ।

ମତ ଅଛି ଯେ ସବୁ ସମୟରେ ମଧ୍ୟ ବିବାହ ହୋଇପାରିବ ॥୨॥
ବିବାହରେ ଯେଉଁ ଅଗ୍ନି ସ୍ଥାପନ କରଯାଏ, ତାହାର ନାମ ଆବସଥ୍ୟ ॥୩॥ ପ୍ରସନ୍ନ ଥିବା ଦିନରେ ଶୁଭଗୁଣଆଦିଯୁକ୍ତ ଉତ୍ତମ ସ୍ତ୍ରୀର ପାଣି ଗ୍ରହଣ କରିବେ ॥୪॥୫॥

**ବିବାହର ସମୟ**— ପୃଷ୍ଠା ୧୪୯-୧୬୯ ବେଦାରମ୍ଭ ପ୍ରକରଣରେ ଥିବା ବ୍ରହ୍ମଚର୍ଯ୍ୟ କାଳରୁ ବିବାହୋଚିତ ସମୟ ଜାଣିବାକୁ ହୁଏ । ବଧୂ ଓ ବରର ଆୟୁ, କୁଳ, ବାସସ୍ଥାନ, ଶରୀର ଓ ସ୍ୱଭାବ ସମ୍ବନ୍ଧରେ ଅବଶ୍ୟ ପରୀକ୍ଷା କରିବେ । ଉଭୟେ ସଜ୍ଞାନ ଓ ବିବାହର ଅଭିଳାଷୀ ହେବା ଆବଶ୍ୟକ । ବରର ବୟସ ସ୍ତ୍ରୀର ବୟସଠାରୁ ନ୍ୟୂନପକ୍ଷେ ଦେଢଗୁଣ ଓ ଅଧିକ ପକ୍ଷେ ଦୁଇଗୁଣ ହେବା ଉଚିତ । ପରସ୍ପରର କୁଳ ସମ୍ବନ୍ଧରେ ପରୀକ୍ଷା କରିବେ । ଏ ବିଷୟରେ ପ୍ରମାଣ:—

ବେଦାନଧୀତ୍ୟ ବେଦୌ ବା ବେଦଂ ବାପି ଯଥାକ୍ରମମ୍ ।
ଅବିପ୍ଲୁତ ବ୍ରହ୍ମଚର୍ଯ୍ୟୋ ଗୃହସ୍ଥାଶ୍ରମମାବିଶେତ୍ ॥୧॥
ଗୁରୁଣାନୁମତଃ ସ୍ନାତ୍ୱା ସମାବୃତ୍ତୋ ଯଥାବିଧି ।
ଉଦ୍‌ବହେତ ଦ୍ୱିଜୋ ଭାର୍ଯ୍ୟାଂ ସବର୍ଣ୍ଣାଂ ଲକ୍ଷଣାନ୍ୱିତାମ୍ ॥୨॥
ଅସପିଣ୍ଡା ଚ ଯା ମାତୁରସଗୋତ୍ରା ଚ ଯା ପିତୁଃ ।
ସା ପ୍ରଶସ୍ତା ଦ୍ୱିଜାତୀନାଂ ଦାରକର୍ମଣି ମୈଥୁନେ ॥୩॥
ମହାନ୍ତ୍ୟପି ସମୃଦ୍ଧାନି ଗୋଽଜାବିଧନଧାନ୍ୟତଃ ।
ସ୍ତ୍ରୀସମ୍ବନ୍ଧେ ଦଶୈତାନି କୁଳାନି ପରିବର୍ଜୟେତ୍ ॥୪॥



ହୀନକ୍ରିୟଂ ନିଷ୍ପୁରୁଷଂ ନିଶ୍ଛନ୍ଦୋ ରୋମଶାର୍ଶସମ୍ ।
କ୍ଷୟ୍ୟାମୟାବ୍ୟପସ୍ମାରିଶ୍ୱିତ୍ରିକୁଷ୍ଠିକୁଳାନି ଚ ॥୫॥
ନୋଦ୍‌ବହେତ୍ କପିଳାଂ କନ୍ୟା ନାଧିକାଙ୍ଗୀଂ ନ ରୋଗିଣୀମ୍ ।
ନାଲୋମିକାଂ ନାତିଲୋମାଂ ନ ବାଚାଟାଂ ନ ପିଙ୍ଗଳାମ ॥୬॥
ନର୍କ୍ଷବୃକ୍ଷନଦୀନାମ୍ନୀଂ ନାନ୍ତ୍ୟପର୍ବତନାମିକାମ୍ ।
ନ ପକ୍ଷ୍ୟହିପ୍ରେଷ୍ୟନାମ୍ନୀଂ ନ ଚ ଭୀଷଣ ନାମିକାମ୍ ॥୭॥
ଅବ୍ୟଙ୍ଗାଙ୍ଗୀଂ ସୌମ୍ୟନାମ୍ନୀଂ ହଂସବାରଣଗାମିନୀମ୍
ତନୁଲୋମକେଶଦଶନାଂ ମୃଦ୍ୱଙ୍ଗୀମୁଦ୍‌ବହେତ୍ ସ୍ତ୍ରିୟମ୍ ॥୮॥

ବ୍ରାହ୍ମୋ ଦୈବସ୍ତଥୈବାର୍ଷଃ ପ୍ରାଜାପତ୍ୟସ୍ତଥାସୁରଃ ।
ଗାନ୍ଧର୍ବୋ ରାକ୍ଷସଶ୍ଚୈବ ପୈଶାଚଶ୍ଚାଷ୍ଟମୋଽଧମଃ ॥୯॥
ଆଚ୍ଛାଦ୍ୟ ଚାର୍ଚ୍ଚୟିତ୍ୱା ଚ ଶ୍ରୁତଶୀଳବତେ ସ୍ୱୟମ୍ ।
ଆହୂୟ ଦାନଂ କନ୍ୟାୟା ବ୍ରାହ୍ମୋ ଧର୍ମଃ ପ୍ରକୀର୍ତ୍ତିତଃ ॥୧୦॥
ଯଜ୍ଞେ ତୁ ବିତତେ ସମ୍ୟଗୃତ୍ୱିଜେ କର୍ମକୁର୍ବତେ ।
ଅଳଂକୃତ୍ୟ ସୁତାଦାନଂ ଦୈବଂ ଧର୍ମଂ ପ୍ରଚକ୍ଷତେ ॥୧୧॥
ଏକଂ ଗୋ ମିଥୁନଂ ଦ୍ୱେ ବା ବରାଦାଦାୟ ଧର୍ମତଃ ।

କନ୍ୟାପ୍ରଦାନଂ ବିଧିବଦାର୍ଷୋ ଧର୍ମଃ ସ ଉଚ୍ୟତେ ॥୧୨॥

ସହ ନୌ ଚରତାଂ ଧର୍ମମିତି ବାଚ୍ନୁଭାଷ୍ୟ ଚ ।
କନ୍ୟାପ୍ରଦାନମଭ୍ୟର୍ଚ୍ୟ ପ୍ରାଜାପତ୍ୟୋ ବିଧିଃ ସ୍ମୃତଃ ॥୧୩॥

ଜ୍ଞାତିଭ୍ୟୋ ଦ୍ରବିଣଂ ଦତ୍ତ୍ୱା କନ୍ୟାୟୈ ଚୈବ ଶକ୍ତିତଃ ।
କନ୍ୟାପ୍ରଦାନଂ ବିଧିବଦାସୁରୋ ଧର୍ମ ଉଚ୍ୟତେ ॥୧୪॥
ଇଚ୍ଛୟାଽନ୍ୟୋନ୍ୟସଂଯୋଗଃ କନ୍ୟାୟାଶ୍ଚ ବରସ୍ୟ ଚ
ଗାନ୍ଧର୍ବଃ ସ ତୁ ବିଜ୍ଞେୟୋ ମୈଥୁନ୍ୟଃ କାମସମ୍ଭବଃ ॥୧୫॥

ହତ୍ୱା ଛିତ୍ତ୍ୱା ଚ ଭିତ୍ତ୍ୱା ଚ କ୍ରୋଶନ୍ତୀଂ ରୁଦତୀଂ ଗୃହାତ୍
ପ୍ରସହ୍ୟ କନ୍ୟାହରଣଂ ରାକ୍ଷସୋ ବିଧିରୁଚ୍ୟତେ ॥୧୬॥
ସୁପ୍ତାଂ ମତ୍ତାଂ ପ୍ରମତ୍ତାଂ ବା ରହୋ ଯତ୍ରୋପଗଚ୍ଛତି ।
ସ ପାପିଷ୍ଠୋ ବିବାହାନାଂ ପୈଶାଚଶ୍ଚାଷ୍ଟମୋଧମଃ ॥୧୭॥

ବ୍ରାହ୍ମାଦିଷୁ ବିବାହେଷୁ ଚତୁର୍ଷ୍ୱେବାନୁପୂର୍ବଶଃ ।
ବ୍ରହ୍ମବର୍ଚସ୍ୱିନଃ ପୁତ୍ରା ଜାୟନ୍ତେ ଶିଷ୍ଟସଂମତାଃ ॥୧୮॥
ରୂପସତ୍ତ୍ୱଗୁଣୋପେତା ଧନବନ୍ତୋ ଯଶସ୍ୱିନଃ ।
ପର୍ଯ୍ୟାପ୍ତଭୋଗା ଧର୍ମିଷ୍ଠା ଜୀବନ୍ତି ଚ ଶତଂ ସମାଃ ॥୧୯॥
ଇତରେଷୁ ତୁ ଶିଷ୍ଟେଷୁ ନୃଶଂସାନୃତବାଦିନଃ ।

କାମ୍ୟନ୍ତେ ଦୁର୍ବିବାହେଷୁ ବ୍ରହ୍ମଧର୍ମଦ୍ୱିଷଃ ସୁତାଃ ॥୨୦॥
ଅନିନ୍ଦିତୈଃ ସ୍ତ୍ରୀବିବାହୈରନନ୍ଦ୍ୟା ଭବତି ପ୍ରଜା ।
ନିନ୍ଦିତୈର୍ନିନ୍ଦିତା ନୃଣାଂ ତସ୍ମାନ୍ନିନ୍ଦ୍ୟାନ୍ ବିବର୍ଜୟେତ୍
॥୨୧॥

(ମନୁ. ଅ:୩।୨୪-୧୦, ୨୧, ୨୭—୩୪, ୩୯-୪୨ ॥ )

ଅର୍ଥ:-- ବ୍ରହ୍ମଚର୍ଯ୍ୟ ଧାରଣପୂର୍ବକ ୪ (ଚାରି) କିମ୍ବା ୩ (ତିନି), ୨ (ଦୁଇ) ଅଥବା ୧ (ଏକ) ବେଦ ଅଧ୍ୟୟନ କରି ଏବଂ ଅଖଣ୍ଡିତ ବ୍ରହ୍ମଚର୍ଯ୍ୟ ପାଳନକରି ଗୃହାଶ୍ରମରେ ପ୍ରବେଶ କରିବେ ॥୧॥ ଯଥାବିଧି ଉତ୍ତମ ରୀତିରେ ବ୍ରହ୍ମଚର୍ଯ୍ୟ ଧାରଣ ଓ ବିଦ୍ୟା ଗ୍ରହଣପୂର୍ବକ ଗୁରୁଙ୍କର ଆଜ୍ଞାରେ ସ୍ନାନକରି ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ସ୍ୱ ସ୍ୱ ବର୍ଣ୍ଣର ଉତ୍ତମ ଲକ୍ଷଣଯୁକ୍ତ ସ୍ତ୍ରୀକୁ ବିବାହ କରିବେ ॥୨॥ ଯେଉଁ ସ୍ତ୍ରୀ ମାତୃବଂଶର ଛଅ ପୁରୁଷ ମଧ୍ୟର ହୋଇନଥିବ ଏବଂ ପିତୃଗୋତ୍ରର ହୋଇନଥିବ, ଦ୍ୱିଜ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ) ମାନଙ୍କ ପକ୍ଷରେ ସେହି ସ୍ତ୍ରୀକି ବିବାହପାଇଁ ଉତ୍କୃଷ୍ଟ ॥୩॥ ବିବାହ ପ୍ରସଙ୍ଗରେ ନିମ୍ନଲିଖିତ ଦଶକୁଳ ନିଷିଦ୍ଧ । ଗବାଦି-ପଶୁ ଓ ଧନଧାନ୍ୟ ସେ ସବୁ କୁଳରେ ଯେତେ ଅଧିକ ଥାଉ ନା କାହିଁକି, ସେଠାରେ ବିବାହ କରିବେ ନାହିଁ ॥୪॥ ସେହି ଦଶକୁଳହେଉଛି—(୧) ଯେଉଁ କୁଳରେ ଉତ୍ତମ କ୍ରିୟା ଆଚରଣ ନାହିଁ (୨) ଯେଉଁ କୁଳରେ କୌଣସି ଉତ୍ତମ ପୁରୁଷ ନାହାଁନ୍ତି, (୩) ଯେଉଁ କୁଳରେ କୌଣସି ବିଦ୍ୱାନ୍ ନାହାଁନ୍ତି ॥୪॥ ଯେଉଁ କୁଳରେ ଲୋକମାନଙ୍କ ଦେହରେ ବଡବଡ଼ ଲୋମ ଅଛି ॥୫॥ ଯେଉଁ କୁଳରେ ଅର୍ଶରୋଗ ଅଛି (୬) ଯେଉଁ କୁଳରେ କ୍ଷୟରୋଗ ବା ରାଜଯକ୍ଷ୍ମା ଅଛି (୭) ଯେଉଁ କୁଳରେ ଅଗ୍ନିମାନ୍ଦ୍ୟ ହୋଇ

ଆମାଶୟ ରୋଗ ହୋଇଛି (୮) ଯେଉଁ କୁଳରେ ମୃଗୀରୋଗ ଅଛି (୯) ଯେଉଁ କୁଳରେ ଶ୍ୱେତକୁଷ୍ଠ ଅଛି (୧୦) ଯେଉଁ କୁଳରେ ଗଳିତକୁଷ୍ଠାଦି ରୋଗ ଅଛି । ଏହି ସମସ୍ତ କୁଳର କନ୍ୟା ବା ପୁରୁଷ ସହିତ କେବେ ହି ବିବାହ ଦେବେନାହିଁ ।।୫।। ପିଙ୍ଗଳଦେହା (ପାଉଁଶିଆ) ଅଧିକ ଅଙ୍ଗଯୁକ୍ତା, (ଛ'ଆଙ୍ଗୁଳୀଆଦି) ରୋଗଗ୍ରସ୍ତା, ଯାହାର ଶରୀରରେ ଆଦୌ ଲୋମନାହିଁ, ବା ଯାହାର ଶରୀରରେ ବଡ ବଡ ଲୋମ ଅଛି, ଯେ ନିରର୍ଥକ ଅଧିକ କଥା କହେ, ଏବଂ ଯାହାର ମାର୍ଜ୍ଜାରବତ୍ ହଳଦିଆ ଚକ୍ଷୁ ।।୬।। ତଥା ଯେଉଁ କନ୍ୟାର ( ଋକ୍ଷ ) ନକ୍ଷତ୍ରବାଚକ ନାମ— ଯେପରିକି ରେବତୀ ଓ ରୋହିଣୀଆଦି, (ନଦୀ) ଯାହାର ଗଙ୍ଗା ଓ ଯମୁନାଦି ନଦୀବାଚକ ନାମ, (ପର୍ବତ) ଯାହାର ବିନ୍ଧ୍ୟାଚଳାଦି ପର୍ବତ ବାଚକ ନାମ, (ପକ୍ଷୀ) କୋକିଳା ଓ ହଂସାଦି ପକ୍ଷୀବାଚକ ନାମ, (ଅହି) ଉରଗା ଓ ଭୋଗିନୀ ଇତ୍ୟାଦି ସର୍ପବାଚକ ନାମ, (ପ୍ରେଷ୍ୟ) ଦାସୀ ଇତ୍ୟାଦି ଯାହାର ଭୃତ୍ୟବାଚକ ନାମ ଏବଂ ଯେଉଁ କନ୍ୟାର (ଭୀଷଣ) କାଳିକା ଓ ଚଣ୍ଡିକାଦି ନାମ— ସେ ସବୁ କନ୍ୟାକୁ ବିବାହ କରିବ ନାହିଁ ।।୭।। କିନ୍ତୁ ଯାହାର ଅଙ୍ଗ ସୁନ୍ଦର, ନାମ ଉତ୍ତମ, ଯାହାର ଗମନ ହଂସ ବା ହସ୍ତିନୀଭଳି, ଯାହାର ଶରୀରରେ ଲୋମ ସୂକ୍ଷ୍ମ, କେଶ ସୂକ୍ଷ୍ମ, ଦାନ୍ତ ସୂକ୍ଷ୍ମ ଏବଂ ଯାହାର ସର୍ବାଙ୍ଗ କୋମଳ, ସେଇ କନ୍ୟାକୁ ବିବାହ କରିବେ ।। ୮ ।। ବିବାହ ଆଠପ୍ରକାର, ଯଥା— ବ୍ରାହ୍ମ, ଦୈବ, ଆର୍ଷ, ପ୍ରାଜାପତ୍ୟ, ଆସୁର, ଗାନ୍ଧର୍ବ, ରାକ୍ଷସ ଓ ପୈଶାଚ ।। ୯ ।। (୧) କନ୍ୟାକୁ ବସ୍ତ୍ରାଦି ଦ୍ୱାରା ଅଳଂକୃତ କରି ଏବଂ କନ୍ୟା ମଧ୍ୟ ଯାହାକୁ ପସନ୍ଦ କରିଛି, ସେଇ ଉତ୍ତମ, ସୁଶୀଳ, ବିଦ୍ୱାନ ଓ କନ୍ୟାର ଯୋଗ୍ୟ

ପୁରୁଷକୁ ଆହ୍ୱାନ କରି ଆଦର ଅଭ୍ୟର୍ଥନା ସହକାରେ କନ୍ୟା-ଦାନ କରିବାକୁ ବ୍ରାହ୍ମ ବିବାହ କୁହାଯାଏ ॥ ୧୦ ॥ (୨) ବିସ୍ତୃତ ଯଜ୍ଞରେ ବଡ ବଡ ବିଦ୍ୱାନମାନଙ୍କୁ ବରଣ କରି ସେଥିରେ ଋତ୍ୱିକ କର୍ମରେ ନିଯୁକ୍ତ କୌଣସି ବିଦ୍ୱାନଙ୍କୁ ବସ୍ତ୍ରାଳଂକାରାଦି ଦ୍ୱାରା ସୁଶୋଭିତ କନ୍ୟା ଦାନ କଲେ ତାହା ହୁଏ ଦୈବ ବିବାହ ॥୧୧ ॥ (୩) ବର ନିକଟରୁ ୧ (ଏକ) ଯୋଡା ବା ୨ (ଦୁଇ) ଯୋଡା ଗାଈ ଓ ବଳଦ* ନେଇ ତାହାକୁ ଧର୍ମ ପୂର୍ବକ କନ୍ୟାଦାନ କରିବାର ନାମ ଆର୍ଷବିବାହ ॥ ୧୨ ॥ (୪) ଯଜ୍ଞଶାଳାରେ"ଯଥାବିଧି ଗୃହାଶ୍ରମ କର୍ମ କର" ! ଏଇପ୍ରକାର କହିବାପରେ ଉଭୟଙ୍କର ସାନନ୍ଦରେ ପାଣି ଗ୍ରହଣ କରିବାକୁ ପ୍ରାଜାପତ୍ୟ ବିବାହ କହନ୍ତି । ଏହି ଚାରିପ୍ରକାର ବିବାହ ଉତ୍ତମ ଅଟେ । ୧୩ ॥ (୫) ବରର ଜ୍ଞାତିବର୍ଗଙ୍କୁ ଓ କନ୍ୟାକୁ ଯଥା-ଶକ୍ତି ଧନଦେଇ ହୋମାଦି ବିଧି ଦ୍ୱାରା କନ୍ୟାଦାନ କରିବାକୁ ଆସୁର ବିବାହ କହନ୍ତି ॥ ୧୪ ॥ (୬) ବର ଓ କନ୍ୟାର ଇଚ୍ଛାନୁସାରେ ଉଭୟଙ୍କର ଯେଉଁ ସଂଯୋଗ ହୁଏ ଏବଂ କାମାଶକ୍ତ ହୋଇ ଉଭୟେ ମନେ ମନେ ସ୍ୱୀକାର କରିନିଅନ୍ତି ଯେ, ସେମାନେ ଉଭୟେ ସ୍ତ୍ରୀ ପୁରୁଷ— ଏପରି ବିବାହକୁ ଗାନ୍ଧର୍ବ ବିବାହ କହନ୍ତି ॥୧୫॥ (୭)ହନନ ଓ ଛେଦନ ଅର୍ଥାତ୍ କନ୍ୟାପ-କ୍ଷୀୟ ବାଧାଦାନକାରୀଙ୍କୁ ବିଦୀର୍ଣ୍ଣ କରି ବଳାତ୍କାରିଣୀ, ରୋରୁଦ୍ୟ-ମାନା, କଂପିତକଳେବର ଓ ଭୟଭୀତା କନ୍ୟାକୁ ବଳାତ୍-କାରରେ ହରଣ କରି ବିବାହ କରିବାକୁ ରାକ୍ଷସ ବିବାହ କହନ୍ତି

* ଏକଥା ମିଥ୍ୟା, କାରଣ ପରେ ମନୁସ୍ମୃତିରେ ଏହାର ନିଷେଧ ହୋଇଛି ଏବଂ ଏହା ଯୁକ୍ତି ବିରୁଦ୍ଧ ମଧ୍ୟ । ତେଣୁ କିଛି ଆଦାନ ପ୍ରଦାନ ନକରି ଉଭୟଙ୍କ ପ୍ରସନ୍ନତା ସହକାରେ ପାଣିଗ୍ରହଣହିଁ ଆର୍ଷ ବିବାହ ।

॥ ୧୭ ॥ ( ୮ ) ନିଦ୍ରିତା, ଉନ୍ମାଦଗ୍ରସ୍ତା ବା ମଦ୍ୟପାନକରି ଉନ୍ମତ୍ତ କନ୍ୟାକୁ ଏକାନ୍ତରେ ପାଇ ତାହାକୁ ଦୂଷିତ କରି ଦେବା— ଏହା ସମସ୍ତ ବିବାହ ମଧ୍ୟରେ ନୀଚରୁ ବି ନୀଚତର, ମହାନୀଚ, ଦୁଷ୍ଟ; ଅତିଦୁଷ୍ଟ ପୈଶାଚ ବିବାହ ଅଟେ ॥୧୭॥ ବ୍ରାହ୍ମ, ଦୈବ, ଆର୍ଷ ଓ ପ୍ରାଜାପତ୍ୟ ଏହି ୪ ( ଚାରି ) ପ୍ରକାରର ବିବାହରେ ପରସ୍ପରର ପାଣିଗ୍ରହଣରେ ଆବଦ୍ଧ ସ୍ତ୍ରୀ ପୁରୁଷଙ୍କଠାରୁ ଯେଉଁ ସନ୍ତାନ ଉତ୍ପନ୍ନ ହୁଅନ୍ତି, ସେମାନେ ବେଦାଦି ବିଦ୍ୟାରେ ତେଜସ୍ୱୀ, ଆପ୍ତ ପୁରୁଷର ମତାନୁକୂଳ ଓ ଅତ୍ୟୁତ୍ତମ ହୁଅନ୍ତି ॥୧୮॥ ସେହି ସମସ୍ତ ପୁତ୍ର ବା କନ୍ୟା ସୁନ୍ଦର ରୂପ, ବଳ ଓ ପରାକ୍ରମଯୁକ୍ତ, ଶୁଦ୍ଧବୁଦ୍ଧି, ଉତ୍ତମଗୁଣ ଓ ବହୁ-ଧନଯୁକ୍ତ, ପୁଣ୍ୟ କୀର୍ତ୍ତିମାନ, ପୂର୍ଣ୍ଣଭୋଗର ଭୋକ୍ତା ଓ ଅତିଶୟ ଧର୍ମାତ୍ମାହୋଇ ୧୦୦ (ଶତ) ବର୍ଷ ପର୍ଯ୍ୟନ୍ତ ଜୀବିତ ରହନ୍ତି ॥୧୯॥ ଏହି ଚାରିପ୍ରକାର ବିବାହ ବ୍ୟତୀତ ଅବଶିଷ୍ଟ — ଆସୁର, ଗାନ୍ଧର୍ବ, ରାକ୍ଷସ ଓ ପୈଶାଚ ଏହି ୪ (ଚାରି) ପ୍ରକାରର ଦୁଷ୍ଟ ବିବାହରେ ଉତ୍ପନ୍ନ ସନ୍ତାନ ନିନ୍ଦିତକର୍ମର କର୍ତ୍ତା, ମିଥ୍ୟାବାଦୀ, ବୈଦିକ-ଧର୍ମର ବିଦ୍ୱେଷୀ ଓ ନୀଚ ସ୍ୱଭାବଯୁକ୍ତ ହୁଏ ॥୨୦॥ ଏଣୁ ଯେଉଁ ସବୁ ନିନ୍ଦିତ ବିବାହରେ ସନ୍ତାନ ନୀଚ ହୁଏ, ତାହା ତ୍ୟାଗକରି ଯେଉଁସବୁ ଉତ୍ତମ ବିବାହରେ ସନ୍ତାନ ଉତ୍ତମ ହୁଏ, ତାହା କରିବାହିଁ ମାନବୋଚିତ ଅତ୍ୟୁତ୍ତମ କାର୍ଯ୍ୟ ॥୨୧॥

ଉତ୍କୃଷ୍ଟାୟାଭିରୂପାୟ ବରାୟ ସଦୃଶାୟ ଚ ।
ଅପ୍ରାପ୍ତାମପି ତାଂ ତସ୍ମୈ କନ୍ୟାଂ ଦଦ୍ୟାଦ୍ୱିଚକ୍ଷଣଃ ॥୧॥

କାମମାମରଣାତ୍ତିଷ୍ଠେଦ୍ ଗୃହେ କନ୍ୟର୍ତୁମତ୍ୟପି ।

ନଚୈବୈନାଂ ପ୍ରଯଚ୍ଛେତ୍ତୁ ଗୁଣହୀନାୟ କର୍ହିଚିତ୍ ॥୨॥

ତ୍ରୀଣି ବର୍ଷାଣ୍ୟୁଦୀକ୍ଷେତ କୁମାର୍ୟୃତୁମତୀ ସତୀ ।
ଊର୍ଦ୍ଧ୍ୱଂ ତୁ କାଲାଦେତସ୍ମାଦ୍ୱିନ୍ଦେତ ସଦୃଶଂ ପତିମ୍ ॥୩॥

( ମନୁ· ଅ ୯।୮୮-୯୦ )

ଅର୍ଥ:—ଯଦି ପିତାମାତା କନ୍ୟାର ବିବାହ ଦେବାକୁ ଇଚ୍ଛା କରନ୍ତି ତେବେ ଅତ୍ୟୁତ୍କୃଷ୍ଟ, ଶୁଭଗୁଣ କର୍ମ ସ୍ୱଭାବଯୁକ୍ତ, କନ୍ୟାର ଉପଯୁକ୍ତ ରୂପଲାବଣ୍ୟାଦି ଗୁଣଯୁକ୍ତ ବରକୁହିଁ ନିର୍ବାଚନ କରିବେ । ସେହି କନ୍ୟା (ବରର) ମାତୃବଂଶର ଛ ପୁରୁଷମଧ୍ୟରେ ହେଲେ ମଧ୍ୟ ଉପଯୁକ୍ତ ବରକୁହିଁ କନ୍ୟାଦାନ କରିବେ । ଅନୁପଯୁକ୍ତ ପାତ୍ରକୁ କଦାପି କନ୍ୟାଦାନ କରିବା ଉଚିତ ନୁହେଁ । ଯେମାନେ ଯଦ୍ୱାରା ଅତି ପ୍ରସନ୍ନ ଚିତ୍ତରେ ଗୃହାଶ୍ରମର ଉନ୍ନତି ଓ ସୁସନ୍ତାନ ଉତ୍ପାଦନ କରିବାରେ ଯତ୍ନଶୀଳ ହେବେ ॥୧॥ ବରଂ କନ୍ୟା ମୃତ୍ୟୁପର୍ଯ୍ୟନ୍ତ ବିବାହ ନକରି ପିତୃଗୃହରେ ରହିବ, ତଥାପି ଗୁଣହୀନ, ଅଯୋଗ୍ୟ ଓ ଦୁଷ୍ଟ ପୁରୁଷର ସଙ୍ଗରେ କନ୍ୟାର ବିବାହ ଦେବେନାହିଁ । ବର ଏବଂ କନ୍ୟା ଉଭୟଙ୍କୁ ପରସ୍ପରଠାରେ ନିଜ ନିଜର ସଦୃଶ ଗୁଣ ସ୍ୱଭାବ ଦେଖି ବିବାହ କରିବା ଉଚିତ ॥୨॥

## ( ବିବାହ କାଳ )

ଯେତେବେଳେ କନ୍ୟା ବିବାହ କରିବାପାଇଁ ଇଚ୍ଛା କରିବେ, ସେତେବେଳେ ରଜସ୍ୱଳା ହେବାର ଦିନଠାରୁ ୩(ତିନି) ବର୍ଷ ବ୍ୟତୀତ କରି ଚତୁର୍ଥ ବର୍ଷରେ ବିବାହ କରିବେ ॥୩॥

**ପ୍ରଶ୍ନ:—"ଅଷ୍ଟବର୍ଷା ଭବେଦ୍ ଗୌରୀ ନବବର୍ଷା ଚ ରୋହିଣୀ"** ଇତ୍ୟାଦି ଶ୍ଳୋକର କି ଗତି ହେବ ?

ଉତ୍ତର—ଏହି ସମସ୍ତ ଶ୍ଳୋକର ଏବଂ ଯେଉଁମାନେ ଏ ସମସ୍ତ ମାନନ୍ତି, ସେମାନଙ୍କର ଦୁର୍ଗତି ହେବ ଅର୍ଥାତ୍ ଯେଉଁମାନେ ଏହି ସମସ୍ତ ଶ୍ଳୋକର ନିୟମାନୁସାରେ ବାଲ୍ୟକାଳରେ ସ୍ୱ ସ୍ୱ ସନ୍ତାନର ବିବାହ ଦେଇ ସେମାନଙ୍କୁ ନଷ୍ଟଭ୍ରଷ୍ଟ, ରୋଗୀ ଓ ଅଳ୍ପାୟୁ କରିଥାନ୍ତି, ସେମାନେ ନିଜ ନିଜ ବଂଶର ସର୍ବନାଶ କରିଥାନ୍ତି, ଏଣୁ ଯଦି ଶୀଘ୍ର ବିବାହ ଦେବାକୁ ହୁଏ, ତେବେ "ବେଦାରମ୍ଭେ" ଲିଖିତ ଶ୍ଳୋକରେ ୧୬(ଷୋଳ) ବର୍ଷରୁ କମ୍ ବୟସର କନ୍ୟାର ଓ ୨୫(ପଚିଶ) ବର୍ଷରୁ କମ୍ ବୟସର ପୁତ୍ରର ବିବାହ କେବେ ବି ଦେବନାହିଁ । ଏହାପରେ ଯେତେ ଅଧିକକାଳ ବ୍ରହ୍ମଚର୍ଯ୍ୟ ରଖିବେ, ସେତେ ତାହାର ଆନନ୍ଦ ବର୍ଦ୍ଧିତ ହେବ ।

ପ୍ରଶ୍ନ:—ବିବାହ ନିକଟରେ, ନା ଦୂରରେ ହେବା ଉଚିତ୍ ?

ଉତ୍ତର:—"ଦୁହିତା ଦୁର୍ହିତା ଦୂରେ ହିତା ଭବତୀତି"॥

( ନିରୁକ୍ତ ୩।୪ )

ଏହା ନିରୁକ୍ତର ପ୍ରମାଣ । ଯେତେ ଦୂରରେ ବିବାହ ହେବ, କନ୍ୟାର ସେତେ ଅଧିକ ଲାଭ ହେବ ।

ପ୍ରଶ୍ନ:—ନିଜ ଗୋତ୍ରରେ କିମ୍ବା ଭାଇ ଓ ଭଉଣୀଙ୍କ ମଧ୍ୟରେ ବିବାହ କାହିଁକି ହୁଏ ନାହିଁ ?

ଉତ୍ତର:—ପ୍ରଥମ ଦୋଷ ହେଲା ଯେ, ଏମାନଙ୍କ ମଧ୍ୟରେ ବିବାହ ହେଲେ କେବେ ପରସ୍ପର ମଧ୍ୟରେ ପ୍ରୀତି ହେବନାହିଁ । କାରଣ ପରୋକ୍ଷ ପଦାର୍ଥରେ ଯେତେ ପ୍ରୀତି ଜନ୍ମେ, ପ୍ରତ୍ୟକ୍ଷ ପଦାର୍ଥରେ ସେତେ ପ୍ରୀତି ହୁଏନାହିଁ । ବାଲ୍ୟାବସ୍ଥାର ଦୋଷ ଗୁଣ ମଧ୍ୟ ପରସ୍ପରକୁ ଜଣାଥାଏ, ତେଣୁ ପରସ୍ପରପ୍ରତି ଭୟ ମଧ୍ୟ ଅଧିକ ଥାଏ ନାହିଁ ! ଦ୍ୱିତୀୟତଃ—ଯେତେଦିନ ପର୍ଯ୍ୟନ୍ତ ଦୁଇଟି କୁଳ ମଧ୍ୟରେ



ପରସ୍ପରର ସମ୍ବନ୍ଧ ନ ହୁଏ, ସେତେବେଳେ ଶରୀରର ପୁଷ୍ଟି ପୂର୍ଣ୍ଣଭାବେ ହୁଏନାହିଁ । ତୃତୀୟତଃ – ଦୂର ସମ୍ବନ୍ଧ ହେଲେ ପରସ୍ପରର ପ୍ରୀତି, ଉନ୍ନତି ଓ ଐଶ୍ୱର୍ଯ୍ୟ ବୃଦ୍ଧି ପାଏ, ନିକଟ ସମ୍ବନ୍ଧ ହେଲେ ତାହା ହୁଏନାହିଁ ।

ଯୁବାବସ୍ଥାରେ ବିବାହ ବିଷୟରେ ବେଦର ପ୍ରମାଣ ।

ତମସ୍ମେରା ଯୁବତୟୋ ଯୁବାନଂ ମର୍ମୃଜ୍ୟମାନାଃ ପରିଯନ୍ତ୍ୟାପଃ । ସ ଶୁକ୍ରେଭିଃ ଶିକ୍ୱଭୀ ରେବଦସ୍ମେ ଦୀଦାୟାନିଧ୍ମୋ ଘୃତନିର୍ଣ୍ଣିଗପ୍‌ସୁ ॥୧॥ ଅସ୍ମୈ ତିସ୍ରୋ ଅବ୍ୟଥ୍ୟାୟ ନାରୀର୍ଦେବାୟ ଦେବୀର୍ଦିଧିଷନ୍ତ୍ୟନ୍ନମ୍ । କୃତାଇବୋପ ହି ପ୍ରସର୍ସ୍ରେ ଅପ୍‌ସୁ ସ ପୀୟୂଷଂ ଧୟତି ପୂର୍ବସୂନାମ୍ ॥୨॥

ଅଶ୍ୱସ୍ୟାତ୍ର ଜନିମାସ୍ୟ ଚ ସ୍ୱର୍ଦ୍ରୁହୋ ରିଷଃ ସମ୍ପୃଚଃ ପାହି ସୂରୀନ୍ । ଆମାସୁ ପୂର୍ଷୁ ପରୋ ଅପ୍ରମୃଷ୍ୟଂ ନାରାତୟୋ ବି ନଶନ୍ନାନୃତାନି ॥୩॥

( ଋ. ମଂ. ୨।ସୂ. ୩୫।ମଂ. ୪-୬ ॥ )

ବିଧୂରୟ୍ଯଂ ପତିମିଚ୍ଛନ୍ତ୍ୟେତି ଯ ଈଂ ବହାତେ ମହିଷୀମିଷିରାମ୍ । ଆସ୍ୟ ଶ୍ରବସ୍ୟାଦ୍ରଥ ଆ ଚ ଘୋଷାତ୍ ପୁରୂ ସହସ୍ରା ପରି ବର୍ତ୍ତୟାତେ ॥ ୪ ॥

( ଋ. ମ. ୫।ସୂ. ୩୭।ମଂ. ୩ )

ଉପ ବ ଏଷେ ବନ୍ଦ୍ୟେଭିଃ ଶୂଷୈଃ ପ୍ର ଯହ୍ୱୀ ଦିବଶ୍ଚିତୟଦ୍‌ଭିରର୍କୈଃ । ଉଷାସାନକ୍ତା ବିଦୁଷୀବ

ବର୍ଣ୍ଣମା ହ୍ୱା ବହତୋ ମର୍ତ୍ତ୍ୟାସ୍ତୁ ଯଜ୍ଞମ୍ ॥ ୫ ॥

ଅର୍ଥ – ( ମମ୍ଭକ୍ୟକ୍ଷାନାଃ ) ଉତ୍ତମ ବ୍ରହ୍ମଚର୍ଯ୍ୟ ବ୍ରତ ଓ ସଦ୍ ବିଦ୍ୟାଯୁକ୍ତା ( ଅସ୍ମେରଃ ) ଆମ୍ଭ ମାନଙ୍କୁ ପ୍ରାପ୍ତ ହେବା ଯୋଗ୍ୟା ( ଯୁବତୟଃ ) ୨୦ ( କୋଡ଼ିଏ ) ବର୍ଷଠାରୁ ୨୪ ( ଚବିଶ ) ବର୍ଷ ବୟସର ଯୁବତୀଗଣ, ଯେଭଳି ( ଆପଃ ) ଜଳ ବା ନଦୀ ସମୁଦ୍ରକୁ ପ୍ରାପ୍ତହୁଏ, ସେହିପରି ନିଜଠାରୁ ଦେଢ଼ଗୁଣ ବା ଦୁଇଗୁଣ ବୟସର (ତମ୍) ସେଇ ବ୍ରହ୍ମଚର୍ଯ୍ୟ ଓ ବିଦ୍ୟାରେ ପରିପୂର୍ଣ୍ଣ, ଶୁଭ ଲକ୍ଷଣଯୁକ୍ତ, ସ୍ୱ ସ୍ୱ ମନୋମତ (ଯୁବାନମ୍) ଯୁବା ପତିଙ୍କୁ ( ଯନ୍ତ୍ୟନ୍ତି ) ପ୍ରାପ୍ତ ହୁଅନ୍ତୁ । ( ସଃ ) ସେଇ ବ୍ରହ୍ମଚାରୀ ( ଶୁକ୍ରେଭିଃ ) ଶୁଦ୍ଧ ଗୁଣ ଓ ( ଶିକ୍ୱଭି ) ବୀର୍ଯ୍ୟାଦି ଯୁକ୍ତ ହୋଇ ( ଅସ୍ମେ ) ଆମ୍ଭମାନଙ୍କ ମଧ୍ୟରେ ( ରେବତ୍ ) ଅତ୍ୟନ୍ତ ଶ୍ରୀ ସମ୍ପନ୍ନ କର୍ମ ଓ ( ଦୀଦାୟ ) ସ୍ତ୍ରୀସୁ ଯୋଗ୍ୟ ଯୁବତୀ ସ୍ତ୍ରୀ ପ୍ରାପ୍ତ ହେଉ । ( ଅପ୍ସୁ ) ଅନ୍ତରୀକ୍ଷରେ ବା ସମୁଦ୍ର ମଧ୍ୟରେ ଥିବା ( ଘୃତନିର୍ଣ୍ଣିକ୍ ) ଜଳର ଶୋଧକ ( ଅନଧ୍ମଃ ) ସ୍ୱୟଂ ପ୍ରକାଶିତ ବିଦ୍ୟୁତ ଅଗ୍ନି ଭଳି ସ୍ତ୍ରୀ ଓ ପୁରୁଷ ହୃଦୟର ପ୍ରେମକୁ ଅନ୍ତରରେ ପ୍ରକାଶିତ ଓ ବାହାରେ ଅପ୍ରକାଶିତ କରି ଗୃହାଶ୍ରମରେ ଉତ୍ତମ ସନ୍ତାନ ଓ ଗମ୍ଭୀର ଆନନ୍ଦ ଲାଭ କରନ୍ତୁ ॥ ୧ ॥ ହେ ସ୍ତ୍ରୀ ପୁରୁଷଗଣ ! ( ତିସ୍ରଃ ) ଉତ୍ତମ ମଧ୍ୟମ ଓ ଅଧମ ସ୍ୱଭାବଯୁକ୍ତ [ ଦେବୀଃ ] ବିଦ୍ୱାନ ବ୍ୟକ୍ତି ମାନଙ୍କର ବିଦୁଷୀ ସ୍ତ୍ରୀମାନେ [ଅସ୍ମୈ] ଏଇ (ଅବ୍ୟଥ୍ୟାୟୈ) ପୀଡ଼ାରହିତ ( ଦେବାୟ ) କାମନା ପାଇଁ ( ଅନ୍ନମ୍ ) ଅନ୍ନାଦି ଉତ୍ତମ ପଦାର୍ଥ ( ଦଧିଷନ୍ତି ) ଧାରଣ କରନ୍ତି । ( କୃତା ଇବ ) ସମ୍ପାଦିତ ଶିକ୍ଷାଯୁକ୍ତ ସଦ୍ଗୁଣ ( ଅପ୍ସୁ )

ପ୍ରାଣିବତ୍ ପ୍ରୀତ୍ୟାଦି ବ୍ୟବହାରରେ ପ୍ରବୃତ୍ତ ହେବା ଉଦ୍ଦେଶ୍ୟରେ ସ୍ତ୍ରୀମାନଙ୍କ ସହିତ ପୁରୁଷଗଣ ଏବଂ ପୁରୁଷଗଣଙ୍କ ସହିତ ସ୍ତ୍ରୀଗଣ ( ଉପ ପ୍ରସର୍ପେ ) ସମ୍ବନ୍ଧ ପ୍ରାପ୍ତ ହୁଅନ୍ତୁ, (ସଂ ହି) ହେଇ ସ୍ତ୍ରୀ ଓ ପୁରୁଷଙ୍କି ଆନନ୍ଦନନ୍ଦ କରନ୍ତୁ ।

ଜଳରେ ଅମୃତରୂପ ରସପ୍ରାପ୍ତ ହେବାପରି ( ପୂର୍ବସ୍ନାମ୍ ) ପ୍ରଥମ ପ୍ରସୂତା ସ୍ତ୍ରୀମାନଙ୍କର ସନ୍ତାନ ( ଧୟନ୍ତି ) ଯେପରି ଦୁଗ୍ଧ ପାନକରି ପୁଷ୍ଟ ହେଉଥାଏ, ସେହିପରି ଏହି ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ ସ୍ତ୍ରୀର ସନ୍ତାନ ଯଥାବତ୍ ପୁଷ୍ଟିଲାଭ କରଥାନ୍ତି ॥୨॥ ଯେପରି ରାଜାଦି ସମସ୍ତ ବ୍ୟକ୍ତିଗଣଙ୍କର (ପୂର୍ଷୁ) ନଗର ନଗରରେ ଓ ( ଆମାସୁ ) ଗୃହରେ ଉତ୍ପନ୍ନ ପୁତ୍ର ଓ କନ୍ୟା ରୂପ ପ୍ରଜାମାନଙ୍କ ମଧ୍ୟରେ ପ୍ରାପ୍ତ ସୁଶିକ୍ଷାକୁ ( ଅପ୍ରମୃଷ୍ୟମ୍ ) ଶତ୍ରୁମାନଙ୍କର ଅସହ୍ୟମାନ୍ ( ପରଃ ) ଉତ୍ତମ ବିଦ୍ୱାନଗଣଙ୍କୁ ବ୍ରହ୍ମଚର୍ଯ୍ୟ ଲବ୍ଧ ଶାସ୍ତ୍ରସମ୍ବନ୍ଧଯୁକ୍ତ ଦେଉଛନ୍ତି, ( ଅରାତୟଃ ) ଶତ୍ରୁଗଣ ( ନ ବିନଶନ୍ ) ବିନାଶ କରି ପାରନ୍ତି ନାହିଁ ଓ ( ଅନଭାନ୍ତ ) ମିଥ୍ୟା ବାକ୍ୟାଦି ଦୁଷ୍ଟ ଦୁର୍ବ୍ୟସନ ଯାହାକୁ ( ନ ) ପ୍ରାପ୍ତ ହୁଏନା ଏଭଳି ଉତ୍ତମ ସ୍ତ୍ରୀପୁରୁଷଙ୍କୁ ( ଦ୍ରୁହଃ ) ଦ୍ରୋହାଦି ଦୁର୍ଗୁଣ ଓ ( ରିଷଃ ) ହିଂସାଦି ପାପର ( ନସମ୍ପୃଚଃ ) ସମ୍ବନ୍ଧ ପ୍ରାପ୍ତ ହୁଏନାହିଁ । ଯେ ଯୁବାବସ୍ଥାରେ ବିବାହ କରି ଯଥାବିଧି ଆନନ୍ଦରେ ସନ୍ତାନୋତ୍ପାଦନ କରେ, ତାହାର ( ଅସ୍ୟ ) ଏହି ( ଅଶ୍ୱସ୍ୟ ) ମହାନ୍ ଗୃହାଶ୍ରମ ମଧ୍ୟରେ ଉତ୍ତମ ସନ୍ତାନ ସମୂହର ( ଜନିମ ) ଜନ୍ମ ହୋଇ ଥାଏ । ଅତଏବ ହେ ସ୍ତ୍ରୀ ଓ ପୁରୁଷ ! ତୁମେ ( ସୂରୀନ୍ ) ବିଦ୍ୱାନମାନଙ୍କୁ ( ପାହି ) ରକ୍ଷାକର । ( ଚ ) ଏବଂ ଏହିପରି



ଗୃହସ୍ଥମାନଙ୍କର (ଅତ୍ର) ଏହି ଗୃହାଶ୍ରମରେ ସର୍ବଦା ହିଁ (ସଃ) ସୁଖ ବୃଦ୍ଧି ପାଉଥାଏ ॥ ୩ ॥ ହେ ମନୁଷ୍ୟଗଣ ! (ଯଃ) ପୂର୍ବ ଲକ୍ଷଣଯୁକ୍ତ ଯେଉଁ ପୂର୍ଣ୍ଣ ଯୁବକ ( ଇମ୍ ) ସବୁ ପ୍ରକାରରେ ପରୀକ୍ଷା କରି ( ମହିଷୀମ୍ ) ସର୍ବଶୋଭନୀ, ଶୁଭରୂପଗୁଣ ବିଦ୍ୟା ଓ ସୁଶୀଳତାଦି ସମ୍ପନ୍ନ ( ଇଷିରାମ୍ ) ବର କାମନା କାରିଣୀ ଓ ପ୍ରିୟହୃଦୟା ସ୍ତ୍ରୀ (ଏତି) ପ୍ରାପ୍ତ ହୁଏ ଏବଂ (ପତିମ୍) ବିବାହ ଦ୍ୱାରା ନିଜ ସ୍ୱାମୀର ( ଇନ୍ଦ୍ରାଣୀ ) ଅଭିଳାଷିଣୀ ( ଇୟମ୍ ) ଏହି ଯେଉଁ ( ବଧୂଃ ) ସ୍ତ୍ରୀ ନିଜର ଯୋଗ୍ୟ ପ୍ରିୟ ହୃଦୟ ପତି ( ଏତି ) ପ୍ରାପ୍ତ ହୁଏ, ସେହି ପୁରୁଷ ବା ସ୍ତ୍ରୀ ( ଅସ୍ୟ ) ଏହି ଗୃହାଶ୍ରମ ମଧ୍ୟରେ [ ଅଶ୍ରବସ୍ୟାତ୍ ] ସର୍ବତୋପ୍ରକାରରେ ଗଭୀର ବିଦ୍ୟା ଓ ଧନଧାନ୍ୟଯୁକ୍ତ ହୁଅନ୍ତୁ ଓ ସେମାନେ ଉଭୟେ [ ରଥଃ ] ରଥଭଳି (ଅଘୋଷାତ୍) ପରସ୍ପର ପ୍ରିୟବାକ୍ୟ ବୋଲନ୍ତୁ ( ଚ ) ଏବଂ ସେମାନେ ସମସ୍ତ ଗୃହାଶ୍ରମର ଭାର (ବହାତେ) ବହନ କରିବାରେ ସମର୍ଥହୋଇ ଥାନ୍ତୁ । ଉଭୟେ ( ପୁରୁ ) ବହୁ ( ସହସ୍ରା ) ସଂଖ୍ୟକ ସତ୍ କାର୍ଯ୍ୟ ସିଦ୍ଧ କରି ପାରନ୍ତୁ ॥ ୪ ॥ ହେ ମନୁଷ୍ୟଗଣ ! ଯଦି ତୁମ୍ଭେମାନେ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ଦ୍ୱାରା ସ୍ୱ ସ୍ୱ ସନ୍ତାନଙ୍କୁ ସୁଶିକ୍ଷିତ କରି ସ୍ୱୟମ୍ବର ବିବାହ କରାଇବ । ତେବେ ସେମାନେ ( ବନ୍ଦ୍ୟେଭିଃ ) କାମନାର ଯୋଗ୍ୟ, ( ଶବୁଯୁଭିଃ ) ସମସ୍ତ ସତ୍ୟ ବିଦ୍ୟାର ଜ୍ଞାତା, ( ଅର୍କୈଃ ) ସମ୍ମାନଯୋଗ୍ୟ, ( ଶୁଷ୍ମୈଃ ) ଶାରୀରିକ ଓ ଆତ୍ମିକ ବଳରେ ବଳୀୟାନହୋଇ ( ବଃ ) ତୁମମାନଙ୍କପାଇଁ ( ଏଷେ ) ସମସ୍ତ ସୁଖଲାଭ କରି-ବାରେ ସମର୍ଥ ହେବେ ଏବଂ [ ଉଷାସାନକ୍ତା ] ଦିନ ଓ

ରବି ପରି ସେହି (ବିଦୁର୍ଷୀବ) ବିଦୁଷୀ ସ୍ତ୍ରୀ ଓ ବିଦ୍ୱାନ୍ ପୁରୁଷ (ବିଶ୍ୱମ୍) ଗୃହାଶ୍ରମର ସମ୍ପୂର୍ଣ୍ଣ ବ୍ୟବହାର (ଆବହତଃ) ସବୁଦିଗରୁ ପ୍ରାପ୍ତ ହୁଅନ୍ତି । (ହ) ଏହିଭଳି ଏହି ( ଯଜ୍ଞମ୍ ) ସଙ୍ଗତିଯୁକ୍ତ ଗୃହାଶ୍ରମର ବ୍ୟବହାରକୁ ସେହି ସ୍ତ୍ରୀ ପୁରୁଷ ପୂର୍ଣ୍ଣ କରି ପାରନ୍ତି । ( ମର୍ତ୍ତ୍ୟାୟ ) ମନୁଷ୍ୟଗଣ ପାଇଁ ଏହି ପୂର୍ବୋକ୍ତ ବିବାହ ପୂର୍ଣ୍ଣ ସୁଖଦାୟକ ହେଉ ଏବଂ ( ଯହ୍ୱୀ ) କେବଳ ଅତ୍ୟନ୍ତ ଶୁଭ ଗୁଣ କର୍ମ ସ୍ୱଭାବଯୁକ୍ତ ସ୍ତ୍ରୀ ପୁରୁଷ ଉଭୟଙ୍କ ( ଦ୍ରବଃ ) କାମନାକୁ ( ଉପ ପ୍ର ବହତଃ ) ଉତ୍ତମ ରୂପେ ପ୍ରାପ୍ତ ହୋଇପାରନ୍ତି, ଅନ୍ୟକେହି ନୁହେଁ ।।୫।।

ଯେପରି ବ୍ରହ୍ମଚର୍ଯ୍ୟ ବିଷୟରେ କନ୍ୟାର ବ୍ରହ୍ମଚର୍ଯ୍ୟ ବେଦୋକ୍ତ ସେହିପରି ସମସ୍ତ ପୁରୁଷ ବ୍ରହ୍ମଚର୍ଯ୍ୟ ଧାରଣ ପୂର୍ବକ ବିଦ୍ୟାଲାଭ କରି ପୂର୍ଣ୍ଣ ଯୁବକ ହେବେ । ପରସ୍ପରକୁ ପରୀକ୍ଷା କରି ଯାହାସହ ଯାହାର ବିବାହ ହେଲେ ପୂର୍ଣ୍ଣ ପ୍ରୀତି ହୋଇ ପାରିବ, ତାହାସହିତ ତାହାର ବିବାହ ହେବାହିଁ ଅତ୍ୟୁତ୍ତମ ବିବାହ । ଯେଉଁମାନେ ସନ୍ତାନଙ୍କୁ ଯୁବାବସ୍ଥାରେ ବିବାହ ନକରାଇ ବାଲ୍ୟାବସ୍ଥାରେହିଁ ପରସ୍ପର ଇଚ୍ଛାର ପ୍ରତିକୂଳରେ ଓ ଅଯୋଗ୍ୟ ବରକନ୍ୟା ସହିତ ବିବାହ ଦିଅନ୍ତି, ସେମାନେହିଁ ବେଦୋକ୍ତ ଈଶ୍ୱରଙ୍କର ବିରୋଧୀ ହୋଇ ମହା ଦୁଃଖସାଗରରେ ନିମଗ୍ନ ହୁଅନ୍ତି ଏବଂ ଯେଉଁମାନେ ପୂର୍ବୋକ୍ତ ବିଧିରେ ବିବାହ କରନ୍ତି ଓ କରାନ୍ତି, ସେମାନେ ଈଶ୍ୱରଙ୍କର ଅନୁକୂଳ ହେବାରୁ ପୂର୍ଣ୍ଣ ସୁଖଲାଭ କରନ୍ତି ।

ପ୍ରଶ୍ନ: – ବିବାହ ସ୍ୱ ସ୍ୱ ବର୍ଣ୍ଣରେ ହେବା ଉଚିତ, ନା ଅନ୍ୟ ବର୍ଣ୍ଣରେ ହେବା ଉଚିତ ।

ଉତ୍ତର:—ନିଜନିଜ ବର୍ଣ୍ଣରେ । ପରନ୍ତୁ ବର୍ଣ୍ଣବ୍ୟବସ୍ଥା ଗୁଣକର୍ମ ଅନୁସାରେ ହେବାଦରକାର, ଜନ୍ମାନୁସାରେ ନୁହେଁ ।

## ଗୁଣ କର୍ମାନୁସାରେ—ବର୍ଣ୍ଣବ୍ୟବସ୍ଥା

ପୂର୍ଣ୍ଣବିଦ୍ୱାନ୍, ଧର୍ମାତ୍ମା, ପରୋପକାରୀ, ଜିତେନ୍ଦ୍ରିୟ, ମିଥ୍ୟାଭାଷଣାଦିଦୋଷରହିତ, ବିଦ୍ୟା ଓ ଧର୍ମପ୍ରଚାରରେ ତତ୍ପର, ଏହିପରି ଉତ୍ତମଗୁଣ ସମ୍ପନ୍ନ ବ୍ୟକ୍ତିହିଁ ବ୍ରାହ୍ମଣ ବା ବ୍ରାହ୍ମଣୀ । ବିଦ୍ୟା, ବଳ, ଶୌର୍ଯ୍ୟ ଓ ନ୍ୟାୟାଚରଣ ଆଦିଗୁଣ ଯାହାର ମଧ୍ୟରେଥିବ ସେ ବ୍ୟକ୍ତିହିଁ କ୍ଷତ୍ରିୟ ବା କ୍ଷତ୍ରିୟା । ଯାହାର ବିଦ୍ୟାଲାଭପରେ କୃଷି, ପଶୁପାଳନ, ବ୍ୟବସାୟ ଓ ଭିନ୍ନ ଭିନ୍ନ ଦେଶର ଭାଷାଜ୍ଞାନାଦି ଗୁଣ ଲାଭ ହେବ—ସେ ବ୍ୟକ୍ତିହିଁ ବୈଶ୍ୟ ଓ ବୈଶ୍ୟା । ଯେ ବିଦ୍ୟାହୀନ ଓ ମୂର୍ଖ ଅଟେ—ସେ ଶୂଦ୍ର ଓ ଶୂଦ୍ରା । ଏହି କ୍ରମାନୁସାରେ ବିବାହ ହେବା ଉଚିତ୍ ଅର୍ଥାତ୍ ବ୍ରାହ୍ମଣର ବ୍ରାହ୍ମଣୀ, କ୍ଷତ୍ରିୟର କ୍ଷତ୍ରିୟା, ବୈଶ୍ୟର ବୈଶ୍ୟା ଓ ଶୂଦ୍ରର ଶୂଦ୍ରା କନ୍ୟା ସଙ୍ଗରେ ବିବାହ ହେଲେ ଆନନ୍ଦହୁଏ, ଅନ୍ୟଥା ନୁହେଁ ॥

ଏହି ବର୍ଣ୍ଣବ୍ୟବସ୍ଥା ସମ୍ବନ୍ଧରେ ପ୍ରମାଣ—

**ଧର୍ମଚର୍ଯ୍ୟୟା ଜଘନ୍ୟୋ ବର୍ଣ୍ଣଃ ପୂର୍ବଂ ପୂର୍ବଂ ବର୍ଣ୍ଣମାପଦ୍ୟତେ ଜାତିପରିବୃତ୍ତୌ ॥୧॥ ଅଧର୍ମଚର୍ଯ୍ୟୟା ପୂର୍ବୋ ବର୍ଣ୍ଣୋ ଜଘନ୍ୟଂ ଜଘନ୍ୟଂ ବର୍ଣ୍ଣମାପଦ୍ୟତେ ଜାତିପରିବୃତ୍ତୌ ॥ ୨ ॥**

ଆପସ୍ତମ୍ବ ପ୍ର· ୨ । ୫ । ୧୧।୧୦, ୧୧ ॥

ଶୂଦ୍ରୋ ବ୍ରାହ୍ମଣତାମେତି ବ୍ରାହ୍ମଣଶ୍ଚୈତି ଶୂଦ୍ରତାମ୍ ।
କ୍ଷତ୍ରିୟାଜ୍ଜାତମେବନ୍ତୁ ବିଦ୍ୟାଦ୍ବୈଶ୍ୟାତ୍ତଥୈବ ଚ
॥ ୩ ॥
( ମନୁସ୍ମୃତି ଅ· ୧୦ । ୬୫ )

ଅର୍ଥ— ଧର୍ମାଚରଣଦ୍ୱାରା ନୀଚବର୍ଣ୍ଣ ଉତ୍ତମ ବର୍ଣ୍ଣକୁ ପ୍ରାପ୍ତ ହୁଅନ୍ତି ଏବଂ ସେଇ ବର୍ଣ୍ଣର ଯେଉଁ ଯେଉଁ କର୍ତ୍ତବ୍ୟାଧିକାର କର୍ମ ଅଛି, ସେଇ ସେଇ ଗୁଣକର୍ମ ସେଇ ସେଇ ପୁରୁଷ ବା ସ୍ତ୍ରୀକୁ ପ୍ରାପ୍ତ ହୁଅନ୍ତି ॥ ୧ ॥ ସେଇଭଳି ଅଧର୍ମାଚରଣଦ୍ୱାରା ଉତ୍ତମ ଉତ୍ତମ ବର୍ଣ୍ଣ ନୀଚ ନୀଚ ବର୍ଣ୍ଣକୁ ପ୍ରାପ୍ତ ହୁଅନ୍ତି, ଏବଂ ସେମାନେ ସେହି ନୀଚ ବର୍ଣ୍ଣର କର୍ମକରିବାର ଯୋଗ୍ୟ ହୋଇଯାଆନ୍ତି । ॥ ୨ ॥ ଉତ୍ତମ ଗୁଣ, କର୍ମ ଓ ସ୍ୱଭାବଯୁକ୍ତ ଯେଉଁ ଶୂଦ୍ର, ସେ ଯଥାକ୍ରମେ ବୈଶ୍ୟ, କ୍ଷତ୍ରିୟ ଓ ବ୍ରାହ୍ମଣ, ବୈଶ୍ୟ, ଯଥାକ୍ରମେ କ୍ଷତ୍ରିୟ ଓ ବ୍ରାହ୍ମଣ ଏବଂ ଯେ କ୍ଷତ୍ରିୟ, ସେ ବ୍ରାହ୍ମଣ ବର୍ଣ୍ଣର ଅଧିକାର ଓ କର୍ମପ୍ରାପ୍ତ ହୁଏ । ସେଇପରି ନୀଚକର୍ମ ଓ ଗୁଣଯୁକ୍ତ ଯେଉଁ ବ୍ରାହ୍ମଣ, ସେ ଯଥାକ୍ରମେ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର, ଯେ କ୍ଷତ୍ରିୟ, ସେ ଯଥାକ୍ରମେ ବୈଶ୍ୟ ଓ ଶୂଦ୍ର ଏବଂ ଯେ ବୈଶ୍ୟ ସେ ଶୂଦ୍ର ବର୍ଣ୍ଣର ଅଧିକାର ଓ କର୍ମପ୍ରାପ୍ତ ହୁଏ ॥ ୩ ॥

ଏଇଭାବରେ ବର୍ଣ୍ଣ ବ୍ୟବସ୍ଥା ହେଲେ ପକ୍ଷପାତ ରହେ ନାହିଁ । ସମସ୍ତ ବର୍ଣ୍ଣ ଉତ୍ତମ ହୁଅନ୍ତି ଏବଂ ଉତ୍ତମ ହେବାପାଇଁ ଚେଷ୍ଟା କରନ୍ତି । ଉତ୍ତମ ବର୍ଣ୍ଣର ବ୍ୟକ୍ତି ନୀଚବର୍ଣ୍ଣ ହୋଇଯିବା ଭୟରେ ନିନ୍ଦିତ କର୍ମ ପରିତ୍ୟାଗ କରି ଉତ୍ତମ କର୍ମ ହିଁ କରୁଥାନ୍ତି । ଏହାଦ୍ୱାରା ସଂସାରର ଅଧିକ ଉନ୍ନତି ହୁଏ । ଆର୍ଯ୍ୟାବର୍ତ୍ତ ଦେଶରେ ଯେତେଦିନ ଏଇଭଳି ବର୍ଣ୍ଣ ବ୍ୟବସ୍ଥା ପୂର୍ବୋକ୍ତ

ବ୍ରହ୍ମଚର୍ଯ୍ୟ ସହିତ ବିଦ୍ୟା ଗ୍ରହଣ ଓ ଉତ୍ତମ ରୂପରେ ସ୍ୱୟମ୍ବର ବିବାହ ହେଉଥିଲା, ସେତେଦିନ ଦେଶରେ ଉନ୍ନତି ହେଉଥିଲା । ଯାହାଦ୍ୱାରା ଆର୍ଯ୍ୟାବର୍ତ୍ତ ଦେଶ ନିଜର ପୂର୍ବାବସ୍ଥା ପ୍ରାପ୍ତହୋଇ ସୁଖୀ ହୋଇ ପାରିବ, ସେଥିପାଇଁ ବର୍ତ୍ତମାନ ମଧ୍ୟ ଏପରି ବ୍ୟବସ୍ଥା ହେବା ଉଚିତ ।

**ପରୀକ୍ଷା**— ବର୍ତ୍ତମାନ ବଧୂ ଓ ବର ପ୍ରତ୍ୟେକ ପରସ୍ପର ଗୁଣ, କର୍ମ ଓ ସ୍ୱଭାବ ଏହି ଭାବରେ ପରୀକ୍ଷା କରିବେ— ଉଭୟଙ୍କର ସମାନ ଚରିତ୍ର, ସମାନ ବୁଦ୍ଧି, ସମାନ ଆକୃତି ଓ ସମାନ ରୂପ ଗୁଣାଦି ଥିବ, ଅହିଂସକତା, ସତ୍ୟ ମଧୁର ଭାଷଣ, କୃତଜ୍ଞତା ଓ ଦୟାଳୁତା ଥିବ, ଅହଂକାର, ମତ୍ସର, ଈର୍ଷା, କାମ ଓ କ୍ରୋଧ ନଥିବ, ନିର୍ଲୋଭତା, ଦେଶସୁଧାର ପ୍ରବୃତ୍ତି, ବିଦ୍ୟାଗ୍ରହଣ, ସତ୍ୟୋପଦେଶ କରିବାରେ ନିର୍ଭୟତା ଓ ଉତ୍ସାହ ଥିବ, କପଟତା-ମଦ୍ୟ ପଶାଖେଳ, ଚୌର୍ଯ୍ୟ ଓ ମଦ୍ୟମାଂସ ସେବନାଦି ଦୋଷ ନଥିବ, ଏବଂ ଗୃହକାର୍ଯ୍ୟରେ ଅତିଶୟ ଚତୁରତା ଥିବ । ପ୍ରତିଦିନ ପ୍ରାତଃ କାଳରେ ଓ ସାୟଂ କାଳରେ ବା ବିଦେଶରୁ ଗୃହାଗମନ ପରେ ସାକ୍ଷାତ ହେଲେ 'ନମସ୍ତେ' ବାକ୍ୟଦ୍ୱାରା ପରସ୍ପର ନମସ୍କାର କରିବେ । ସ୍ତ୍ରୀ ପତିର ଚରଣସ୍ପର୍ଶ, ପାଦପ୍ରକ୍ଷାଳନ ଓ ଆସନଦାନ କରିବେ ଏବଂ ଉଭୟେ ପରସ୍ପର ପ୍ରେମୋଦ୍ଦୀପକ ବାକ୍ୟ ଓ ବ୍ୟବହାରରି ମଧ୍ୟରେ ଥାଇ ଆନନ୍ଦ ଭୋଗ କରିବେ । ବରର ଶରୀର ଅପେକ୍ଷା ସ୍ତ୍ରୀର ଶରୀର ପତଳା ଏବଂ ଉଚ୍ଚତାରେ ସ୍ତ୍ରୀର ମସ୍ତକ ବରର ବକ୍ଷଦେଶ ପର୍ଯ୍ୟନ୍ତ ହେବା ଉଚିତ । ତା'ପରେ ଆଉ ଲକ୍ଷଣ ପରୀକ୍ଷା ସ୍ତ୍ରୀ ଓ ପୁରୁଷ ବଚନାଦି ବ୍ୟବହାର ଦ୍ୱାରା କରିବେ ।



# ବିବାହର ଅଙ୍ଗୀକାର

**ଓ୩ମ୍ ଋତମଗ୍ରେ ପ୍ରଥମଂ ଜଜ୍ଞେ ଋତେ ସତ୍ୟଂ ପ୍ରତିଷ୍ଠିତମ୍ । ଯଦିୟଂ କୁମାର୍ଯ୍ୟଭିଜାତା ତଦିୟମିହ ପ୍ରତିପଦ୍ୟତାମ୍ । ଯତ୍ ସତ୍ୟଂ ତଦ୍ ଦୃଶ୍ୟତାମ୍ ॥**

( ଆଶ୍ୱ.ଗୃ.ଅ. ୧।ଅ୦.୫।୫ ॥ )

**ଅର୍ଥ:**—ଯେତେବେଳେ ବିବାହ କରିବାର ସମୟ ନିଷ୍ଟିତରୂପେ ସ୍ଥିର ହୋଇଯିବ, ସେତେବେଳେ କନ୍ୟା ଚତୁର ପୁରୁଷ ଦ୍ୱାରା ବରକୁ ଏବଂ ବର ଚତୁରା ସ୍ତ୍ରୀ ଦ୍ୱାରା କନ୍ୟାକୁ ପରୋକ୍ଷ ଭାବରେ ପରୀକ୍ଷା କରାଇବେ । ତତ୍ପରେ ଉତ୍ତମ ବିଦ୍ୱାନ୍ ପୁରୁଷ ଏବଂ ବିଦୁଷୀ ସ୍ତ୍ରୀ ମାନଙ୍କର ଏକ ସଭା ଆହ୍ୱାନ କରି ଉଭୟ ପରସ୍ପର ଏହିପରି କଥୋପକଥନ କରିବେ—"ହେ ସ୍ତ୍ରୀ ବା ହେ ପୁରୁଷ ! ଏହି ଜଗତ୍ ସୃଷ୍ଟିର ପୂର୍ବରେ ଋତ – ଯଥାର୍ଥ ସ୍ୱରୂପର ମହତ୍ତତ୍ତ୍ୱ ଉତ୍ପନ୍ନ ହୋଇଥିଲା ଏବଂ ସେହି ମହତ୍ତତ୍ତ୍ୱ ମଧ୍ୟରେ ସତ୍ୟ— ତ୍ରିଗୁଣାତ୍ମକ ନାଶରହିତ ପ୍ରକୃତି ପ୍ରତିଷ୍ଠିତ ହୋଇଛି । ଯେପରି ପୁରୁଷ ଓ ପ୍ରକୃତିର ସଂଯୋଗରେ ସମଗ୍ର ବିଶ୍ୱ ଉତ୍ପନ୍ନ ହୋଇଛି, ସେହିପରି ଏହି କୁମାରୀ ପ୍ରକୃତି ଓ ମୁଁ କୁମାର ପୁରୁଷ—ଆମେ ଉଭୟେ ଏହି ସମୟରେ ବିବାହ କରିବାପାଇଁ ସତ୍ୟ ପ୍ରତିଜ୍ଞା କରୁଅଛୁ । ଏହି କନ୍ୟା ଓ ମୁଁ ବର— ଆମେ ଉଭୟ ପରସ୍ପର ପରସ୍ପରକୁ ପ୍ରାପ୍ତ ହୋଇ ନିଜର ପ୍ରତିଜ୍ଞା ରକ୍ଷାପାଇଁ ଦୃଢୋତ୍ସାହୀ ରହିବୁ" ।

# ପୂର୍ବବିଧି ( ସ୍ନାନ )

**ବିଧି:**—କନ୍ୟା ରଜସ୍ୱଳା ହୋଇ ଏହି ପୁସ୍ତକର ଗର୍ଭାଧାନ

ସଂସ୍କାରରେ ଲିଖିତ ବିଧିରେ ଶୁଦ୍ଧ ହେଲାପରେ ଯେଉଁଦିନ ଗର୍ଭାଧାନର ରାତି ନିର୍ଦ୍ଦିଷ୍ଟ ହେବ, ସେଇ ରାତିଠାରୁ ୩(ତିନି) ଦିନ ପୂର୍ବରୁ ବିବାହ ନିମିତ୍ତ, ପୂର୍ବରୁ ସମସ୍ତ ସାମଗ୍ରୀ ସଂଗ୍ରହକରି ରଖିବାକୁ ହେବ ଏବଂ ଏହି ପୁସ୍ତକର ସାମାନ୍ୟ ପ୍ରକରଣ ଅନୁଯାୟୀ ବିଧିପୂର୍ବକ ଯଜ୍ଞଶାଳା, ବେଦି, ଋତ୍ୱିକ, ଯଜ୍ଞପାତ୍ର ଓ ଶାକଲ୍ୟାଦି ସମସ୍ତ ଶୁଦ୍ଧ ସାମଗ୍ରୀର ବ୍ୟବସ୍ଥା ପୂର୍ବରୁହିଁ କରି ରଖିବା ଉଚିତ୍ । ତତ୍‌ପରେ* ଏକ ଘଣ୍ଟା ରାତି ଅତିବାହିତ-ହେଲେ ନିମ୍ନୋକ୍ତ ମନ୍ତ୍ରରେ ଶୁଦ୍ଧ ଓ ସୁଗନ୍ଧ ଜଳପୂର୍ଣ୍ଣ କଳସ ନେଇ ବର ଓ ବଧୂ ସ୍ନାନ† କରିବେ—

ବରବଧୂ—ଓ୩ମ୍ କାମ ବେଦ ତେ ନାମ ମଦୋ ନାମାସି ସମାନୟାମୁଁ ସୁରା ତେ ଅଭବତ୍ । ପରମତ୍ର ଜନ୍ମାଗ୍ନେ ତପସୋ ନିର୍ମିତୋଽସି ସ୍ୱାହା ॥୧॥

ଓ୩ମ୍ ଇମଂ ତ ଉପସ୍ଥଂ ମଧୁନା ସ ସୃଜାମି ପ୍ରଜା-ପତେର୍ମୁଖମେତତ୍ ଦ୍ୱିତୀୟମ୍ । ତେନ ପୁଁସୋଽଭି-ଭବାସି ସର୍ବାନବଶାନ୍ ବଶିନ୍ୟସି ରାଜ୍ଞି ସ୍ୱାହା ॥ ୨ ॥

ଓ୩ମ୍ ଅଗ୍ନିଂ କ୍ରବ୍ୟାଦମକୃଣ୍ୱନ୍ ଗୁହାନାଃ ସ୍ତ୍ରୀଣାମୁପସ୍ଥମୃଷୟଃ ପୁରାଣାଃ । ତେନାଜ୍ୟମକୃଣ୍ୱଁ

* ଯଦି ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ବିବାହ କାର୍ଯ୍ୟ ଶେଷ ହେଉନାହିଁ ତେବେ ମଧ୍ୟାହ୍ନପରେହିଁ ଆରମ୍ଭ କରିଦେବେ, ଯାହା ଫଳରେ ମଧ୍ୟରାତ୍ରି ପର୍ଯ୍ୟନ୍ତ ବିବାହ ବିଧି ପୂରା ହୋଇଯିବ ।

† ସ୍ନାନବିଧି ଗୋଭି· ଗୃ. ସୂ. ପ୍ର. ୨। କା· ୨।ସୂ· ୧୦ ଏହି ଅନୁସାରେ ଲେଖା ହୋଇଛି ।

ପ୍ରୈଶୃଙ୍ଗଂ ତାଷ୍ଟ୍ରଂ ତ୍ୱଷ୍ଟି ତଦ୍ଧାତୁ ସ୍ୱାହା ॥ ୩ ॥
( ଗୋ. ୨ । ୧ । ୧୦ ॥ )

## ॥ ହ ବ ନ ॥

ତାପରେ ବଧୂ ସୁନ୍ଦର ବସ୍ତ୍ରାଳଂକାରରେ ସୁଶୋଭିତ ହୋଇ ଉତ୍ତମ ଆସନରେ ପୂର୍ବାଭିମୁଖ ହୋଇ ଉପବେଶନ କରିବେ । ତତ୍ପରେ ଈଶ୍ୱର ସ୍ତୁତି, ପ୍ରାର୍ଥନୋପାସନା, ସ୍ୱସ୍ତି-ବାଚନ ଓ ଶାନ୍ତିପ୍ରକରଣ ( ଏହି ପୁସ୍ତକର ପ୍ରଥମ ଭାଗରେ ସାମାନ୍ୟ ପ୍ରକରଣରେ ଲିଖିତ ) କରିବେ । ତତ୍ପରେ ଅଗ୍ନ୍ୟା-ଧାନ ଓ ସମିଧାଦାନ କରିବେ । ସାମାନ୍ୟ ପ୍ରକରଣରେ ଲିଖିତ ଅନୁଯାୟୀ ସ୍ଥାଳୀପାକାଦି ଯଥାବିଧି କରି ବେଦୀ ନିକଟରେ ରଖିବେ ।

ଏହାପରେ ବର ମଧ୍ୟ ସ୍ୱଗୃହରେ ଏକାନ୍ତରେ ବସ୍ତ୍ରାଳଂ-କାର ଭୂଷିତ ହୋଇ ଯଜ୍ଞଶାଳାକୁ ଆସି ଉତ୍ତମ ଆସନରେ ପୂର୍ବାଭିମୁଖରେ ଉପବେଶନ କରିବେ ଏବଂ ଏହି ପୁସ୍ତକର ପ୍ରଥମ ଭାଗରେ ଲିଖିତ ବିଧିରେ* ଈଶ୍ୱରସ୍ତୁତି ଓ ପ୍ରାର୍ଥନୋ-ପାସନା କରି ବଧୂର ଗୃହଗାମୀ ହେବାପାଇଁ ସଜ୍ଜିତ ହେବେ ।

ତତ୍ପରେ କନ୍ୟାପକ୍ଷର ଓ ବରପକ୍ଷର ପୁରୁଷମାନେ ଅତି ସମ୍ମାନର ସହିତ ବରକୁ ଗୃହକୁ ନେଇଯିବେ ।

---

* ବିବାହରେ ଆସିଥିବା ଅନ୍ୟ ସ୍ତ୍ରୀ ପୁରୁଷଗଣ ଏକାଗ୍ର ଚିତ୍ତରେ ଧ୍ୟାନାବସ୍ଥିତ ହୋଇ ( ସ୍ତୁତି, ପ୍ରାର୍ଥନା ଓ ଉପାସନା ) ଏଇ ତିନି କର୍ମାନୁସାରେ ଈଶ୍ୱର ଚିନ୍ତା କରିବେ ।



## ॥ ସଭା ମଣ୍ଡପରେ ମଧୁପର୍କ ॥

ଯେଉଁ ସମୟରେ ବର, ବଧୂ ଗୃହକୁ ଆଗମନ କରିବେ, ସେ ସମୟରେ ବଧୂ ଓ କର୍ମକର୍ତ୍ତା ମଧୁପର୍କାଦିଦ୍ୱାରା ବରକୁ ନିମ୍ନଲିଖିତ ପ୍ରକାରେ ଆଦର ସମ୍ମାନ କରିବେ। ଏହାର ପଦ୍ଧତି ହେଉଛି ଯେ, ବର, ବଧୂର ଗୃହରେ ପ୍ରବେଶ କରି ପୂର୍ବାଭିମୁଖରେ ଦଣ୍ଡାୟମାନ ଥିବେ ଏବଂ ବଧୂ ଓ କର୍ମକର୍ତ୍ତା ବରର ସମୀପରେ ଉତ୍ତରାଭିମୁଖରେ ଦଣ୍ଡାୟମାନ ହୋଇ ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରିବେ।

### ବଧୂ ଓ କର୍ମକର୍ତ୍ତା

**ଓମ୍ ସାଧୁ ଭବାନାସ୍ତାମର୍ଚ୍ଚୟିଷ୍ୟାମୋ ଭବନ୍ତମ୍ ॥**

( ପାର. କା. ୧ । କ. ୩ । ସୂ. ୪ ॥

ଏହାପରେ ବର ନିମ୍ନୋକ୍ତ ବାକ୍ୟରେ ପ୍ରତ୍ୟୁତ୍ତର ଦେବେ—

**ବର— ଓମ୍—ଅର୍ଚ୍ଚୟ ॥**

ବଧୂ ଓ କର୍ମକର୍ତ୍ତା ବରପାଇଁ ଯେଉଁ ଉତ୍ତମ ଆସନ ରଖି-ଥିବେ, ବଧୂ ତାହା ହାତରେ ଧରି ବରର ସମ୍ମୁଖରେ ଦଣ୍ଡାୟମାନ ହୋଇ ନିମ୍ନୋକ୍ତ ବାକ୍ୟରେ ଆସନ ଗ୍ରହଣ କରିବାକୁ କହିବେ—

**ବଧୂ— ଓମ୍, ବିଷ୍ଟରୋ ବିଷ୍ଟରୋ ବିଷ୍ଟରଃ ପ୍ରତି-ଗୃହ୍ୟତାମ୍ ॥**

( ପାର. କା. ୧ । କଂ ୩ । ସୂ ୬ )

ଅର୍ଥାତ୍ ଆପଣ ଏହି ଉତ୍ତମାସନ ଗ୍ରହଣ କରନ୍ତୁ । ବର ନିମ୍ନୋକ୍ତ ବାକ୍ୟରେ ବଧୂ ହସ୍ତରୁ ଆସନ ଗ୍ରହଣ କରିବେ

ବର—ଓଁ ଓମ୍ ପ୍ରତିଗୃହ୍ଣାମି ॥

ଏବଂ ସେଥିରେ ସଭାମଣ୍ଡପରେ ପୂର୍ବାଭିମୁଖେ ଉପବେଶନ କରି ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରିବେ—

ବର—ଓଁ ଓମ୍, ବର୍ଷ୍ମୋଽସ୍ମି ସମାନାନାମୁଦ୍ୟତାମିବ ସୂର୍ଯ୍ୟଃ । ଇମନ୍ତମଭିତିଷ୍ଠାମି ଯୋ ମା କଶ୍ଚାଭିଦାସତି

( ପାର. କା. ୧।କଂ ୩ । ସୂ ୮ ॥

ତାପରେ କର୍ମକର୍ତ୍ତା ଗୋଟିଏ ସୁନ୍ଦର ପାତ୍ରରେ ଜଳପୂର୍ଣ୍ଣ କରି କନ୍ୟାର ହସ୍ତରେ ଧରାଇବେ ଏବଂ କନ୍ୟା ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରି ପାତ୍ରଟି ବର ସମ୍ମୁଖରେ ଧରିବେ—

ବଧୂ—ଓଁ ଓମ୍, ପାଦ୍ୟଂ ପାଦ୍ୟଂ ପାଦ୍ୟଂ ପ୍ରତିଗୃହ୍ୟତାମ୍

( ପାର.କା୧।କଂ୩।୯ ॥ )

ବର ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରି କନ୍ୟା ହସ୍ତରୁ ଜଳ ଗ୍ରହଣ କରିବେ—

ବର—ଓଁ ଓମ୍, ପ୍ରତିଗୃହ୍ଣାମି ॥

ଏବଂ ପାଦ★ ପ୍ରକ୍ଷାଳନ କରି ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରିବେ—

---

★ ଯଦି ଗୃହର ପ୍ରବେଶଦ୍ୱାର ପୂର୍ବାଭିମୁଖ ହୁଏ, ତେବେ ବର ଉତ୍ତରାଭି-ମୁଖରେ ଏବଂ ବଧୂ ଓ କର୍ମକର୍ତ୍ତା ପୂର୍ବାଭିମୁଖରେ ଦଣ୍ଡାୟମାନ ହେବେ । ବ୍ରାହ୍ମଣ ବର୍ଣ୍ଣ ହେଲେ ପ୍ରଥମେ ଦକ୍ଷିଣ ପାଦ, ପରେ ବାମପାଦ ଏବଂ କ୍ଷତ୍ରିୟାଦି ଅନ୍ୟ ବର୍ଣ୍ଣ ହେଲେ ପ୍ରଥମେ ବାମପାଦପରେ ଦକ୍ଷିଣପାଦ ପ୍ରକ୍ଷାଳନ କରିବେ ।

ବର – ଓଁ ମ୍, ବିରାଜୋ ଦୋହୋଽସି ବିରାଜୋ ଦୋହମଶୀୟ ମୟି ପାଦ୍ୟାୟୈ ବିରାଜୋ ଦୋହଃ ॥
( ପାର. କାଂ.୧।କଂ. ୩।୧୨ )

ତତ୍ପରେ ପୁନଶ୍ଚ କାର୍ଯ୍ୟକର୍ତ୍ତା ଆଉ ଗୋଟିଏ ଶୁଦ୍ଧ ପାତ୍ର ପବିତ୍ର ଜଳରେ ପୂର୍ଣ୍ଣ କରି କନ୍ୟା ହାତରେ ଦେବେ । କନ୍ୟା ତାହା ନିମ୍ନୋକ୍ତ ମନ୍ତ୍ରରେ ବର ହାତକୁ ପ୍ରଦାନ କରିବେ –

ବଧୂ—ଓଁ ମ୍, ଅର୍ଘୋଽର୍ଘୋଽର୍ଘଃ ପ୍ରତିଗୃହ୍ୟତାମ୍ ।

ବର କନ୍ୟାହାତରୁ ନିମ୍ନ ମନ୍ତ୍ର ବୋଲି ଜଳପାତ୍ର ଗ୍ରହଣ କରିବେ –

ବର – ଓଁ ମ୍ , ପ୍ରତିଗୃହ୍ଣାମି ॥

ଏବଂ ସେଇ ଜଳଦ୍ୱାରା ମୁଖ ପ୍ରକ୍ଷାଳନ କରି ନିମ୍ନୋକ୍ତ ମନ୍ତ୍ର ବୋଲିବେ –

ବର—ଓଁ ମ୍, ଆପ ସ୍ଥ ଯୁଷ୍ମାଭିଃ ସର୍ବାନ୍‌କାମାନ-ବାପ୍ନବାନି ॥୧॥ ଓଁ ମ୍, ସମୁଦ୍ରଂ ବଃ ପ୍ରହିଣୋମି ସ୍ୱାଂ ଯୋନିମଭିଗଚ୍ଛତ । ଅରିଷ୍ଟାସ୍ମାକଂ ବୀରା ମା ପରା-ସେଚି ମତ୍ପୟଃ ॥୨॥ ( ପାର.କା.୧।କଂ.୩।୧୩, ୧୪ ॥

ତତ୍ପରେ ବେଦୀର ପଶ୍ଚିମରେ ବିଛାଯାଇଥିବା ସେଇ ଶୁଦ୍ଧ ଆସନରେ ପୂର୍ବାଭିମୁଖ ହୋଇ ଉପବେଶନ କରିବେ । ତାପରେ କର୍ମକର୍ତ୍ତା ଏକ ସୁନ୍ଦର ଉପପାତ୍ର ଜଳରେ ପୂର୍ଣ୍ଣ କରି ସେଥିରେ ଆଚମନୀ ରଖି କନ୍ୟା ହସ୍ତରେ ପ୍ରଦାନ କରିବେ ଏବଂ କନ୍ୟା ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରି, ତାହା ବର ସମ୍ମୁଖରେ ରଖିବେ—

ବଧୂ— **ଓଁ ମ୍, ଆଚମନୀୟମାଚମନୀୟମାଚମନୀୟଂ ପ୍ରତି ଗୃହ୍ୟତାମ୍ ॥**

ବର ନିମ୍ନୋକ୍ତ ବାକ୍ୟ ବୋଲି ଜଳପାତ୍ର ଗ୍ରହଣ କରିବେ ।

ବର— **ଓଁ ମ୍, ପ୍ରତିଗୃହ୍ଣାମି ॥**

କନ୍ୟା ହାତରୁ ଜଳପାତ୍ର ନେଇ ସେଥିରୁ ଯେତେ ପରିମାଣ ଜଳ ଦକ୍ଷିଣ ହସ୍ତର ଅଙ୍ଗୁଳି ମୂଳ ପର୍ଯ୍ୟନ୍ତ ପହଞ୍ଚିବ, ତାହା ନେଇ ବର ନିମ୍ନୋକ୍ତ ମନ୍ତ୍ରରେ ଥରେ ଆଚମନ କରିବେ—

ବର— **ଓଁ ମ୍, ଆଗାମନ୍ ଯଶସା ସଂସୃଜ ବର୍ଚସା ॥ ତଂ ମା କୁରୁ ପ୍ରିୟଂ ପ୍ରଜାନାମଧିପତିଂ ପଶୂନା-ମରିଷ୍ଟିଂ ତନୂନାମ୍ ॥**

( ପାର. କା. ୧ । କ. ୩ । ୧୫ ॥)

ଏବଂ ଏହି ପ୍ରକାରେ ଦ୍ୱିତୀୟ ଓ ତୃତୀୟବାର ଏଇ ମନ୍ତ୍ର ପଢ଼ି ଦ୍ୱିତୀୟ ଓ ତୃତୀୟ ଆଚମନ କରିବେ ।

ତତ୍ପରେ କର୍ମକର୍ତ୍ତା ମଧୁପର୍କ* ର ପାତ୍ର କନ୍ୟାର ହସ୍ତରେ ପ୍ରଦାନ କରିବେ ଏବଂ କନ୍ୟା ବିନୀତ ସହକାରେ ତାହା ଗ୍ରହଣ ନିମିତ୍ତ ବରକୁ ନିମ୍ନୋକ୍ତ ମନ୍ତ୍ରରେ କହିବେ---

ବଧୂ— **ଓଁ ମ୍, ମଧୁପର୍କୋ ମଧୁପର୍କୋ ମଧୁପର୍କଃ ପ୍ରତିଗୃହ୍ୟତାମ୍ ॥**

---

* ଦହିରେ ଘିଅ ବା ମହୁ ମିଶି କରାହୁଏ । ପରିମାଣ ୧୨ (ବାର) ତୋଳା ଦହିରେ ୪ (ଚାରି) ତୋଳା ମହୁ ବା ୪ ( ଚାରି ) ତୋଳା ଘିଅ ମିଶି କରାହୁଏ । ଏହାକୁ ହିଁ ମଧୁପର୍କ କହନ୍ତି । ମଧୁପର୍କ କଂସାପାତ୍ରରେ ହେବା ଉଚିତ୍ ।

ବର ନିମ୍ନୋକ୍ତ ବାକ୍ୟ ବୋଲି କନ୍ୟା ହାତରୁ ତାହା ଗ୍ରହଣ କରିବେ –

ବର— ଓ୩ମ୍, ପ୍ରତିଗୃହ୍ଣାମି ॥

ଏବଂ ଗ୍ରହଣ ସମୟରେ ନିମ୍ନ ମନ୍ତ୍ର ବୋଲିବେ –

ବର – ଓ୩ମ୍, ମିତ୍ରସ୍ୟ ତ୍ୱା ଚକ୍ଷୁଷା ପ୍ରତୀକ୍ଷେ ॥

( ପାର· କା. ୧ । କ. ୩ । ୧୬ ॥ )

ଏବଂ ସ୍ୱଚକ୍ଷୁରେ ମଧୁପର୍କ ଦର୍ଶନ କରି ତତ୍ପରେ ନିମ୍ନୋକ୍ତ ମନ୍ତ୍ର ବୋଲି ମଧୁପର୍କ ପାତ୍ର ବାମ ହସ୍ତରେ ଧାରଣ କରିବେ –

ବର – ଓ୩ମ୍, ଦେବସ୍ୟ ତ୍ୱା ସବିତୁଃ ପ୍ରସବେଽଶ୍ୱିନୋର୍ବାହୁଭ୍ୟାଂ ପୂଷ୍ଣୋ ହସ୍ତାଭ୍ୟାଂ ପ୍ରତିଗୃହ୍ଣାମି ॥

( ଯଜୁ. ଅ. ୧ । ମ· ୧୦ । ପାର· କା. ୧ । ୩ । ୧୬

ତତ୍ପରେ ନିମ୍ନୋକ୍ତ ତିନିମନ୍ତ୍ର ପାଠକରି ମଧୁପର୍କକୁ ଦୃଷ୍ଟି ଦେଖିବେ ।

ବର – ଓ୩ମ୍, ଭୂର୍ଭୁବଃ ସ୍ୱଃ । ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ । ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ ॥୧॥

ଓ୩ମ୍ ଭୂର୍ଭୁବଃ ସ୍ୱଃ । ମଧୁ ନକ୍ତମୁତୋଷସୋ ମଧୁମତ୍ପାର୍ଥିବଂ ରଜଃ । ମଧୁ ଦ୍ୟୌରସ୍ତୁ ନଃ ପିତା ॥୨॥

ଓ୩ମ୍ ଭୂର୍ଭୁବଃ ସ୍ୱଃ । ମଧୁମାନ୍ନୋ ବନସ୍ପତିର୍ମଧୁମାଁ ଅସ୍ତୁ ସୂର୍ଯ୍ୟଃ । ମାଧ୍ୱୀର୍ଗାବୋ ଭବନ୍ତୁ ନଃ । ॥୩॥

( ଯଜୁ· ଅ. ୧୩ । ମ. ୨୭–୨୯ )

ତତ୍ପରେ ନିମ୍ନୋକ୍ତ ମନ୍ତ୍ର ପାଠ କରି ଦକ୍ଷିଣ ହସ୍ତର



ଅନାମିକା ଓ ଅଙ୍ଗୁଷ୍ଠଦ୍ୱାରା ମଧୁପର୍କ ତିନିଥର ଗୋଳାଇବେ ।
ବର... **ଓମ୍, ନମଃ ଶ୍ୟାବାସ୍ୟାନ୍ନଶନେ ଯତ୍ତ ଆବିଦ୍ଧଂ ତତ୍ତେ ନିଷ୍କୃନ୍ତାମି ।**

( ପାର୍‌ଂ କା. ୧ । କ. ୩ । ୧୮ ॥ )

ନିମ୍ନୋକ୍ତ ମନ୍ତ୍ରପାଠ କରି ପୂର୍ବ ଦିଗକୁ କିଛି କିଛି ଛିଞ୍ଚାଡ଼ିବେ—
ବର— **ଓମ୍, ବସବସ୍ତ୍ୱା ଗାୟତ୍ରେଣ ଛନ୍ଦସା ଭକ୍ଷୟନ୍ତୁ ॥**
ନିମ୍ନୋକ୍ତ ମନ୍ତ୍ରରେ ଦକ୍ଷିଣ ଦିଗକୁ କିଛି ଛିଞ୍ଚାଡ଼ିବେ—
ବର— **ଓମ୍, ରୁଦ୍ରାସ୍ତ୍ୱା ତ୍ରୈଷ୍ଟୁଭେନ ଛନ୍ଦସା ଭକ୍ଷୟନ୍ତୁ ॥**
ନିମ୍ନୋକ୍ତ ମନ୍ତ୍ରରେ ପଶ୍ଚିମ ଦିଗକୁ କିଛି କିଛି ଛିଞ୍ଚାଡ଼ିବେ—
**ଓମ୍, ଆଦିତ୍ୟାସ୍ତ୍ୱା ଜାଗତେନ ଛନ୍ଦସା ଭକ୍ଷୟନ୍ତୁ ॥**
ନିମ୍ନୋକ୍ତ ମନ୍ତ୍ରରେ ଉତ୍ତର ଦିଗକୁ କିଛି କିଛି ଫିଙ୍ଗିବେ—
**ଓମ୍, ବିଶ୍ୱେ ତ୍ୱା ଦେବା ଆନୁଷ୍ଟୁଭେନ ଛନ୍ଦସା ଭକ୍ଷୟନ୍ତୁ ॥**
ଏବଂ ନିମ୍ନଲିଖିତ ମନ୍ତ୍ର ଉଚ୍ଚାରଣ କରି ପାତ୍ରର ମଧ୍ୟଭାଗରୁ (ମଧୁପର୍କ) ନେଇ ଊର୍ଦ୍ଧ୍ୱ ଦିଗକୁ ତିନିଥର ଛିଞ୍ଚାଡ଼ିବେ—
**ଓମ୍, ଭୂତେଭ୍ୟସ୍ତ୍ୱା ପରିଗୃହ୍ଣାମି ॥**

( ଅଶ୍ୱଳା. ଗୃ. ଅ. ୧ । କଂ ୨୪ । ସୂ. ୧୪, ୧୫ )

ତତ୍ପରେ ଏହି ମଧୁପର୍କ ତିନୋଟି କଂସା ପାତ୍ରରେ ତିନୋଟି ଭାଗରେ ବିଭକ୍ତ କରି ନିଜ ସମ୍ମୁଖରେ ଭୂମିଉପରେ ରଖିବେ । ଏହାପରେ ଭାବରେ ରଖି ବର ନିମ୍ନୋକ୍ତ ମନ୍ତ୍ର ଥର

ଥର କରି ପାଠ କରି ଏକ ଏକ ଭାଗରୁ କିଛୁ କିଛୁ ବା ସବୁ ଭକ୍ଷଣ କରିବେ—

ବର— ଓଓମ୍ ଯନ୍ମଧୁନୋ ମଧବ୍ୟଂ ପରମଁ ରୂପ-ମନ୍ନାଦ୍ୟମ୍ । ତେନାହଂ ମଧୁନୋ ମଧବ୍ୟେନ ପର-ମେଣ ରୂପେଣାନ୍ନାଦ୍ୟେନ ପରମୋ ମଧବ୍ୟୋଽନ୍ନା-ଦୋଽସାନି ॥ (ପାର. କାଂ ୧ । କଂ ୩ । ୨୦)

ଏବଂ ଏ ସମସ୍ତ ପାତ୍ରରେ ଯାହା କିଛି ଅବଶିଷ୍ଟ ଥିବ, ତାହା ନିଜର କୌଣସି ସେବକକୁ ଦେବେ ବା ଜଳରେ ନିକ୍ଷେପ କରିବେ । ପରେ ନିମ୍ନୋକ୍ତ ଦୁଇଟି ମନ୍ତ୍ରରେ ଦୁଇଥର ଆଚମନ କରିବେ –

ବର – ଓଓମ୍, ଅମୃତାପିଧାନମସି ସ୍ୱାହା ॥
ଓଓମ୍, ସତ୍ୟଂ ଯଶଃ ଶ୍ରୀର୍ମୟି ଶ୍ରୀଃ ଶ୍ରୟତାଂ ସ୍ୱାହା ॥
( ଆଶ୍ୱଲା. ଗୃ. ଅ. ୧ । କଂ ୨୪ । ସୂ. ୨୧ । ୨୨ )

ଅର୍ଥାତ୍ ପ୍ରଥମ ମନ୍ତ୍ରରେ ଥରେ ଓ ଦ୍ୱିତୀୟ ମନ୍ତ୍ରରେ ଦ୍ୱିତୀୟଥର ଆଚମନ କରିବେ । ତତ୍ପଶ୍ଚାତ୍ ବର ୨୬-୨୭ ପୃଷ୍ଠାରେ ଲିଖିତ ପ୍ରଣାଳୀରେ ଜଳ ଦ୍ୱାରା ଚକ୍ଷୁରାଦି ଇନ୍ଦ୍ରିୟ ସ୍ପର୍ଶ କରିବେ ।

ତତ୍ପରେ କନ୍ୟା ବନସ୍ତ ସହକାରେ ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରି ଗୋଦାନାଦି ଯଥାଯୋଗ୍ୟ ଦ୍ରବ୍ୟ ବରକୁ ଯଥାଶକ୍ତି ଅର୍ପଣ କରିବେ—

ବଧୂ – ଓଓମ୍, ଗୌର୍ଗୌର୍ଗୌଃ ପ୍ରତିଗୃହ୍ୟତାମ୍ ॥



ବର ନିମ୍ନୋକ୍ତ ବାକ୍ୟ ଉଚ୍ଚାରଣ କରି ତାହା ଗ୍ରହଣ କରିବେ --

ବର— **ଓ୩ମ୍, ପ୍ରତିଗୃହ୍ଣାମି ॥**

( ପାର. କା. ୧ । କଂ ୩ । ୨୬ ॥

ଏଇଭଳି ମଧୁପର୍କ ବିଧି ଯଥାଶାସ୍ତ୍ର କରିବେ ॥

## ॥ କ ନ୍ୟା ଦା ନ ॥

ପରେ ବଧୂ ଓ କର୍ମକର୍ତ୍ତା ବରକୁ ସଭାମଣ୍ଡପରୁ* ଗୃହ ମଧ୍ୟକୁ ନେଇ ଶୁଭ ଆସନରେ ପୂର୍ବାଭିମୁଖରେ ବସାଇବେ ଏବଂ ବଧୂକୁ ବରର ସମ୍ମୁଖରେ ପଶ୍ଚିମାଭିମୁଖରେ ବସାଇ ନିଜେ ଉତ୍ତରାଭିମୁଖରେ ଉପବେଶନପୂର୍ବକ ନିମ୍ନୋକ୍ତ ବାକ୍ୟ ବୋଲିବେ—

କନ୍ୟାପିତା— **ଓ୩ମ୍,† ଅମୁକ ଗୋତ୍ରୋତ୍ପନ୍ନାମିମା-ମମୁକନାମ୍ନୀମ୍★ ଅଲଙ୍କୃତାଂ କନ୍ୟାଂ ପ୍ରତିଗୃହ୍ଣାତୁ-ଭବାନ୍ ॥**

---

* ଯଦି ସଭାମଣ୍ଡପ ସ୍ଥାପିତ ନଥିବ, ତେବେ ଯେଉଁ ଗୃହରେ ମଧୁପର୍କ ହେବ ସେଠାରୁ ବରକୁ ଅନ୍ୟ ଗୃହକୁ ନେଇଯିବେ ।

† "ଅମୁକ" ଏଇ ପଦ ସ୍ଥାନରେ ଯେଉଁ ଗୋତ୍ର ଏବଂ କୁଳରେ ବଧୂ ଉତ୍ପନ୍ନ ହୋଇଛି, ତାହା ଉଚ୍ଚାରଣ କରିବେ ଅର୍ଥାତ୍ ସେଇ ନାମ କହିବେ ।

★ "ଅମୁକ ନାମ୍ନୀମ୍" ଏଇ ସ୍ଥାନରେ ବଧୂ ନାମରେ ଦ୍ୱିତୀୟା ଏକବଚନ ଯୁକ୍ତ କରି କହିବେ ।

ଏହାପରେ କନ୍ୟା ବରର ଦକ୍ଷିଣହାତ ଚିତ୍ କରି ରଖି ଅର୍ଥାତ୍ ହାତ ପାପୁଲି ଉପରଆଡ଼କୁ ରଖି ତା ହାତ ଉପରେ ବଧୂର ଦକ୍ଷିଣ ହାତ ପାପୁଲି ରଖିବେ ଏବଂ ବର ନିମ୍ନୋକ୍ତ ମନ୍ତ୍ର ବୋଲିବେ –

ବର – **ଓ୩ମ୍, ପ୍ରତିଗୃହ୍ଣାମି ॥**

ତତ୍ପରେ ବର ନିମ୍ନୋକ୍ତ ମନ୍ତ୍ର ବୋଲି ବଧୂକୁ ଉତ୍ତମ ବସ୍ତ୍ର ପ୍ରଦାନ କରିବେ –

**ଓ୩ମ୍, ଜରାଂ ଗଚ୍ଛ ପରିଧତ୍ସ୍ୱ ବାସୋ ଭବାକୃଷ୍ଟୀ-ନାମଭିଶସ୍ତିପାବା । ଶତଂ ଚ ଜୀବ ଶରଦଃ ସୁବର୍ଚ୍ଚା ରୟିଂ ଚ ପୁତ୍ରାନନୁସଂବ୍ୟୟସ୍ୱାୟୁଷ୍ମତୀଦଂ ପରି-ଧତ୍ସ୍ୱ ବାସଃ ॥** ( ପାର. କା. ୧ କଂ ୪ । ୧୨ )

ତତ୍ପରେ ନିମ୍ନୋକ୍ତ ମନ୍ତ୍ର ବୋଲି ବଧୂକୁ ଉପବସ୍ତ୍ର ପ୍ରଦାନ କରିବେ –

**ବର— ଓ୩ମ୍, ଯା ଅକୃଂତନ୍ନବୟନ୍ ଯା ଅତନ୍ୱତ ଯାଶ୍ଚ ଦେବ୍ୟସ୍ତନ୍ତୂନଭିତୋ'ତତନ୍ଥ । ତାସ୍ତ୍ୱା ଦେବୀ-ର୍ଜରସେ ସଂବ୍ୟୟସ୍ୱାୟୁଷ୍ମତୀଦଂ ପରିଧତ୍ସ୍ୱ ବାସଃ ॥**

( ପାର. ଗୃ. କ.° ୧ । କଂ ୪ । ୧୩ ॥

ଏହି ବସ୍ତ୍ର ନେଇ ବଧୂ ଅନ୍ୟ କୌଣସି ଗୃହରେ ଏକାନ୍ତରେ ତାହା ପରିଧାନ କରିବେ ଏବଂ ଉପବସ୍ତ୍ରକୁ ଯଜ୍ଞୋପବୀତ ଭଳି ଧାରଣ କରିବେ । ବର ମଂନ୍ତ୍ର ପାଠକରି ସ୍ୱୟଂ ଅଧୋବସ୍ତ୍ର ଧାରଣ କରିବେ—



ବର— ଓଁ ଓମନ୍ତ୍ର, ପରିଧାସ୍ୟେ ଯଶୋଧାସ୍ୟେ ଦୀର୍ଘା-ୟୁତ୍ୱାୟ ଜରଦଷ୍ଟିରସ୍ମି । ଶତଂ ଚ ଜୀବାମି ଶରଦଃ ପୁରୁଚୀ ରାୟସ୍ପୋଷମଭିସଂବ୍ୟୟିଷ୍ୟେ ॥

( ପାର. କା· ୨ । କଂ ୬ । ୨୦ ॥ )

ଏବଂ ନିମ୍ନୋକ୍ତ ମନ୍ତ୍ର ପାଠ କରି ଉପବସ୍ତ୍ର ଧାରଣ କରିବେ

ବର— ଓଁ ଓମନ୍ତ୍ର, ଯଶସା ମା ଦ୍ୟାବାପୃଥିବୀ ଯଶସେ-ନ୍ଦ୍ରାବୃହସ୍ପତୀ । ଯଶୋ ଭଗଶ୍ଚ ମା ବିଂଦଦ୍ୟଶୋ ମା ପ୍ରତିପଦ୍ୟତାମ୍ ॥

( ପାର· କ. ୨ । କ ·୬ । ୨୧ ॥ )

ଏହିପରି ବଧୂ ଯେପର୍ଯ୍ୟନ୍ତ ବସ୍ତ୍ର ପରିଧାନ କରି ପ୍ରସ୍ତୁତ ହେଉଥିବେ, ସେପର୍ଯ୍ୟନ୍ତ କର୍ମକର୍ତ୍ତା ବା ଅନ୍ୟ କେହି ଯଜ୍ଞ ମଣ୍ଡପକୁ ଯାଇ କୁଣ୍ଡ ସମୀପରେ ଲିଖିତ ବିଧି ଅନୁଯାୟୀ ( ଏହି ପୁସ୍ତକର ସାମାନ୍ୟ ପ୍ରକରଣରେ ଲିଖିତ ଅଛି ) ଇନ୍ଧନ, କର୍ପୂର ବା ଘୃତ ଦ୍ୱାରା କୁଣ୍ଡର ଅଗ୍ନିକୁ ପ୍ରଦୀପ୍ତ କରିବେ । ଆହୁତି ପାଇଁ ସୁଗନ୍ଧ ଦ୍ରବ୍ୟ ମିଶ୍ରିତ ଘୃତ ହାଣ୍ଡି ସହ କୁଣ୍ଡର ଅଗ୍ନିରେ ଗରମ କରି କାଂସ୍ୟ ପାତ୍ରରେ ରଖିବେ ଏବଂ ସ୍ରୁବାଦି ହବନପାତ୍ର, ଶୁଦ୍ଧ ଜଳପାତ୍ର ଓ ସାମଗ୍ରୀ ଆଦି ଯଜ୍ଞ କୁଣ୍ଡର ନିକଟରେ ଏକତ୍ର କରି ରଖିବେ ।

ବର ପକ୍ଷରେ କୌଣସି ପୁରୁଷ ଶୁଦ୍ଧବସ୍ତ୍ର ପରିଧାନ କରି ବିଶୁଦ୍ଧ ଜଳପୂର୍ଣ୍ଣ ଗୋଟିଏ କଳସ ସହ ଯଜ୍ଞକୁଣ୍ଡ ପରିକ୍ରମା କରି କୁଣ୍ଡର ଦକ୍ଷିଣ ଭାଗରେ ଉତ୍ତରାଭିମୁଖ ହୋଇ କଳସ ସ୍ଥାପନ କରିବେ ଅର୍ଥାତ୍ କଳଶୀ ଯଜମାନରେ ନିଜର ସମ୍ମୁଖରେ ଭୂମିରେ

ରଖି ଯେତେକ୍ଷଣ ବିବାହ ଅନୁଷ୍ଠାନ ସରିନଥିବ, ସେତେ ସମୟ ଉତ୍ତରାଭିମୁଖେ ଉପବିଷ୍ଟ ଥିବେ ।

ଏହାପରେ ବରପକ୍ଷ ପାଇଁ ଜଣେ ବ୍ୟକ୍ତି ଦଣ୍ଡ (ବାଡ଼ି) ହସ୍ତରେ ନେଇ କୁଣ୍ଡର ଦକ୍ଷିଣ ଭାଗରେ ଅନୁଷ୍ଠାନ ଶେଷ ପର୍ଯ୍ୟନ୍ତ ଉତ୍ତରାଭିମୁଖ ସମାସୀନ ରହିବେ ।

ଏହାପରେ ବଧୂର ସହୋଦର, ସହୋଦର ନଥିଲେ କକେଇ ପୁଅ ଭାଇ, ମାମୁଁ ପୁଅ ବା ମାଉସୀ ପୁଅ ଭାଇ ରହି ଧାନ୍ୟ ବା ଜୁଆର ଖଇ ଓ ଶମୀ ବୃକ୍ଷର ଶୁଷ୍କପତ୍ର ଏକତ୍ର ମିଶ୍ରିତ କରି ସେଇ ଶମୀପତ୍ର ମିଶ୍ରିତ ଖଇ ୪ ( ଚାରି ) ଅଞ୍ଜୁଳା ଏକ ଶୁଦ୍ଧ ଶୂର୍ପରେ (କୁଲାରେ) ରଖି ସେଇ ଲାଜ-ଶୂର୍ପସହ ଯଜ୍ଞକୁଣ୍ଡର ପଶ୍ଚିମଭାଗରେ ପୂର୍ବାଭିମୁଖରେ ଉପବିଷ୍ଟ ଥିବେ ।

ତତ୍ପରେ କର୍ମକର୍ତ୍ତା ଗୋଟିଏ ସୁନ୍ଦର ଓ ମସୃଣ ଶିଳା ତଥା ବର ଓ ବଧୂର ଉପବେଶନାର୍ଥେ କୁଣ୍ଡ ସମୀପରେ ଦୁଇଖଣ୍ଡ କୁଶାସନ ବା ଯଜ୍ଞିୟ ତୃଣାସନ ଅଥବା ପୂର୍ବରୁ ନିର୍ଦ୍ଧାରିତ ଯଜ୍ଞିୟ ବୃକ୍ଷର ବଲ୍କଳାସନ ପ୍ରତିଷ୍ଠା କରାଇବେ ।

## [ବର ବଧୂଙ୍କର ଯଜ୍ଞମଣ୍ଡପକୁ ଆଗମନ]

ତାପରେ କର୍ମକର୍ତ୍ତା ନବବସ୍ତ୍ର ପରିହିତା କନ୍ୟାକୁ ବରର ସମ୍ମୁଖକୁ ଆନୟନ କରିବେ, ସେତେବେଳେ ବର ଓ କନ୍ୟା ନିମ୍ନୋକ୍ତ ମନ୍ତ୍ର ବୋଲିବେ—

ବର ଓ କନ୍ୟା— **ଓ୩ମ୍, ସମଞ୍ଜନ୍ତୁ ବିଶ୍ୱେ ଦେବାଃ**

ସମାପୋ ହୃଦୟାନି ନୌ । ସଂ ମାତରିଶ୍ୱା ସଂ ଧାତା
ସମୁ ଦେଷ୍ଟ୍ରୀ ଦଧାତୁ ନୌ ॥*

( ଋ. ମଂ ୧୦ । ସୂ. ୮୫ । ମ. ୪୭ ॥ )

ତପୂରେ ବର ଦକ୍ଷିଣ ହସ୍ତରେ ବଧୂର ଦକ୍ଷିଣ ହସ୍ତଧାରଣ କରି ନିମ୍ନୋକ୍ତ ମନ୍ତ୍ର ବୋଲିବେ —

ବର— **ଓଂମ୍, ଯଦୈଷି ମନସା ଦୂରଂ ଦିଶୋଽନୁପ-ବମାନୋ ବା । ହିରଣ୍ୟପର୍ଣ୍ଣୋ ବୈକର୍ଣଃ ସ ତ୍ୱା ମନ୍ମନସାଂ କରୋତୁ ଅସୌ ॥ ୨ ॥**

( ପାର. କା· ୧ । କ· ୪ । ୧୫ ॥ )

ଏବଂ ବଧୂ ସହିତ ବର ଗୃହରୁ ବାହାରି ଗୃହ ସମ୍ମୁଖସ୍ଥ ପୂର୍ବନିର୍ମିତ ଯଜ୍ଞମଣ୍ଡପରେ କୁଣ୍ଡର ସମୀପକୁ ଆଗମନ କରିବେ । ତପୂରେ ବର ନିମ୍ନଲିଖିତ ମନ୍ତ୍ର ଦୁଇଟି ବୋଲିବେ—

ବର— **ଓଂମ୍, ଭୂର୍ଭୁବଃ ସ୍ୱଃ । ଅଘୋରଚକ୍ଷୁରପତି-ଘ୍ନ୍ୟେଧି ଶିବା ପଶୁଭ୍ୟଃ ସୁମନାଃ ସୁବର୍ଚ୍ଚାଃ । ବୀର-ସୂର୍ଦେବକାମା ସ୍ୟୋନା ଶନ୍ନୋ ଭବ ଦ୍ୱିପଦେ ଶଂ ଚତୁଷ୍ପଦେ ॥ ୩ ॥**

( ଋ. ୧୦ । ୮୫ । ୪୪ ॥ )

---

* ବର ଓ କନ୍ୟା କହିବେ— ହେ ( ବିଶ୍ୱେ ଦେବାଃ ) ଏହି ଯଜ୍ଞଶାଳାରେ ଉପବିଷ୍ଟ ବିଦ୍ୱାନ୍‌ଗଣ ! ଆପଣମାନେ ଆମ ଉଭୟଙ୍କୁ ( ସମଞ୍ଜନ୍ତୁ ) ନିଶ୍ଚିତ ଭାବରେ ଜ୍ଞାତ ହୁଅନ୍ତୁ ଯେ, ଆମେ ସାନନ୍ଦରେ ଗୃହାଶ୍ରମରେ ଏକତ୍ର ବାସକରିବା ପାଇଁ ଜଣେ ଅନ୍ୟଜଣଙ୍କୁ ସ୍ୱୀକାର କରୁଛୁଁ । ( ନୌ ) ଆମ ଉଭୟଙ୍କର



( ହୃଦୟାନି ) ହୃଦୟ ( ଆପଃ ) ଜଳପରି ( ସମ୍ ) ଶାନ୍ତ ଓ ମିଳିତ ହେଉ । ଯେପରି ( ମାତରିଶ୍ୱା ) ପ୍ରାଣବାୟୁ ଆମର ପ୍ରିୟ, ସେହିପରି ( ସମ୍ ) ଆମେ ଉଭୟେ ପରସ୍ପର ପ୍ରତି ସଦା ପ୍ରସନ୍ନ ରହିବୁ । ଯେପରି ( ଧାତା ) ଧାରଣକର୍ତ୍ତା ପରମାତ୍ମା ସମସ୍ତଙ୍କ ମଧ୍ୟରେ ( ସମ୍ ) ମିଳିତ ଥାଇ ସମସ୍ତ ଜଗତକୁ ଧାରଣ କରିଛନ୍ତି । ସେହିପରି ଆମେ ଉଭୟେ ଜଣେ ଅନ୍ୟ ଜଣଙ୍କୁ ଧାରଣ କରିବୁ । ଯେପରି ( ସମୁଦେଷ୍ଟ୍ରୀ ) ଉପଦେଶକ ଶ୍ରୋତୃବୃନ୍ଦଙ୍କୁ ପ୍ରୀତି ଦାନ କରନ୍ତି, ସେହିପରି ( ନୌ ) ଆମ୍ଭମାନଙ୍କର ଉଭୟଙ୍କର ଆତ୍ମା ପରସ୍ପର ସହିତ ଦୃଢରୂପେ ( ଦଧାତୁ ) ପ୍ରେମାବଦ୍ଧ ହେଉ ।

* ( ଅସୌ ) ଏହି ପଦ ସ୍ଥାନରେ କନ୍ୟାର ନାମ ଉଚ୍ଚାରଣ କରିବେ । ହେ ବରାନନେ ବା ହେ ବରାନନ ! ଯେପରି ( ପବମାନଃ ) ପବିତ୍ର ବାୟୁ (ବା) ଯେପରି ( ହିରଣ୍ୟପର୍ଣ୍ଣୋ ବୈକର୍ଣ୍ଣଃ ) ତେଜୋମୟ କିରଣ ଦ୍ୱାରା ଜଳାଦିର ଆକର୍ଷକ ସୂର୍ଯ୍ୟ (ଦୂରମ୍) ଦୂରସ୍ଥ ପଦାର୍ଥ ଓ (ଦିଶୋଽନୁ) ଦିକ୍‌ସମୂହକୁ ପ୍ରାପ୍ତହୁଏ, ସେହିପରି ( ଯତ୍ ) ଯେ ତୁମେ ( ମନସା ) ସ୍ୱେଚ୍ଛାରେ ମୋତେ ପ୍ରାପ୍ତ ହୁଅ । ( ତ୍ୱା ) ତୁମକୁ ( ସଃ ) ସେହି ପରମେଶ୍ୱର ( ମନ୍ମନସାମ୍ ) ମୋର ଚିତ୍ତର ଅନୁକୂଳ ( କରୋତୁ ) କରନ୍ତୁ । ହେ ( ବୀର ) ବୀର ! ତୁମେ ଯେ ମନଦ୍ୱାରା ମୋତେ (ଋଷି) ପ୍ରାପ୍ତହେଉଛ, ତୁମକୁ ଜଗଦୀଶ୍ୱର ସର୍ବଦା ମୋ ମନର ଅନୁକୂଳ କରି ରଖନ୍ତୁ ।

** ହେ ବରାନନେ ! ( ଅପତିଘ୍ନି ) ତୁମେ ପତି ସହିତ ଅବିରୋଧିନୀ । ତୁମର ( ଓମ୍ ) ରକ୍ଷକ ( ଭୂଃ ) ପ୍ରାଣଦାତା

( ଭୁବଃ ) ସର୍ବ ଦୁଃଖ ନାଶକ ( ସ୍ୱଃ ) ସର୍ବ ସୁଖଦାତା ପରମାତ୍ମାଙ୍କର କୃପାରେ ଓ ସ୍ୱୀୟ ଉତ୍ତମ ପୁରୁଷାର୍ଥ ବଳରେ ତୁମେ ( ଅଘୋରଚକ୍ଷୁ ) ପ୍ରିୟଦୃଷ୍ଟି ( ଏଧି ) ହୁଅ । (ଶିବା) ମଙ୍ଗଳକାରିଣୀ, ( ପଶୁଭ୍ୟଃ ) ସମସ୍ତ ପଶୁଙ୍କର ସୁଖଦାତ୍ରୀ, (ସୁମନାଃ) ପବିତ୍ର ଅନ୍ତଃକରଣଯୁକ୍ତା, ପ୍ରସନ୍ନଚେତା (ସୁବର୍ଚ୍ଚାଃ) ସୁନ୍ଦର, ଶୁଦ୍ଧ-ଗୁଣ-କର୍ମ, ସ୍ୱଭାବ ଓ ବିଦ୍ୟାରେ ସୁପ୍ରକାଶିତ, ( ବୀରସୂଃ ) ଉତ୍ତମ ଶ୍ରେଷ୍ଠ ଓ ବୀର ପୁରୁଷମାନଙ୍କୁ ଉତ୍ପନ୍ନ କରୁଥିବା, ( ଦେବୃକାମା ) ଉତ୍ତମ ଦେବର କାମିନୀ ଅର୍ଥାତ୍ ନିୟୋଗ ଇଚ୍ଛା କରୁଥିବା, ( ସ୍ୟୋନା ) ସୁଖଯୁକ୍ତା ହୋଇ ( ନଃ ) ଆମ୍ଭର,, ( ଦ୍ୱିପଦେ ) ମନୁଷ୍ୟମାନଙ୍କ ପାଇଁ (ଶମ୍) ସୁଖଦାତ୍ରୀ ( ଭବ ) ସର୍ବଦା ହୁଅ, ଓ ( ଚତୁଷ୍ପଦେ ) ଗାଈ ଆଦି ପଶୁମାନଙ୍କୁ ମଧ୍ୟ ( ଶମ୍ ) ସୁଖ ପ୍ରଦାନ କର । ସେହିପରି ମୁଁ ( ତୁମର ସ୍ୱାମୀ ) ମଧ୍ୟ ଆଚରଣ କରେଁ ।

---

**ଓମ୍, ଭୂର୍ଭୁବଃ ସ୍ୱଃ । ସା ନଃ ପୂଷା ଶିବତମାମୈରୟ ସା ନ ଊରୂ ଉଶତୀ ବିହର । ଯସ୍ୟାମୁଶନ୍ତଃ ପ୍ରହରାମ ଶେପଂ ଯସ୍ୟାମୁ କାମା ବହବୋ ନିବିଷ୍ଟ୍ୟୈ ॥ ୪ ॥** ( ପାର· କା. ୧ । ୪ । ୧୬ ॥ )

ତତ୍ପରେ ବର ଓ ବଧୂ ଉଭୟେ ଯଜ୍ଞକୁଣ୍ଡ ପ୍ରଦକ୍ଷିଣକରି କୁଣ୍ଡର ପଶ୍ଚିମ ଭାଗରେ ପୂର୍ବ ସ୍ଥାପିତ ଆସନରେ ବଧୂ ବରର ଦକ୍ଷିଣଭାଗରେ ଏବଂ ବର ବଧୂର ବାମ ଭାଗରେ ଉପବେଶନ କରିବା ପରେ ବଧୂ ନିମ୍ନୋକ୍ତ ମନ୍ତ୍ର ପାଠ କରିବେ –

ବଧୂ— **ଓମ୍, ପ୍ର ମେ ପତିଯାନଃ ପନ୍ଥା କଳ୍ପତାଁ**

ଶିବା ଅଶ୍ରିଷ୍ଟା ପତିଲୋକଂ ଗମେୟମ୍ ॥

( ମ. ବ୍ରା· ୧ । ୧ । ୮ ॥ ) ଗୋଭି. ୨ । ୧୩

ତତ୍ପରେ ଏହି ପୁସ୍ତକର ସାମାନ୍ୟ ପ୍ରକରଣର ଲିଖିତ ବିଧି ଅନୁସାରେ ଯଜ୍ଞକୁଣ୍ଡ ସମୀପରେ ଦକ୍ଷିଣଭାଗରେ ଉତ୍ତରା-ଭିମୁଖରେ "ପୁରୋହିତ ସ୍ଥାପନା କରିବେ, ଓଓମ୍, ଅମୃତୋ-ପସ୍ତରଣମସି ସ୍ୱାହା ॥ ଇତ୍ୟାଦି ତିନମନ୍ତ୍ରରେ ପ୍ରତିମନ୍ତ୍ରରେ ବର, ବଧୂ, ପୁରୋହିତ ଓ କର୍ମକର୍ତ୍ତା ଗୋଟିଏ ଗୋଟିଏ ଆଚମନ କରି ମୋଟ ତିନୋଟି ଆଚମନ କରିବେ ଏବଂ ଗୋଟିଏ ଶୁଦ୍ଧ ପାତ୍ରରେ ହସ୍ତ ଓ ମୁଖ ପ୍ରକ୍ଷାଳନ କରି ତାହା ଦୂରରେ ରଖାଇ ଦେବେ । ହସ୍ତ ଓ ମୁଖ ପୋଛି ବିଧିପୂର୍ବକ ଓଓମ୍, ଭୂର୍ଭୁବଃ ସ୍ୱର୍ଦ୍ୟୌରିବ ଏହି ମନ୍ତ୍ରରେ ଯଜ୍ଞକୁଣ୍ଡରେ ଅଗ୍ନ୍ୟାଧାନ କରିବେ । ଓଓମ୍, ଅୟନ୍ତ ଇଧ୍ମଂ ଇତ୍ୟାଦି ମନ୍ତ୍ରରେ ସମି-ଧାଦାନ କରିବେ । ତତ୍ପରେ ୩୦ ପୃଷ୍ଠାରେ ଲିଖିତ ବିଧି ଅନୁସାରେ ଓଓମ୍, ଅଦିତେଽନୁମନ୍ୟସ୍ୱ ॥ ଇତ୍ୟାଦି ତିନୋଟି ମନ୍ତ୍ରରେ କୁଣ୍ଡର ତିନ ଦିଗରେ ଏବଂ ଓଓମ୍, ଦେବ ସବିତଃ ପ୍ରସୁବ ଏଇ ମନ୍ତ୍ରରେ କୁଣ୍ଡର ଚତୁର୍ଦ୍ଦିଗରେ ଦକ୍ଷିଣ ହସ୍ତର ଅଞ୍ଜଳି ଦ୍ୱାରା ଶୁଦ୍ଧ ଜଳ ସିଞ୍ଚନ କରିବେ ।

କୁଣ୍ଡରେ ଆହୃତ ତ୍ରିଦଶ ସମିଧା ପ୍ରଦୀପ୍ତ ହେଲେ ୩୧ ରୁ ୩୨ ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ପ୍ରଣାଳୀରେ ବଧୂ, ବର, ପୁରୋହିତ ଓ କର୍ମକର୍ତ୍ତା ଘୃତ ଦ୍ୱାରା ୪ ( ଚାରି ) ଆଘାରବାଜ୍ୟଭାଗାହୁତି ଦେବେ ।

ତତ୍ପରେ ଘୃତ ଦ୍ୱାରା ୩୪ ପୃଷ୍ଠାରୁ ୩୬ ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ବିଧିରେ ୮ ( ଆଠ ) ଅଷ୍ଟାଜ୍ୟାହୁତି ଦେବେ । ସର୍ବସମେତ ୧୬ ( ଷୋଳ ) ଆଜ୍ୟାହୁତି ଦେଇ ପ୍ରଧାନହୋମ-ଆହୁତି ଆରମ୍ଭ କରିବେ ।

ତତ୍ପରେ ବଧୂ ସ୍ୱୀୟ ଦକ୍ଷିଣ ହସ୍ତଦ୍ୱାରା ବରର ଦକ୍ଷିଣସ୍କନ୍ଧ ସ୍ପର୍ଶକରି ୩୩ ପୃଷ୍ଠାରୁ ୩୪ ପୃଷ୍ଠା ପର୍ଯ୍ୟନ୍ତ ଲିଖିତ ବିଧିରେ ଓ୩ମ୍, ଭୂର୍ଭୁବଃ ସ୍ୱଃ । ଅଗ୍ନ ଆୟୂଂଷି ଇତ୍ୟାଦି ଚାରିମନ୍ତ୍ରରେ ଅର୍ଥାତ୍ ଗୋଟିଏ ଗୋଟିଏ ମନ୍ତ୍ର ଦ୍ୱାରା ଗୋଟିଏ ଗୋଟିଏ ଆହୁତି ଦେଇ ମୋଟରେ ୪ ( ଚାରି ) ଆଜ୍ୟାହୁତି କ୍ରମାନୁସାରେ ଦେବେ ଏବଂ ନିମ୍ନୋକ୍ତ ମନ୍ତ୍ରବୋଲି ପଞ୍ଚମ ଆଜ୍ୟାହୁତି ଦେବେ—

**ଓ୩ମ୍, ଭୂର୍ଭୁବଃ ସ୍ୱଃ । ତ୍ୱମର୍ଯ୍ୟମା ଭବସି ଯତ୍କନୀନାଂ ନାମ ସ୍ୱଧାବନ୍ ଗୁହ୍ୟଂ ବିଭର୍ଷି । ଅଞ୍ଜନ୍ତି ମିତ୍ରଂ ସୁଧିତଂ ନ ଗୋଭିର୍ଯଦ୍ଦମ୍ପତୀ ସମନସା କୃଣୋଷି ସ୍ୱାହା ॥ ଇଦମଗ୍ନୟେ···ଇଦନ୍ନ ମମ ॥**

( ଋ· ମ° ୫ । ସୂ. ୩ । ମ° ୨ ॥ ଆ. ୧ । ୪ । ୭ ॥

ବର ତାପରେ ନିମ୍ନୋକ୍ତ ବାର ( ୧୨ ) ମନ୍ତ୍ରରେ ବାର ରାଷ୍ଟ୍ରଭୃତ୍ ଆଜ୍ୟାହୁତି ଦେବେ—

**ଓ୩ମ୍, ଋତାଷାଡ଼୍ ଋତଧାମାଗ୍ନିର୍ଗନ୍ଧର୍ବଃ । ସ ନଇଦଂ ବ୍ରହ୍ମ କ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ ॥ ଇଦମୃତା-**

ସାହେ ଋତଧାମ୍ନେ ଅଗ୍ନୟେ ଗନ୍ଧର୍ବାୟ— ଇଦନ୍ନ-
ମମ ॥ ୧ ॥

ଓ୩ମ୍, ଋତାଷାଡ଼୍ ଋତଧାମାଗ୍ନିର୍ଗନ୍ଧର୍ବସ୍ତସ୍ୟୌଷଧ-
ୟୋଽପ୍‌ସରସୋ ମୁଦୋ ନାମ । ତାଭ୍ୟଃ ସ୍ୱାହା ॥
ଇଦମୋଷଧିଭ୍ୟୋଽପ୍‌ସରୋଭ୍ୟୋ ମୁଦ୍‌ଭ୍ୟଃ– ଇଦନ୍ନ
ମମ ॥ ୨ ॥

ଓ୩ମ୍, ସଁ ହିତୋ ବିଶ୍ୱସାମା ସୂର୍ଯ୍ୟୋ ଗନ୍ଧର୍ବଃ । ସ
ନ ଇଦଂ ବ୍ରହ୍ମ କ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା
ବାଟ୍ ॥ ଇଦଂ ସଁ ହିତାୟ ବିଶ୍ୱସାମ୍ନେ ସୂର୍ଯ୍ୟାୟ ଗନ୍ଧ-
ର୍ବାୟ— ଇଦନ୍ନ ମମ ॥ ୩ ॥ ଓ୩ମ୍, ସଁ ହିତୋ ବିଶ୍ୱ-
ସାମା ସୂର୍ଯ୍ୟେ । ଗନ୍ଧର୍ବସ୍ତସ୍ୟ ମରୀଚୟୋଽ ପ୍‌ସରସ
ଆୟୁବୋ ନାମ । ତାଭ୍ୟଃ ସ୍ୱାହା ॥ ଇଦଂ ମରୀଚ-
ଭ୍ୟୋଽପ୍‌ସରୋଭ୍ୟ ଆୟୁଭ୍ୟଃ – ଇଦନ୍ନ ମମ ॥୪॥
ଓ୩ମ୍, ସୁଷୁମ୍‌ଣଃ ସୂର୍ଯ୍ୟରଶ୍ମି ଶ୍ଚନ୍ଦ୍ରମା ଗନ୍ଧର୍ବଃ । ସ ନ
ଇଦଂ ବ୍ରହ୍ମ କ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ ॥ ଇଦଂ
ସୁଷୁଣ୍ମାୟ ସୂର୍ଯ୍ୟରଶ୍ମୟେ ଚନ୍ଦ୍ରମସେ ଗନ୍ଧର୍ବାୟ—
ଇଦନ୍ନ ମମ ॥୫॥ ଓ୩ମ୍, ସୁଷୁମ୍‌ଣଃ ସୂର୍ଯ୍ୟରଶ୍ମି ଚନ୍ଦ୍ରମା
ଗନ୍ଧର୍ବସ୍ତସ୍ୟ ନକ୍ଷତ୍ରାଣ୍ୟପ୍‌ସରସୋ ଭେକୁରୟୋ ନାମ ।
ତାଭ୍ୟଃ ସ୍ୱାହା । ଇଦଂ ନକ୍ଷତ୍ରେଭ୍ୟୋଽପ୍‌ସରୋଭ୍ୟୋ
ଭେକୁରିଭ୍ୟଃ – ଇଦନ୍ନ ମମ ॥୬॥ ଓ୩ମ୍, ଇଷିରୋ

ବିଶ୍ୱବ୍ୟଚ୍ଚ ବାତୋ ଗନ୍ଧର୍ବଃ । ସନ ଇଦଂ ବ୍ରହ୍ମ କ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ ॥ ଇଦମିଷିରାୟ ବିଶ୍ୱବ୍ୟଚସେ ବାତାୟ ଗନ୍ଧର୍ବାୟ— ଇଦନ୍ନ ମମ ॥ ୭ ॥

ଓମ୍, ଇଷିରୋ ବିଶ୍ୱବ୍ୟଚା ବାତୋ ଗନ୍ଧର୍ବସ୍ତସ୍ୟାପୋ ଅପ୍ସରସ ଊର୍ଜ୍ଜୋ ନାମ । ତାଭ୍ୟଃ ସ୍ୱାହା ॥ ଇଦମଦ୍ଭ୍ୟୋଽପ୍ସରୋଭ୍ୟ ଊର୍ଗ୍ଭ୍ୟଃ– ଇଦନ୍ନ ମମ॥୮॥

ଓମ୍, ଭୁଜ୍ୟୁଃ ସୁପର୍ଣ୍ଣୋ ଯଜ୍ଞୋ ଗନ୍ଧର୍ବଃ । ସ ନ ଇଦଂ ବ୍ରହ୍ମ କ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ ॥ ଇଦଂ ଭୁଜ୍ୟବେ ସୁପର୍ଣ୍ଣାୟ ଯଜ୍ଞାୟ ଗନ୍ଧର୍ବାୟ— ଇଦନ୍ନ ମମ ॥ ୯ ॥

ଓମ୍, ଭୁଜ୍ୟୁଃ ସୁପର୍ଣ୍ଣୋ ଯଜ୍ଞୋ ଗନ୍ଧର୍ବସ୍ତସ୍ୟ ଦକ୍ଷିଣା ଅପ୍ସରସ ସ୍ତାବା ନାମ । ତାଭ୍ୟଃ ସ୍ୱାହା । ଇଦଂ ଦକ୍ଷିଣାଭ୍ୟୋଽପ୍ସରୋଭ୍ୟଃ ସ୍ତାବାଭ୍ୟଃ— ଇଦନ୍ନ ମମ ॥ ୧୦ ॥

ଓମ୍, ପ୍ରଜାପତିର୍ବିଶ୍ୱକର୍ମା ମନୋ ଗନ୍ଧର୍ବଃ । ସ ନ ଇଦଂ ବ୍ରହ୍ମ କ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ ॥ ଇଦଂ ପ୍ରଜାପତୟେ ବିଶ୍ୱକର୍ମଣେ ମନସେ ଗନ୍ଧର୍ବାୟ— ଇଦନ୍ନମମ ॥୧୧ ॥

ଓମ୍, ପ୍ରଜାପତିର୍ବିଶ୍ୱକର୍ମା ମନୋ ଗନ୍ଧର୍ବସ୍ତସ୍ୟ ଋକ୍ସାମାନ୍ୟପ୍ସରସ ଏଷ୍ଟୟୋ ନାମ । ତାଭ୍ୟଃ



ସ୍ୱାହା ।।ଇଦମୃକ୍‌ସାମେଭ୍ୟୋଽପ୍‌ସରୋଭ୍ୟଏଷ୍ଟିଭ୍ୟଃ-
ଇଦନ୍ନ ମମ ।।୧୨ ।।

(ପାର୍. କା. ୧ । କଂ. ୫ । ୭ । ୮) (ଯଜୁ ୧୮।୩୮-୪୩)

ଏହାପରେ **ଜୟାହୋମ** କରିବେ । ନିମ୍ନଲିଖିତ ପ୍ରତ୍ୟେକ ମନ୍ତ୍ରରେ ଗୋଟିଏ ଗୋଟିଏ କରି ଜୟା ହୋମର ୧୩ (ତେରଟି) ଆଜ୍ୟାହୁତି ଦେବେ—

ଓଁ୩ମ୍, ଚିତ୍ତଂ ଚ ସ୍ୱାହା ।। ଇଦଂ ଚିତ୍ତାୟ-ଇଦନ୍ନ
ମମ ।। ୧ ।।

ଓଁ୩ମ୍, ଚିତ୍ତିଶ୍ଚ ସ୍ୱାହା ।। ଇଦଂ ଚିତ୍ତ୍ୟୈ··· ଇଦନ୍ନ
ମମ ।। ୨ ।।

ଓଁ୩ମ୍, ଆକୂତଂ ଚ ସ୍ୱାହା ।। ଇଦମାକୂତାୟ—ଇଦନ୍ନ
ମମ ।। ୩ ।।

ଓଁ୩ମ୍, ଆକୂତିଶ୍ଚ ସ୍ୱାହା ।। ଇଦମାକୂତ୍ୟୈ- ଇଦନ୍ନ
ମମ ।। ୪ ।।

ଓଁ୩ମ୍, ବିଜ୍ଞାତଂ ଚ ସ୍ୱାହା ।। ଇଦଂ ବିଜ୍ଞାତାୟ—
ଇଦନ୍ନ ମମ ।। ୫ ।।

ଓଁ୩ମ୍, ବିଜ୍ଞାତିଶ୍ଚ ସ୍ୱାହା ।। ଇଦଂ ବିଜ୍ଞାତ୍ୟୈ-
ଇଦନ୍ନ ମମ ।। ୬ ।।

ଓଁ୩ମ୍ଃ ମନଶ୍ଚ ସ୍ୱାହା ।। ଇଦଂ ମନସେ- ଇଦନ୍ନ
ମମ ।। ୭ ।।

ଓଁ୍, ଶକ୍ୱରୀଶ୍ଚ ସ୍ୱାହା ॥ ଇଦଂ ଶକ୍ୱରୀଭ୍ୟଃ-
ଇଦନ୍ନ ମମ ॥ ୮ ॥
ଓଁ୍, ଦର୍ଶଶ୍ଚ ସ୍ୱାହା ॥ ଇଦଂ ଦର୍ଶାୟ— ଇଦନ୍ନ
ମମ ॥ ୯ ॥
ଓଁ୍, ପୌର୍ଣ୍ଣମାସଂ ଚ ସ୍ୱାହା ॥ ଇଦଂ ପୌର୍ଣ୍ଣ-
ମାସାୟ··· ଇଦନ୍ନ ମମ ॥ ୧୦ ॥
ଓଁ୍, ବୃହଚ୍ଚ ସ୍ୱାହା ॥ ଇଦଂ ବୃହତେ—ଇଦନ୍ନ
ମମ॥ ୧୧ ॥
ଓଁ୍, ରଥନ୍ତରଞ୍ଚ ସ୍ୱାହା ॥ ଇଦଂ ରଥନ୍ତରାୟ –
ଇଦନ୍ନ ମମ ॥ ୧୨ ॥
ଓଁ୍, ପ୍ରଜାପତିର୍ଜୟାନିନ୍ଦ୍ରାୟ ବୃଷ୍ଣେ ପ୍ରାୟଚ୍ଛଦୁଗ୍ର
ପ୍ରତନାଜୟେଷୁ । ତସ୍ମୈ ବିଶଃ ସମନମନ୍ତ ସର୍ବାଃ
ସ ଉଗ୍ରଃ ସ ଇ ହବ୍ୟୋ ବଭୂବ ସ୍ୱାହା ॥ ଇଦଂ
ପ୍ରଜାପତୟେ ଜୟାନିନ୍ଦ୍ରାୟ— ଇଦନ୍ନ ମମ ॥ ୧୩ ।
( ପାର.ଗୃ. ୧ । ୫ । ୯ ॥ )

ତା'ପରେ ବର ଅଭ୍ୟାତନହୋମ କରିବେ । ଏଥିରେ ନିମ୍ନୋକ୍ତ ମନ୍ତ୍ରରେ ୧୮ ( ଅଠର ) ଆହୁତି ଦେବେ···

ଓଁ୍, ଅଗ୍ନିର୍ଭୂତାନାମଧିପତିଃ ସ ମାବତ୍ୱସ୍ମିନ୍
ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟା-
ମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥



ଇଦମଗ୍ନୟେ ଭୂତାନାମଧିପତୟେ ଇଦନ୍ନ ମମ ॥ ୧ ॥

ଓଂ, ଇନ୍ଦ୍ରୋ ଜ୍ୟେଷ୍ଠାନାମଧିପତିଃ, ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥ ଇଦମିନ୍ଦ୍ରାୟ ଜ୍ୟେଷ୍ଠାନାମଧିପତୟେ– ଇଦନ୍ନ ମମ ॥ ୨ ॥

ଓଂ, ଯମଃ ପୃଥିବ୍ୟାଽଅଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥ ଇଦଂ ଯମାୟ ପୃଥିବ୍ୟା ଅଧିପତୟେ – ଇଦନ୍ନ ମମ ॥ ୩ ॥

ଓଂ, ବାୟୁରନ୍ତରିକ୍ଷସ୍ୟାଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥ ଇଦଂ ବାୟବେ ଅନ୍ତରିକ୍ଷସ୍ୟାଧିପତୟେ– ଇଦନ୍ନ ମମ ॥ ୪ ॥

ଓଂ, ସୂର୍ଯ୍ୟୋ ଦିବୋଽଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥ ଇଦଂ ସୂର୍ଯ୍ୟାୟ ଦିବୋଽଧିପତୟେ— ଇଦନ୍ନ ମମ ॥ ୫ ॥

ଓଁ ଚନ୍ଦ୍ରମା ନକ୍ଷତ୍ରାଣାମଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ।
ଇଦଂ ଚନ୍ଦ୍ରମସେ ନକ୍ଷତ୍ରାଣାମଧିପତୟେ-ଇଦନ୍ନ ମମ ॥୬॥

ଓଁ ବୃହସ୍ପତିର୍ବ୍ରହ୍ମଣୋଽଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦଂ ବୃହସ୍ପତୟେ ବ୍ରହ୍ମଣୋଽଧିପତୟେ ଇଦନ୍ନ ମମ ॥୭॥

ଓଁ ମିତ୍ରଃ ସତ୍ୟାନାମଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦଂ ମିତ୍ରାୟ ସତ୍ୟାନାମଧିପତୟେ-ଇଦନ୍ନ ମମ ॥୮॥

ଓଁ ବରୁଣୋଽପାମଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟା ସ୍ୱାହା ॥
ଇଦଂ ବରୁଣାୟାପାମଧିପତୟେ – ଇଦନ୍ନ ମମ ॥୯॥

ଓଁ ସମୁଦ୍ରଃ ସ୍ରୋତ୍ୟାନାମଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ

ସ୍ୱାହା ॥ ଇଦଂ ସମୁଦ୍ରାୟ ସ୍ରୋତ୍ୟାନାମଧିପତୟେ-
ଇଦନ୍ନ ମମ ॥୧୦॥
ଓଁମ୍ ଅନ୍ନଂ ସାମ୍ରାଜ୍ୟାନାମଧିପତିଃ ତନାବତ୍ୱସ୍ମିନ୍
ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋ-
ଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦମନ୍ନାୟ ସାମ୍ରାଜ୍ୟାନାମଧିପତୟେ - ଇଦନନ୍ନ
ମମ ॥୧୧॥
ଓଁମ୍ ସୋମ ଓଷଧୀନାମଧିପତିଃ ସ ମାବତ୍ୱସ୍ମିନ୍
ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟା-
ମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦଂ ସୋମାୟ ଓଷଧୀନାମଧିପତୟେ-ଇଦନ୍ନ
ମମ ॥୧୨॥
ଓଁମ୍ ସବିତା ପ୍ରସବାନାମଧିପତିଃ ସ ମାବତ୍ୱସ୍ମିନ୍
ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟା-
ମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥ ଇଦଂ
ସବିତ୍ରେ ପ୍ରସବାନାମଧିପତୟେ - ଇଦନ୍ନ ମମ ॥୧୩॥
ଓଁମ୍ ରୁଦ୍ରଃ ପଶୂନାମଧିପତିଃ ସ ମାବତ୍ୱସ୍ମିନ୍
ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧା-
ୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦଂ ରୁଦ୍ରାୟ ପଶୂନାମଧିପତୟେ - ଇଦନ୍ନମମ
॥୧୪॥



ଓଁମ୍ ତ୍ୱଷ୍ଟା ରୂପାଣାମଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦଂ ତ୍ୱଷ୍ଟ୍ରେ ରୂପାଣାମଧିପତୟେ-ଇଦନ୍ନ ମମ ॥୧୪॥

ଓଁମ୍ ବିଷ୍ଣୁଃ ପର୍ବତାନାମଧିପତିଃ ସ ମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ - କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦଂ ବିଷ୍ଣବେ ପର୍ବତାନାମଧିପତୟେ ଇଦନ୍ନ-ମମ ॥୧୬॥

ଓଁମ୍ ମରୁତୋ ଗଣାନାମଧିପତୟସ୍ତେ ମାବନ୍ତସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟା ମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥
ଇଦଂ ମରୁଦ୍‌ଭ୍ୟୋ ଗଣାନାମଧିପତିଭ୍ୟଃ—ଇଦନ୍ନ ମମ ॥୧୭॥

ଓଁମ୍ ପିତରଃ ପିତାମହାଃ ପରେଽବରେ ତତାସ୍ତତାମହା ଇହ ମାବନ୍ତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍ କର୍ମଣ୍ୟସ୍ୟାଂ ଦେବହୂତ୍ୟାଁ ସ୍ୱାହା ॥ ଇଦଂ ପିତୃଭ୍ୟଃ ପିତାମହେଭ୍ୟଃ ପରେଭ୍ୟୋଽବରେଭ୍ୟ ସ୍ତତେଭ୍ୟସ୍ତତାମହେଭ୍ୟଶ୍ଚ-ଇଦନ୍ନ ମମ ॥୧୮॥

( ଦ୍ର. - ପାର. କା. ୧ । ଜ. ୫ । ୧୦ ॥ )



ଉପର୍ଯ୍ୟୁକ୍ତ ପ୍ରକାର ଅଭ୍ୟାଦାନ ହୋମର ୧୮ (ଅଷ୍ଟାଦଶ ) ଆଜ୍ୟାହୁତ ଦେବାପରେ ପୁନର୍ବାରଃ—

ଓ୩ମ୍ ଅଗ୍ନିରୈତୁ ପ୍ରଥମୋ ଦେବତାନାଁ ସୋଽସ୍ୟୈ ପ୍ରଜାଂ ମୁଞ୍ଚତୁ ମୃତ୍ୟୁପାଶାତ୍ । ତଦୟଁ ରାଜା ବରୁଣୋଽନୁମନ୍ୟତାଂ ଯଥେୟଁ ସ୍ତ୍ରୀ ପୌତ୍ରମଘଂ ନ ରୋଦାତ୍ ସ୍ୱାହା ॥ ଇଦମଗ୍ନୟେ-ଇଦନ୍ନ ମମ ॥୧॥

ଓ୩ମ୍ ଇମାମଗ୍ନି ସ୍ତ୍ରାୟତାଂ ଗାର୍ହପତ୍ୟଃ ପ୍ରଜାମସ୍ୟୈ ନୟତୁ ଦୀର୍ଘମାୟୁଃ । ଅଶୂନ୍ୟୋପସ୍ଥା ଜୀବତାମସ୍ତୁ ମାତା ପୌତ୍ର ମାନନ୍ଦମଭି ବବୁଧ୍ୟ ତାମିୟଁ ସ୍ୱାହା ॥ ଇଦମଗ୍ନୟେ – ଇଦନ୍ନ ମମ ॥୨॥

ଓ୩ମ୍ ସ୍ୱସ୍ତି ନୋଽଗ୍ନେ ଦିବ ଆ ପୃଥିବ୍ୟା ବିଶ୍ୱାନି ଧେହ୍ୟଯଥା ଯଜତ୍ର । ଯଦସ୍ୟାଂ ମହି ଦିବି ଜାତଂ ପ୍ରଶସ୍ତଂ ତଦସ୍ମାସୁ ଦ୍ରବିଣଂ ଧେହି ଚତ୍ରଂ ସ୍ୱାହା । ଇଦମଗ୍ନୟେ -ଇଦନ୍ନ ମମ ॥୩॥

ଓ୩ମ୍ ସୁଗନ୍ନୁ ପନ୍ଥାଂ ପ୍ରଦିଶଂ ନ ଏହି ଜ୍ୟୋତିଷ୍ମଧେ ହ୍ୟଜରଂ ନ ଆୟୁଃ । ଅପୈତୁ ମୃତ୍ୟୁର ମୃତଂ ମ ଆଗାଦ୍ବୈବସ୍ୱତୋ ନୋ ଅଭୟଂ କୃଣୋତୁ ସ୍ୱାହା । ଇଦଂ ବୈବସ୍ୱତାୟ-ଇଦନ୍ନ ମମ ॥୪॥ (ପାର.ଗୃ.କା ୧।୧୧ )

ଓ୩ମ୍ ପରଂ ମୃତ୍ୟୋ ଅନୁପରେହି ପନ୍ଥାଂ ଯସ୍ତେ ନୋ ଅନ୍ୟ ଇତରୋ ଦେବଯାନାତ୍ । ଚକ୍ଷୁଷ୍ମତେ ଶୃଣ୍ୱତେ ତେ ବ୍ରବୀମି ମା ନଃ ପ୍ରଜାଁ ରୀରିଷୋ ମୋତ ବୀରାନ୍ତ୍ ସ୍ୱାହା ॥ ଇଦଂ ମୃତ୍ୟବେ – ଇଦନ୍ନ ମମ ॥୪॥

( ପାର° କା: ୧ । କ: ୫ । ୧୨ ॥ )

ଓ୩ମ୍ ଦୌଷ୍ଟେ ପୃଷ୍ଠଁ ରକ୍ଷନ୍ତୁ ବାୟୁରୂରୂ ଅଶ୍ୱିନୌ ଚ । ସ୍ତନନ୍ଧୟାସ୍ତେ ପୁତ୍ରାନ୍ତ୍ ସବିତାଭିରକ୍ଷତ୍ୱା ବାସସଃ ପରିଧାନ୍ ବୃହସ୍ପତି ର୍ବିଶ୍ୱେଦେବା ଅଭିରକ୍ଷନ୍ତୁ ପଶ୍ଚାତ୍ ସ୍ୱାହା ॥ ଇଦଂ ବିଶ୍ୱେଭ୍ୟୋ ଦେବେଭ୍ୟ ଇଦନ୍ନ ମମ ॥୬॥

ଓ୩ମ୍ ମା ତେ ଗୃହେଷୁ ନିଶି ଘୋଷ ଉତ୍‌ଥାଦ-ନ୍ୟତ୍ର ତ୍ୱଦ୍ରୁଦତ୍ୟଃ ସଂବିଶନ୍ତୁ । ମା ତ୍ୱଁ ରୁଦତ୍ୟୁର ଆବଧିଷ୍ଠା ଜୀବପତ୍ନୀ ପତିଲୋକେ ବିରାଜ ପଶ୍ୟନ୍ତୀ ପ୍ରଜାଁ ସୁମନସ୍ୟମାନାଁ ସ୍ୱାହା ॥ ଇଦମଗ୍ନୟେ – ଇଦନ୍ନ ମମ ॥୭॥

ଓ୩ମ୍ ଅପ୍ରଜସ୍ୟଂ ପୌତ୍ରମର୍ତ୍ୟଂ ପାପ୍ମାନମୁତ ବା ଅଘମ୍ । ଶୀର୍ଷ୍ଣଃ ସ୍ରଜମିବୋନ୍ମୁଚ୍ୟ ଦ୍ୱିଷଦ୍ଭ୍ୟଃ ପ୍ରତି-ମୁଞ୍ଚାମି ପାଶଁ ସ୍ୱାହା ॥ ଇଦମଗ୍ନୟେ – ଇଦନ୍ନ ମମ ॥୮॥

[ ମଃ ଗୃ. ୧।୧।୧୨,୧୩,୧୪ ] (ଗୋଭି° ୨।୧।୨୧୪-୨୭)

ତାପରେ ସାମାନ୍ୟ ପ୍ରକରଣରେ ଥିବା ଲିଖିତ ବିଧିରେ **ଓମ୍ ଭୂରଗ୍ନୟେ ସ୍ୱାହା ।।** ଇତ୍ୟାଦି ଘୃତ ମନ୍ତ୍ରରେ ୪ (ଘୃତ) ଆହୁତି ଦେବେ ।

ବର ଏହାପରେ ହୋମ ଆସନରୁ ଉଠି ପୂର୍ବାଭିମୁଖରେ ଉପବିଷ୍ଟ ବଧୂ ସମ୍ମୁଖରେ ପଶ୍ଚିମାଭିମୁଖରେ ଦଣ୍ଡାୟମାନ ହେବେ ଏବଂ ନିଜର ବାମ ହସ୍ତଦ୍ୱାରା ବଧୂର ଦକ୍ଷିଣ ହସ୍ତ ତଳ ପାପୁଲି ଧରି ଉପର ଆଡକୁ ଉଠାଇବେ ଏବଂ ନିଜର ଦକ୍ଷିଣ ହସ୍ତଦ୍ୱାରା ବଧୂର ଉତ୍ତୋଳିତ ଦକ୍ଷିଣ ହସ୍ତାଞ୍ଜଳି ଅଙ୍ଗୁଷ୍ଠସହ ଧରି ନିମ୍ନୋକ୍ତ ପାଣିଗ୍ରହଣର ଛଅଟି ମନ୍ତ୍ର ବୋଲିବେ—

● **ଓମ୍ ଗୃଭ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟିର୍ଯଥାସଃ ଭଗୋ ଅର୍ଯମା ସବିତା ପୁରନ୍ଧିର୍ମହ୍ୟଂ ତ୍ୱାଦୁର୍ଗାର୍ହପତ୍ୟାୟ ଦେବାଃ ।।୧।।** ( ଋ. ମଃ ୧୦। ସୂ ୮୫।ମ.୩୬ ।। )

---

● ବରଃ—ହେ ବରକନେ ! ଯେପରି ମୁଁ ( ସୌଭଗତ୍ୱାୟ ) ଐଶ୍ୱର୍ଯ୍ୟ, ସନ୍ତାନ ଓ ସୌଭାଗ୍ୟ ବୃଦ୍ଧି ନିମିତ୍ତ (ତେ) ତୁମର ( ହସ୍ତମ୍ ) ହସ୍ତ (ଗୃଭ୍ଣାମି) ଗ୍ରହଣ କରୁଛି, (ମୟା ପତ୍ୟା) ପତିରୂପମୋ ସହିତ ତୁମେ ସୁଖ ପୂର୍ବକ ( ଜରଦଷ୍ଟିଃ ) ଜରାବସ୍ଥାକୁ ପ୍ରାପ୍ତ (ଆସଃ) ହୁଅ ।

କନ୍ୟା—ହେ ବୀର ! ମୁଁ ସୌଭାଗ୍ୟ ବୃଦ୍ଧିପାଇଁ ଆପଣଙ୍କର ହସ୍ତ ଗ୍ରହଣ କରୁଛି । ପତ୍ନୀରୂପ ମୋ ସହିତ ଆପଣ ବାର୍ଦ୍ଧକ୍ୟ

*ଓଁ ଗୃଭ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟିର୍ଯଥାସଃ ।

*ଓ୩ମ୍ । ଭଗସ୍ତେ ହସ୍ତମଗ୍ରଭୀତ୍ ସବିତା ହସ୍ତମଗ୍ର-
ଭୀତ୍ । ପତ୍ନୀ ତ୍ୱମସି ଧର୍ମଣାହଂ ଗୃହପତିସ୍ତବ ॥୨॥
† ଓ୩ମ୍ ମମେୟମସ୍ତୁ ପୋଷ୍ୟା ମହ୍ୟଂ ତ୍ୱାଦାଦ୍
ବୃହସ୍ପତିଃ । ମୟା ପତ୍ୟା ପ୍ରଜାବତି ଶଂ ଜୀବ
ଶରଦଃ ଶତମ୍ ॥୩॥
† ଓ୩ମ୍ ତ୍ୱଷ୍ଟା ବାସୋ ବ୍ୟଦଧାଚ୍ଛୁଭେ କଂ
ବୃହସ୍ପତେଃ ପ୍ରଶିଷା କବୀନାମ୍ । ତେନେମାଂ
ନାରୀଂ ସବିତା ଭଗଶ୍ଚ ସୂର୍ଯ୍ୟାମିବ ପରିଧତ୍ତାଂ
ପ୍ରଜୟା ॥୪॥

ପର୍ଯ୍ୟନ୍ତ ପ୍ରସନ୍ନ ଓ ଅନୁକୂଳ ରୁହନ୍ତୁ । ଆପଣଙ୍କୁ ମୁଁ ପତି-
ଭାବରେ ଏବଂ ମୋତେ ଆପଣ ପତ୍ନୀଭାବରେ ପ୍ରାପ୍ତ ହୋଇଛେ ।

ବରଃ—( ଭଗଃ ) ସର୍ବୈଶ୍ୱର୍ଯ୍ୟବାନ୍ (ଅର୍ଯ୍ୟମା) ନ୍ୟାୟକାରୀ
(ସବିତା) ଜଗତ୍ସ୍ରଷ୍ଟା (ପୁରନ୍ଧିଃ) ଜଗତର ଧର୍ତ୍ତା ପରମାତ୍ମା
ଏବଂ (ଦେବାଃ) ସଭାମଣ୍ଡପରେ ଉପବିଷ୍ଟ ଏହି ସବୁ
ବିଦ୍ୱାନ୍‌ମାନେ (ଗାର୍ହପତ୍ୟାୟ) ଗୃହାଶ୍ରମର କର୍ମାନୁଷ୍ଠାନ
ପାଇଁ (ତ୍ୱା) ତୁମକୁ (ମହ୍ୟମ୍) ମୋତେ (ଅଦୁଃ) ପ୍ରଦାନ
କରୁଛନ୍ତି । ଆଜିଠାରୁ ତୁମେ ମୋ ହସ୍ତରେ ଓ ମୁଁ ତୁମ
ହସ୍ତରେ ବନ୍ଦୀ ହେଲେ, ଆମେ ଜଣେ ଅନ୍ୟ ଜଣଙ୍କର
ଅପ୍ରିୟ ଆଚରଣ କରିବା ନାହିଁ ॥ ୧ ॥

---

* ହେ ପ୍ରିୟେ ! (ଭଗଃ) ଐଶ୍ୱର୍ଯ୍ୟବାନ୍ ମୁଁ (ତେ) ତୁମର
( ହସ୍ତମ୍ ) ହସ୍ତ ( ଅଗ୍ରଭୀତ୍ ) ଗ୍ରହଣ କରୁଛି । (ସବିତା)

ଧର୍ମପଥରେ ପ୍ରେରକ ମୁଁ (ହସ୍ତମ୍) ତୁମର ହସ୍ତ (ଅଗ୍ରଭୀତ୍) ଗ୍ରହଣ କରୁଛି । (ତ୍ୱମ୍) ତୁମେ (ଧର୍ମଣା) ଧର୍ମାନୁସାରେ ମୋର (ପତ୍ନୀ ଅସି) ପତ୍ନୀ ଏବଂ (ଅହମ୍) ମୁଁ ଧର୍ମାନୁସାରେ (ତବ) ତୁମର (ଗୃହପତିଃ) ଗୃହପତି । ଆମେ ଉଭୟେ ମିଶି ଗୃହକର୍ମ ନିର୍ବାହ କରିବା ଯେଉଁଥିରେ ଗୃହର ସମସ୍ତ କାର୍ଯ୍ୟ ସଫଳ ହୁଏ, ଉତ୍ତମ ସନ୍ତାନ ଉତ୍ପନ୍ନ ହୁଏ ଏବଂ ସୁଖବୃଦ୍ଧି ହେଉଥାଏ, ସେହି ସତ୍ କର୍ମ ମାନଙ୍କ ବ୍ୟତୀତ ଅନ୍ୟ ଅପ୍ରିୟାଚରଣ ଓ ବ୍ୟଭିଚାର କେବେ କରିବା ନାହିଁ ॥୧॥

ଂ ହେ ଅନଘେ ! (ବୃହସ୍ପତିଃ) ସର୍ବଜଗତ୍ ପାଳକ ପରମାତ୍ମ (ତ୍ୱା) ତୁମକୁ (ମହ୍ୟମ୍) ମୋତେ (ଅଦାତ୍) ପ୍ରଦାନ କରିଛନ୍ତି । (ଇମ୍ଯମ୍) ଏଇ ସାରା ଜଗତରେ ତୁମେହିଁ ମୋର (ପୋଷ୍ୟା) ପୋଷ୍ୟ (ଅସ୍ତୁ) ହେଲ, ହେ (ପ୍ରଜାବତୀ) ପୁତ୍ରବତୀ ! (ମୟା ପତ୍ୟା) ପତିରୂପମୋ ସହିତ (ଶତମ୍) ଶତ (ଶରଦଃ) ଶରତ୍ ଋତୁ ଅର୍ଥାତ୍ ଶତବର୍ଷ ପର୍ଯ୍ୟନ୍ତ (ଶଂଜୀବ) ସୁଖରେ ଜୀବନ ଧାରଣ କର । (ଏଇଭଳି ବଧୂ ମଧ ବର ନିକଟରେ ପ୍ରତିଜ୍ଞା କରିବେ ) ହେ ଭଦ୍ର ବୀର ! ପରମାତ୍ମଙ୍କ କୃପାରେ ମୁଁ ଆପଣଙ୍କୁ ପାଇଛି । ଆପଣଙ୍କ ବ୍ୟତୀତ ଏଇ ଜଗତରେ ମୋର ଅନ୍ୟ ପତି ଅର୍ଥାତ୍ ସ୍ୱାମୀ ପାଳନକାରୀ ଦେବତା ଆଉ କେହି ନାହିଁ । ଆପଣଙ୍କ ବ୍ୟତୀତ ଅନ୍ୟ କାହାକୁ ପତିବୋଲି ମନେ କରିବନାହିଁ । ଯେପରି ମୋ ଛଡ଼ା ଅନ୍ୟ କୌଣସି

ସ୍ତ୍ରୀ ସହ ଆପଣ ପ୍ରେମ ରଖିବେ ନାହିଁ, ସେପରି ମୁଁ ମଧ୍ୟ ଅନ୍ୟ କୌଣସି ପୁରୁଷ ପ୍ରତି ପ୍ରେମଭାବରେ ରହିବି ନାହିଁ । ଅତଏବ ମୋ ସହିତ ଶତବର୍ଷ ପର୍ଯ୍ୟନ୍ତ ସୁଖପୂର୍ବକ ପ୍ରାଣ ଧାରଣ କରନ୍ତୁ ।

୩। ହେ ଶୁଭାନନେ ! ଯେପରି (ବୃହସ୍ପତେଃ) ଏହି ପରମାତ୍ମାଙ୍କର ସୃଷ୍ଟିରେ ତାଙ୍କର ଓ (କର୍ଣ୍ଣାମ) ଆପ୍ତ ବିଦ୍ୱାନ୍‌ମାନଙ୍କର (ପ୍ରଶିଷା) ଶିକ୍ଷାବଳରେ ସଂପନ୍ନ ହୋଇ ଯାନ୍ତି ଏବଂ ଯେପରି (ତୁଷ୍ଟା) ବିଦ୍ୟୁତ୍ ସର୍ବତ୍ର ବ୍ୟାପ୍ତଥାଏ, ସେପରି ତୁମେ ମୋର ପ୍ରସନ୍ନତା ନିମିତ୍ତ (ବାସଃ) ମୋ ନିକଟରୁ ବସନ (ଶୁଭେ) ଭୂଷଣ ଓ (କମ୍) ସୁଖ ପ୍ରାପ୍ତ ହୁଅ । ପରମାତ୍ମା ତୁମର ଓ ମୋର କାମନା (ବଧ୍ୟଦଧାତୁ) ସିଦ୍ଧ କରନ୍ତୁ । ଯେପରି (ସବିତା) ସର୍ବଜଗତ୍ସ୍ରଷ୍ଟା (ଚ) ଏବଂ (ଭଗଃ) ପୂର୍ଣ୍ଣୈଶ୍ୱର୍ଯ୍ୟଯୁକ୍ତ ପରମାତ୍ମା (ଇମାମ୍ ନାରୀମ୍) ମୋ ସ୍ତ୍ରୀ ତୁମକୁ (ପ୍ରଜୟା) ଉତ୍ତମ ସନ୍ତାନ ଦ୍ୱାରା (ପରିଦଧାମ୍) ଯୁକ୍ତ ଓ ସୁଶୋଭିତ କରନ୍ତୁ, ସେପରି ମୁଁ ତୁମକୁ (ତେନ) ଏହି ସମସ୍ତ ବସନଭୂଷଣାଦି ଦ୍ୱାରା (ସୂର୍ଯ୍ୟାମ୍ ଇବ) ସୂର୍ଯ୍ୟଙ୍କ ଭଳି ଉଜ୍ଜ୍ୱଳ ଓ କାନ୍ତିଯୁକ୍ତ ରଖିବି ।

ତଥା ହେ ପ୍ରିୟ ! ଏହିପରି ମୁଁ ମଧ୍ୟ ଆପଣଙ୍କୁ ସୂର୍ଯ୍ୟ ସଦୃଶ କାନ୍ତିମାନ୍, ଅନୁକୂଳ ଓ ପ୍ରିୟ ଆଚରଣ ଦ୍ୱାରା ଆନନ୍ଦିତ ତଥା ( ପ୍ରଜୟା ) ପୁତ୍ର, ଐଶ୍ୱର୍ଯ୍ୟ ଓ ବସନ-ଭୂଷଣାଦି ଦ୍ୱାରା ସୁଶୋଭିତ ରଖିବି ॥୩॥

* ଓ୩ମ୍ ଇନ୍ଦ୍ରାଗ୍ନୀ ଦ୍ୟାବାପୃଥିବୀ ମାତରିଶ୍ୱା ମିତ୍ରା-
ବରୁଣା ଭଗୋ ଅଶ୍ୱିନୋଭା ।
ବୃହସ୍ପତିର୍ମରୁତୋ ବ୍ରହ୍ମ ସୋମ ଇମାଂ ନାରୀଂ
ପ୍ରଜୟା ବର୍ଦ୍ଧୟନ୍ତୁ ॥୫॥
( ଅଥର୍ବ. କାଂ. ୧୪।ସୂ.୧।ମଂ.୫୧-୫୪ )

*ହେ ମୋର ସ୍ୱଜନଗଣ ! ଯେପରି ( ଇନ୍ଦ୍ରାଗ୍ନୀ ) ବିଦ୍ୟୁତ୍ ଓ ପ୍ରସିଦ୍ଧ ଅଗ୍ନି ( ଦ୍ୟାବାପୃଥିବୀ ) ସୂର୍ଯ୍ୟ ଓ ଭୂମି ( ମାତରିଶ୍ୱା ) ଅନ୍ତରିକ୍ଷସ୍ଥ ବାୟୁ ( ମିତ୍ରାବରୁଣା ) ପ୍ରାଣ ଓ ଉଦାନ ( ଭଗଃ ) ଐଶ୍ୱର୍ଯ୍ୟ ( ଅଶ୍ୱିନା ) ସଦ୍‌ବୈଦ୍ୟ ଓ ସତ୍ୟୋପଦେଶକ ( ଉଭା ) ଉଭୟେ ( ବୃହସ୍ପତିଃ ) ଶ୍ରେଷ୍ଠ ନ୍ୟାୟକାରୀ ପ୍ରଜାପାଳକ ରାଜା ( ମରୁତଃ ) ସଭ୍ୟ ମନୁଷ୍ୟ ( ବ୍ରହ୍ମ ) ସର୍ବୋପରି ପରମାତ୍ମା ଏବଂ ( ସୋମଃ ) ଚନ୍ଦ୍ରମା ଓ ସୋମଲତାଦି ଔଷଧି ସମୂହ ପ୍ରଜାମାନଙ୍କର ପାଳନ ଓ ପୋଷଣ କରନ୍ତି, ସେହିପରି ଏମାନେ ( ଇମାମ୍ ନାରୀମ୍ ) ମୋର ଏହି ସ୍ତ୍ରୀକୁ ମଧ୍ୟ ( ପ୍ରଜୟା ) ପ୍ରଜାଦ୍ୱାରା ସମୃଦ୍ଧ କରନ୍ତୁ । ସେପରି ଆପଣମାନେ ମଧ୍ୟ ( ବର୍ଦ୍ଧୟନ୍ତୁ ) ଆମ-ଦୁହିଁଙ୍କୁ ସମୃଦ୍ଧ କରନ୍ତୁ । ଯେପରି ମୁଁ ଏଇ ସ୍ତ୍ରୀକୁ ପ୍ରଜାଦି-ଦ୍ୱାରା ସର୍ବଦା ସମୃଦ୍ଧ କରୁଥିବି, ସେପରି ସ୍ତ୍ରୀ ମଧ୍ୟ ପ୍ରତିଜ୍ଞା କରିବ ଯେ, ମୁଁ ମଧ୍ୟ ମୋର ଏହି ପତିଙ୍କୁ ସର୍ବଦା ଆନନ୍ଦ, ଐଶ୍ୱର୍ଯ୍ୟ ଓ ପ୍ରଜାଦ୍ୱାରା ସମୃଦ୍ଧ କରୁଥିବି । ଯେପରି ପତି ପତ୍ନୀ ଉଭୟେ ମିଶି ପ୍ରଜା ବୃଦ୍ଧି କରନ୍ତି, ସେପରି ତୁମେ ଓ ମୁଁ ମିଳିତ ହୋଇ ଗୃହାଶ୍ରମର ଅଭ୍ୟୁଦୟ ପାଇଁ ସର୍ବଦା ଯତ୍ନଶୀଳ ରହିବା ॥୫॥

* ଅହଂ ବକ୍ଷ୍ୟାମି ମନ୍ଥି ରୂପମସ୍ୟା ବେଦଦିତ୍ପ-
ଶ୍ୟନ୍ମନସା କୁଳାୟମ୍ ।
ନ ସ୍ତେୟମଦ୍ମି ମନସୋଦମୁଚ୍ୟେ ସ୍ୱୟଂ ଶ୍ରଥ୍ନାନୋ
ବରୁଣସ୍ୟ ପାଶାନ୍ ॥୭॥

( ଅଥର୍ବ. କାଂ. ୧୪।ସୂ. ୧।ମଂ. ୫୭ )

ତତ୍ପରେ ବର ବଧୂର ହସ୍ତାଞ୍ଜଳି ଧରି ଉଠାଇବେ ଏବଂ ତାହାକୁ ସଙ୍ଗରେ ନେଇ ଉଭୟେ ଯଜ୍ଞକୁଣ୍ଡ ପ୍ରଦକ୍ଷିଣ କରିବେ । ଯେଉଁ ବ୍ୟକ୍ତି କୁଣ୍ଡର ଦକ୍ଷିଣଦିଗରେ ପ୍ରଥମେ କଳସ-ସ୍ଥାପନ କରି ତତ୍ସନ୍ନିଧାନେ ଉପବିଷ୍ଟ ଥିଲେ, ସେ ବର ଓ ବଧୂ ସହିତ ସେହି କଳସ ନେଇ ଅନୁସରଣ କରିବେ ।

---

* ହେ କଲ୍ୟାଣମୟି ! ଯେପରି ( ମନସା ) ମାନସ-ଚକ୍ଷୁରେ ( କୁଳାୟମ୍ ) କୁଳର ସମୃଦ୍ଧି ( ପଶ୍ୟନ୍ ) ଦେଖି ଦେଖି ( ଅହମ୍ ) ମୁଁ ( ଅସ୍ୟାଃ ) ତୁମର ଏହି ( ରୂପମ୍ ) ରୂପ ( ବକ୍ଷ୍ୟାମି ) ସାନନ୍ଦରେ ପ୍ରାପ୍ତହୋଇ ସେଥିରେ ପ୍ରେମର ସହିତ ବ୍ୟାପ୍ତ ହେଉଛି, ସେପରି ତୁମେ, ମୋର ବଧୂ ( ମୟି ) ମୋଠାରେ ପ୍ରେମ ସହିତ ବ୍ୟାପ୍ତ ହୋଇ ଅନୁକୂଳ ବ୍ୟବ-ହାର ( ବେଦତ୍ ) ପ୍ରାପ୍ତ ହୁଅ । ଯେପରି ମୁଁ ( ମନସଃ ) ମନମଧ୍ୟରୁ, ତୁମେ ମୋର ବଧୂ, ତୁମ ସହିତ ( ସ୍ତେୟମ୍ ) ଚୌର୍ଯ୍ୟ ( ଉଦମୁଚ୍ୟେ ) ପରିତ୍ୟାଗ କରୁଛି ଏବଂ କୌଣସି ଉତ୍ତମ ବସ୍ତୁବ ତୁମକୁ ଲୁଚାଇ ( ନାଦ୍ମି ) ଭୋଗ କରୁନାହିଁ, ( ସ୍ୱୟମ୍ ) ନିଜେ ( ଶ୍ରଥ୍ନାନଃ ବରୁଣସ୍ୟ ) ପୁରୁଷାର୍ଥ କରି-ବାରେ ଶିଥିଳ ହୋଇ ଉତ୍କୃଷ୍ଟ କାର୍ଯ୍ୟରେ ବିଘ୍ନରୂପ ଦୁର୍ବ୍ୟସନୀ ପୁରୁଷର ( ପାଶାନ୍ ) ବନ୍ଧନ ଦୂର କରୁଥାଏ, ସେପରି ( ଇତ୍ ) ଏହି ବଧୂ ମଧ୍ୟ ସେପରି କରୁ । ଏହିଭଳି ବଧୂ-ମଧ୍ୟ ଅଙ୍ଗୀକାର କରିବେ ଯେ, ମୁଁ ଆପଣଙ୍କ ସହ ଏପରି ଆଚରଣ କରିବି ॥୭॥



ଉଭୟେ ଯଜ୍ଞକୁଣ୍ଡ ପ୍ରଦକ୍ଷିଣ କରି ନିମ୍ନୋକ୍ତ ପ୍ରତିଜ୍ଞା ମନ୍ତ୍ରରେ ଉଭୟେ ପ୍ରତିଜ୍ଞା କରିବେ—

ବର-ବଧୂ— * ଓଁ ଅମୋଽହମସ୍ମି ସା ତ୍ୱଁ ସା ତ୍ୱମସ୍ୟମୋଽହମ୍ ସାମାହମସ୍ମି ଋକ୍ତ୍ୱଂ ଦ୍ୟୌରହଂ ପୃଥିବୀ ତ୍ୱଂ ତାବେବ ବିବହାବହୈ ସହ ରେତୋ ଦଧାବହୈ । ପ୍ରଜାଂ ପ୍ରଜନୟାବହୈ ପୁତ୍ରାନ୍ ବିନ୍ଦାବହୈ ବହୂନ୍ । ତେ ସନ୍ତୁ ଜରଦ-ଷ୍ଟୟଃ ସଂ ପ୍ରିୟୌ ରୋଚିଷ୍ଣୂ ସୁମନସ୍ୟମାନୌ ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଁ ଶୃଣୁୟାମ ଶରଦଃ ଶତମ୍ ॥୭॥

---

* ହେ ବଧୂ ! ଯେପରି (ଅହମ୍) ମୁଁ (ଅମଃ) ଜ୍ଞାନବାନ୍, ଜ୍ଞାନପୂର୍ବକ ତୁମର ପାଣିଗ୍ରହଣକାରୀ (ଅସ୍ମି) ହୋଇଛି, ସେହିପରି (ସା, ତ୍ୱମ୍) ତୁମେ ମଧ୍ୟ ଜ୍ଞାନପୂର୍ବକ ମୋର ପାଣି-ଗ୍ରହଣକାରିଣୀ (ଅସି) ହୋଇଛ । ଯେପରି (ଅହମ୍) ମୁଁ ସ୍ୱୟଂ ପୂର୍ଣ୍ଣ ପ୍ରେମ୍ ସହିତ ତୁମକୁ (ଅମଃ) ଗ୍ରହଣ କରୁଛି; ସେପରି (ସା) ମୋଦ୍ୱାରା ଗୃହୀତା (ତ୍ୱମ୍) ତୁମେ ମୋତେ ମଧ୍ୟ ଗ୍ରହଣ କରିଛ । (ଅହମ୍) ମୁଁ (ସାମ ଅସ୍ମି) ସାମବେଦତୁଲ୍ୟ ପ୍ରଶଂ-ସିତ, ହେ ବଧୂ ! ତୁମେ (ଋକ୍) ଋଗ୍‌ବେଦଭଳି ପ୍ରଶଂସିତା

ତତ୍ପରେ ବର ବଧୂର ପଛରେ ରହି ବଧୂର ଦକ୍ଷିଣ ଭାଗରେ ସମୀପରେ ଉତ୍ତରାଭିମୁଖ ହୋଇ ବଧୂର ଦକ୍ଷିଣାଞ୍ଜଳି ସ୍ୱୀୟ ଦକ୍ଷିଣାଞ୍ଜଳିଦ୍ୱାରା ଧାରଣକରି ଉଭୟେ ଦଣ୍ଡାୟମାନ ହେବେ ।

---

(ଭୂମ) ତୁମେ (ପୃଥିବୀ) ପୃଥିବୀଭଳି ଗର୍ଭାଦ୍ଧ ଓ ଗୃହସ୍ଥାଶ୍ରମର ବ୍ୟବହାର ଗୁଡ଼ିକର ଧାରିଣୀ ଏବଂ ମୁଁ (ଦୌଃ) ସୂର୍ଯ୍ୟଙ୍କ ଭଳି ବର୍ଷଣକାରୀ । ଏହିଭଳି (ତାବେବ) ତୁମେ ଓ ମୁଁ ଉଭୟେ (ବିବହାବହୈ) ପ୍ରସନ୍ନତାପୂର୍ବକ ବିବାହ କରୁଅଛେ । ଆମେ (ସହ) ଏକ ସଙ୍ଗେ ମିଳିତହୋଇ (ରେତଃ) ବୀର୍ଯ୍ୟ (ଦଧାବହେ) ଧାରଣ କରିବା । (ପ୍ରଜାମ୍) ଉତ୍ତମ ପ୍ରଜା (ପ୍ରଜନୟାବହୈ) ଉତ୍ପନ୍ନ କରିବା । (ବହୂନ୍) ବହୁ (ପୁତ୍ରାନ୍) ପୁତ୍ର (ବିନ୍ଦାବହୈ) ଲାଭ କରିବୁ । (ତେ) ହେଲେ ପୁତ୍ରଗଣ (ଜରଦଷ୍ଟୟଃ) ଜରାବସ୍ଥାର ଶେଷପର୍ଯ୍ୟନ୍ତ ଜୀବିତ (ସନ୍ତୁ) ରହନ୍ତୁ । ଆମେ (ସଂପ୍ରିୟୌ) ଜଣେ ଅନ୍ୟଜଣଙ୍କ ପ୍ରତି ପ୍ରସନ୍ନ, (ରୋଚିଷ୍ଣୂ) ପରସ୍ପର ପ୍ରତି ରୁଚି ଯୁକ୍ତ (ସୁମନସ୍ୟମାନୌ) ବିଚାରଶୀଳ ହୋଇ (ଶତଂ ଶରଦଃ) ଶତେ ଶରଦ୍ ଋତୁ ଅର୍ଥାତ୍ ଶତବର୍ଷ ପର୍ଯ୍ୟନ୍ତ ପରସ୍ପରକୁ ପ୍ରେମଦୃଷ୍ଟିରେ— (ପଶ୍ୟେମ) ଦେଖୁଥିବୁ । (ଶତଂ ଶରଦଃ) ଶହେବର୍ଷ ପର୍ଯ୍ୟନ୍ତ ଆନନ୍ଦର ସହିତ (ଜୀବେମ) ଜୀବନ ଧାରଣ କରିବୁ ଏବଂ (ଶତଂ ଶରଦଃ) ଶତ ବର୍ଷ ପର୍ଯ୍ୟନ୍ତ ପ୍ରିୟ ବାକ୍ୟ (ଶୃଣୁୟାମ) ଶୁଣୁଥିବୁ ।



ସେହି ବ୍ୟକ୍ତି ପୁନର୍ବାର କୁଣ୍ଡର ଦକ୍ଷିଣଦିଗରେ ଜଳପାତ୍ର ଧରି ପୂର୍ବବତ୍ ଉପବେଶନ କରିବେ ।

ତାପରେ ବଧୂର ମାତା ବା ଭ୍ରାତା, ପ୍ରଥମେ ଯେଉଁ ଧାନ ବା ଜାଉଁଳିଆ (ଖଇ) କୁଲାରେ ରଖିଥିଲେ, ତାହା ବାମହସ୍ତରେ ଧାରଣ କରି ଦକ୍ଷିଣ ହସ୍ତଦ୍ୱାରା ବଧୂର ଦକ୍ଷିଣ-ପଦ ପ୍ରସ୍ତରର ଶିଳା ଉପରେ ରଖି ଦେବେ ଏବଂ ସେତେବେଳେ ବର ନିମ୍ନୋକ୍ତ ମନ୍ତ୍ର ବୋଲିବେ—

ବର— ଓମ୍, ଆରୋହେମମଶ୍ମାନମଶ୍ମେବ ତ୍ୱଂ ସ୍ଥିରା ଭବ । ଅଭିତିଷ୍ଠ ପୃତନ୍ୟତୋଽବବାଧସ୍ୱ ପୃତନାୟତଃ ॥

(ପାର·କା°.୧।୭। ୭।୧ ॥)

ତତ୍ପରେ ବର ଓ ବଧୂ କୁଣ୍ଡ ନିକଟକୁ ଆସି ଉଭୟେ ପୂର୍ବାଭିମୁଖରେ ଦଣ୍ଡାୟମାନ ରହିବେ ଏବଂ ବଧୂ ଦକ୍ଷିଣ-ଦିଗରେ ଥାଇ ନିଜର ହସ୍ତାଞ୍ଜଳି ବରର ହସ୍ତାଞ୍ଜଳି ଉପରେ ରଖିବେ ।

ବଧୂର ମାତା ବା ଭ୍ରାତା, ଯେ ବାମହସ୍ତରେ ଖଇଥିବା କୁଲା ଧାରଣକରି ଦଣ୍ଡାୟମାନ ଅଛନ୍ତି, ତାହାକୁ ଭୂମିରେ ରଖି ବା କାହା ହାତରେ ପ୍ରଦାନ କରି, ବର ଓ ବଧୂର ମିଳିତ ହସ୍ତାଞ୍ଜଳିରେ (ଅର୍ଥାତ୍ ତଳେ ବରଙ୍କ ହସ୍ତାଞ୍ଜଳି ଓ ଉପରେ ବଧୂର ହସ୍ତାଞ୍ଜଳି) ପ୍ରଥମେ କିଛି ଘୃତ ଚିକ୍କଣ କରିବା ପରେ ପ୍ରଥମେ କୁଲାରୁ ଦକ୍ଷିଣ ହସ୍ତାଞ୍ଜଳି ଦ୍ୱାରା ଦୁଇଥର ଖଇ ନେଇ ବର ଓ ବଧୂର ମିଳିତ ହସ୍ତାଞ୍ଜଳିରେ



ପ୍ରଦାନ କରିବେ । ପରେ ସେଇ ଅଞ୍ଜଳିସ୍ଥ ଖଇ ଉପରେ କଞ୍ଚିତ୍ ଘୃତ ସିଞ୍ଚନ କରିବେ ।

ବଧୂ ବରର ହସ୍ତାଞ୍ଜଳି ସହିତ ନିଜର ହସ୍ତାଞ୍ଜଳି ସନ୍ମୁଖକୁ ଟେକିକରି ନିମ୍ନଲିଖିତ ତିନି ମନ୍ତ୍ରର ଗୋଟିଏ ଗୋଟିଏ ମନ୍ତ୍ରରେ କିଛି କିଛି ଖଇଦ୍ୱାରା ପ୍ରଜ୍ୱଳିତ ଇନ୍ଧନ ଉପରେ ତିନୋଟି ଆହୁତି ପ୍ରଦାନ କରିବେ—

ବଧୂ— **ଓ୩ମ୍ । ଆର୍ଯ୍ୟମଣଂ ଦେବଂ କନ୍ୟା ଅଗ୍ନି-ମୟକ୍ଷତ । ସ ନୋ ଅର୍ଯ୍ୟମା ଦେବଃ ପ୍ରେତୋ ମୁଞ୍ଚତୁ ମା ପତେଃ ସ୍ୱାହା ॥ ଇଦମର୍ଯ୍ୟମ୍ଣେ ଅଗ୍ନୟେ ଇଦନ୍ନ ମମ ॥୧॥**

**ଓ୩ମ୍ ଇୟଂ ନାର୍ୟୁପବ୍ରୂତେ ଲାଜାନାବପନ୍ତିକା । ଆୟୁଷ୍ମାନସ୍ତୁ ମେ ପତିରେଧନ୍ତାଂ ଜ୍ଞାତୟୋ ମମ ସ୍ୱାହା ॥ ଇଦମଗ୍ନୟେ—ଇଦନ୍ନ ମମ ॥୨॥**

**ଓ୩ମ୍ ଇମାଁଲ୍ଲାଜାନାବପାମ୍ୟଗ୍ନୌ ସମୃଦ୍ଧି କରଣଂ ତବ । ମମତୁଭ୍ୟଂ ଚ ସଂବନନଂ ତଦଗ୍ନିରନୁମ-ନ୍ୟତାମିୟଂ ସ୍ୱାହା ॥ ଇଦମଗ୍ନୟେ ଇଦନ୍ନ ମମ ॥୩॥**

( ପାର. କାଂ. ୧।୬।୨ ॥ )

ତତ୍ପରେ ବର ନିମ୍ନ ଲିଖିତ ମନ୍ତ୍ର ପାଠ କରି ସ୍ୱୀୟ ଦକ୍ଷିଣ ହସ୍ତାଞ୍ଜଳି ଦ୍ୱାରା ବଧୂର ହସ୍ତାଞ୍ଜଳି ଧାରଣ କରିବେ—

ବର— **ଓ୩ମ୍ ସରସ୍ୱତୀ ପ୍ରେଦମବ ସୁଭଗେ ବାଜିନୀ-ବତି । ଯାନ୍ତ୍ୱା ବିଶ୍ୱସ୍ୟ ଭୂତସ୍ୟ ପ୍ରଜାୟାମସ୍ୟା-**



ଗ୍ରହଃ । ଯସ୍ୟାଂ ଭୂତଁ ସମଭବଦ୍ୟସ୍ୟାଂ ବିଶ୍ୱମିଦଂ ଜଗତ୍ । ତାମଦ୍ୟ ଗାଥାଂ ଗାସ୍ୟାମି ଯା ସ୍ତ୍ରୀଣା-ମୁତ୍ତମଂ ଯଶଃ ॥ ( ପାର. କାଂ. ୧।କଂ. ୭।୨ ॥ )

ଏବଂ ନିମ୍ନଲିଖିତ ମନ୍ତ୍ରଦ୍ୱୟ ପାଠ କରି ଯଜ୍ଞକୁଣ୍ଡ ପ୍ରଦକ୍ଷିଣ କରିବେ –

ବର –ଓଁମ୍ ତୁଭ୍ୟମଗ୍ରେ ପର୍ଯବହନ୍ତ୍ସୂର୍ଯାଂ ବହ-ତୁନା ସହ । ପୁନଃ ପତିଭ୍ୟୋ ଜାୟାଂ ଦା ଅଗ୍ନେ ପ୍ରଜୟା ସହ ॥୧॥ ( ଋ. ମଂ. ୧୦।ସୂ. ୮୫।ମଂ. ୩୮ )

ଓଁମ୍ କନ୍ୟଳା ପିତୃଭ୍ୟଃ ପତିଲୋକଂ ଯତୀୟମପ ଦୀକ୍ଷାମୟଷ୍ଟ । କନ୍ୟା ଉତ ତ୍ୱୟା ବୟଂ ଧାରା ଉଦନ୍ୟା ଇବାତିଗାହେମହି ଦ୍ୱିଷଃ ॥୨॥

( ମଂ. ବ୍ରା. ୧।୨।୫୫ ॥ )

ତତ୍ପରେ ଯଜ୍ଞକୁଣ୍ଡର ପଶ୍ଚିମ ଭାଗରେ ପୂର୍ବାଭିମୁଖ ହୋଇ କନ୍ୟା ସମସ୍ତ ଉଭୟେ ( ବର ଓ ବଧୂ ) ଦଣ୍ଡାୟ-ମାନ ରହିବେ ।

ତତ୍ପରେ ପୂର୍ବୋକ୍ତ ପ୍ରକାରେ କଳସ ସଙ୍ଗେ ଯଜ୍ଞ-କୁଣ୍ଡ ପ୍ରଦକ୍ଷିଣ କରିବେ ।

ପୁନଶ୍ଚ ଦୁଇଥର ଅର୍ଥାତ୍ ସର୍ବମୋଟ ୪ ( ଚାରି ) ଥର ଏହିଭଳି ପ୍ରଦକ୍ଷିଣ କରି ଯଜ୍ଞକୁଣ୍ଡର ପଶ୍ଚିମରେ କନ୍ୟା ସମସ୍ତ ଅପେକ୍ଷା କରିବେ । ଉକ୍ତ ପ୍ରଣାଳୀରେ ( ଅର୍ଥାତ୍ କଳସ ସହିତ ) ତିନଥର କ୍ରିୟା ପୂର୍ଣ୍ଣହେଲେ ଯଜ୍ଞକୁଣ୍ଡର ପଶ୍ଚିମ ଭାଗରେ ବର ବଧୂ ପୂର୍ବାଭିମୁଖରେ ଦଣ୍ଡାୟମାନ ରହିବେ ।

ପରେ ବଧୂର ମାତା ଅଥବା ଭ୍ରାତା ସେ କୁଳ ତେରଙ୍କା କଟା ଧରି ସେଥିରେ ଥିବା ଅବଶିଷ୍ଟ ସେଉଁ ଖଇ ଅଛି, ତାହା ବଧୂର ହସ୍ତାଞ୍ଜଳିରେ ଢାଳିଦେବେ—

ବଧୂ ନିମ୍ନୋକ୍ତ ମନ୍ତ୍ର କହି କୁଣ୍ଡର ପ୍ରଜ୍ୱଳିତ ଅଗ୍ନି ଉପରେ ସେହି ଖଇର ଏକ ଆହୁତି ପ୍ରଦାନ କରିବେ—

ବଧୂ— ଓମ୍ ଭଗାୟ ସ୍ୱାହା ॥ ଇଦଂ ଭଗାୟ— ଇଦନ୍ନ ମମ॥ ( ପାର. ୧।୭।୫ ॥ )

ତତ୍ପରେ ବର ବଧୂକୁ ଦକ୍ଷିଣ ଭାଗରେ ରଖି କୁଣ୍ଡର ପଶ୍ଚିମରେ ପୂର୍ବାଭିମୁଖରେ ବସି ନିମ୍ନୋକ୍ତ ମନ୍ତ୍ରରେ ସ୍ରୁବା-ଦ୍ୱାରା ଗୋଟିଏ ଘୃତାହୁତି ଦେବେ—

ବର—ଓମ୍ । ପ୍ରଜାପତୟେ ସ୍ୱାହା ॥ ଇଦଂ ପ୍ରଜା-ପତୟେ—ଇଦନ୍ନ ମମ ॥ ( ପାର. ୧।୭।୬ ॥ )

ତତ୍ପରେ ଏକାନ୍ତରେ ଯାଇ ନିମ୍ନୋକ୍ତ ମନ୍ତ୍ରଦ୍ୱୟ ପାଠ କରି ବଧୂର କବରୀ ଉନ୍ମୁକ୍ତ କରିଦେବେ—

ବର—ଓମ୍ ପ୍ର ତ୍ୱା ମୁଞ୍ଚାମି ବରୁଣସ୍ୟ ପାଶା-ଦ୍ୟେନ ତ୍ୱାବଧ୍ନାତ୍ ସବିତା ସୁଶେବଃ । ଋତସ୍ୟ ଯୋନୌ ସୁକୃତସ୍ୟ ଲୋକେଽରିଷ୍ଟାଂ ତ୍ୱା ସହ ପତ୍ୟା ଦଧାମି ॥୧॥

ଓମ୍ ପ୍ରେତୋ ମୁଞ୍ଚାମି ନାମୁତଃ ସୁବଦ୍ଧାମମୁତ-ସ୍କରମ୍ । ଯଥେୟମିନ୍ଦ୍ର ମୀଢ୍ୱଃ ସୁପୁତ୍ରା ସୁଭଗା-ସତି ॥୨॥ ( ଋ· ମ°. ୧୦।ସୂ. ୮୫।ମ°. ୨୪, ୨୫ ॥ )



ତା'ପରେ ସପ୍ତମଣ୍ଡପରେ ଆସି (ବର ଓ ବଧୂ) ସପ୍ତପଦୀ ବିଧି ଆରମ୍ଭ କରିବେ। ଏହିକବେଳେ ବରର ଉପବସ୍ତ୍ର ସହିତ ବଧୂର ଉତ୍ତରୀୟ ବସ୍ତ୍ରରେ ଗ୍ରନ୍ଥି ବନ୍ଧନ କରିବେ। ଏହାକୁ ଯୁଗଳ କହନ୍ତି।

ବର ଓ ବଧୂ ଉଭୟେ ଆସନରୁ ଉଠିବେ। ବର ସ୍ୱୀୟ ଦକ୍ଷିଣ ହସ୍ତଦ୍ୱାରା ବଧୂର ଦକ୍ଷିଣ ହସ୍ତାଞ୍ଜଳି ଧାରଣ କରି ଯଜ୍ଞକୁଣ୍ଡର ଉତ୍ତର ଦିଗକୁ ଯିବେ ଏବଂ ସ୍ୱୀୟ ଦକ୍ଷିଣ ହସ୍ତ ବଧୂର ଦକ୍ଷିଣ ସ୍କନ୍ଧ ଉପରେ ରଖି ଉଭୟେ ପରସ୍ପର ସନ୍ନିକଟରେ ଦଣ୍ଡାୟମାନ ହେବେ।

ତାପରେ ନିମ୍ନୋକ୍ତ ମନ୍ତ୍ର ବୋଲି ବର ବଧୂକୁ ତାହାର ଦକ୍ଷିଣ ପଦ ଉଠାଇ ଚାଲିବା ପାଇଁ ଆଦେଶ କରିବେ—

**ବର—ମା ସବ୍ୟେନ ଦକ୍ଷିଣମତିକ୍ରାମ ॥**

(ଗୋ: ୨-୨-୧୩)

ତାପରେ ବର ନିମ୍ନୋକ୍ତ ମନ୍ତ୍ର ବୋଲି ବଧୂକୁ ନେଇ ଈଶାନ* କୋଣ ଦିଗକୁ ପାଦେ† ଚାଲିବେ ଓ ଚଲାଇବେ—

* ପୂର୍ବ ଓ ଉତ୍ତର କୋଣ ମଧ୍ୟରେ ଈଶାନ କୋଣ।

† ଏଠାରେ ପାଦକ୍ଷେପର ବିଧାନ ହେଉଛି ଯେ—ବଧୂ ପ୍ରଥମେ ଦକ୍ଷିଣ ପଦ ଉଠାଇ ଈଶାନ କୋଣ ଆଡ଼େ ପଦକ୍ଷେପ କରିବେ। ତାପରେ ବାମପଦ ଉଠାଇ ଦକ୍ଷିଣ ପଦର ବୃଦ୍ଧାଙ୍ଗୁଳି ଗଣ୍ଠିତଳ ସ୍ଥାନ ପର୍ଯ୍ୟନ୍ତ ରଖିବେ ଅର୍ଥାତ୍ ଦକ୍ଷିଣ ପଦର କିଛି ପଛରେ ବାମପାଦ ରଖିବେ, ଏହାକୁ ଗୋଟିଏ ପାଦକ୍ଷେପ ଗଣିବେ। ଏହିପରି ସାତଟି ମନ୍ତ୍ରରେ ସାତପାଦ ଅର୍ଥାତ୍ ଗୋଟିଏ ଗୋଟିଏ ମନ୍ତ୍ରରେ ଗୋଟିଏ ଗୋଟିଏ ପଦ ଈଶାନ କୋଣ ଆଡ଼କୁ ରଖିବେ।

ଓଁ ଇଷେ ଏକପଦୀ ଭବ ସା ମାମନୁବ୍ରତା ଭବ ବିଷ୍ଣୁସ୍ତ୍ୱାନୟତୁ ପୁତ୍ରାନ୍ ବିନ୍ଦାବହୈ ବହୂଂସ୍ତେ ସନ୍ତୁ ଜରଦଷ୍ଟୟଃ ॥୧॥

ନିମ୍ନୋକ୍ତ ମନ୍ତ୍ରରେ ଦ୍ୱିତୀୟ— ଓଁ ଊର୍ଜେ ଦ୍ୱିପଦୀ ଭବ* ॥୨॥

ନିମ୍ନୋକ୍ତ ମନ୍ତ୍ରରେ ତୃତୀୟ -- ଓଁ ରାୟସ୍ପୋଷାୟ ତ୍ରିପଦୀ ଭବ ॥୩॥

ନିମ୍ନୋକ୍ତ ମନ୍ତ୍ରରେ ଚତୁର୍ଥ—ଓଁ ମୟୋଭବାୟ ଚତୁଷ୍ପଦୀ ଭବ... ॥୪॥

ନିମ୍ନୋକ୍ତ ମନ୍ତ୍ରରେ ପଞ୍ଚମ — ଓଁ ପ୍ରଜାଭ୍ୟଃ ପଞ୍ଚପଦୀ ଭବ ॥୫॥

ନିମ୍ନୋକ୍ତ ମନ୍ତ୍ରରେ ଷଷ୍ଠ — ଓଁ ଋତୁଭ୍ୟଃ ଷଟ୍‌ପଦୀ ଭବ ॥୬॥

ନିମ୍ନୋକ୍ତ ମନ୍ତ୍ରରେ ସପ୍ତମ — ଓଁ ସଖା ସପ୍ତପଦୀ ଭବ ॥୭॥ ( ଆଶ୍ୱ. ୧।୭।୧୯ ॥ )

ଏହି ରୀତିରେ ଏହି ସାତଟି ମନ୍ତ୍ରର ସାତପାଦ ଈଶାନ କୋଣ ଆଡ଼କୁ ଚାଲି ବର-ବଧୂ ଉଭୟେ ଗ୍ରନ୍ଥିବଦ୍ଧ ଅବସ୍ଥାରେ ଆସି ଶୁଭାସନରେ ଉପବେଶନ କରିବେ ।

ତତ୍ପରେ ପୂର୍ବରୁ ଥିବା ଜଳର କଳସ ନେଇ ଯେଉଁ ବ୍ୟକ୍ତି ଯଜ୍ଞକୁଣ୍ଡର ଦକ୍ଷିଣ ଦିଗରେ ବସିଥିଲେ, ସେହି

---

* "ଭବ" ଶବ୍ଦପରେ ପ୍ରଥମ ମନ୍ତ୍ରରେ ଯାହା ପାଠ ଅଛି, ତାହା ଛଅ ମନ୍ତ୍ରରେ ଏହିଭଳି "ଭବ" ପଦପରେ ସମ୍ପୂର୍ଣ୍ଣ ବୋଲି ପଦକ୍ଷେପ କ୍ରିୟା କରିବେ ।

ବ୍ୟକ୍ତି ପୂର୍ବସ୍ଥାପିତ ଜଳର କଳସ ନେଇ ବର-ବଧୂର ନିକଟକୁ ଆସିବେ ଏବଂ ସେଥିରୁ କିଛି ଜଳ ନେଇ ବର ଓ ବଧୂର ମସ୍ତକରେ ଛିଞ୍ଚିବେ, ଏହି ସମୟରେ ନିମ୍ନୋକ୍ତ ୪ (ଚାରି) ମନ୍ତ୍ର ବର ଉଚ୍ଚାରଣ କରିବେ ।

ଓ୩ମ୍ ଆପୋ ହି ଷ୍ଠା ମୟୋଭୁବସ୍ତା ନ ଊର୍ଜେ ଦଧାତନ । ମହେରଣାୟ ଚକ୍ଷସେ ॥୧॥ ଯୋ ବଃ ଶିବତମୋ ରସସ୍ତସ୍ୟ ଭାଜୟତେହ ନଃ । ଉଶ-ତୀରିବ ମାତରଃ ॥୨॥ ତସ୍ମା ଅରଙ୍ଗମାମ ବୋ ଯସ୍ୟ କ୍ଷୟାୟ ଜିନ୍ୱଥ । ଆପୋ ଜନୟଥା ଚ ନଃ ॥୩॥

( ଋ. ମଂ. ୧୦।ସୂ. ୯।ମଂ.୧-୩ ॥ )

ଓ୩ମ୍ ଆପଃ ଶିବାଃ ଶିବତମାଃ ଶାନ୍ତାଃ ଶାନ୍ତ-ତମାସ୍ତାସ୍ତେ କୃଣ୍ୱନ୍ତୁ ଭେଷଜମ୍ ॥୪॥

( ପାର. ୧।୮।୫ ॥ )

ତତ୍ପରେ ବର-ବଧୂ ସେଠାରୁ ଉଠି ନିମ୍ନୋକ୍ତ ମନ୍ତ୍ର ପାଠ କରି ସୂର୍ଯ୍ୟ ଦର୍ଶନ କରିବେ -

ବର ବଧୂ—ଓ୩ମ୍ ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁ-କ୍ରମୁଚ୍ଚରତ୍ । ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଁ ଶୃଣୁୟାମ ଶରଦଃ ଶତଂ ପ୍ରବ୍ରବାମ

ଶରଦଃ ଶତମଦୀନାଃ ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ॥ ( ଯଜୁ. ଅ. ୩୬।ମଂ. ୨୪ ॥ )

ତତ୍ପରେ ବର ବଧୂର ଦକ୍ଷିଣ ସ୍କନ୍ଧ ଉପରେ ଦେଇ ସ୍ୱୀୟ ଦକ୍ଷିଣ ହସ୍ତଦ୍ୱାରା ବଧୂର ହୃଦୟ ସ୍ପର୍ଶକରି ନିମ୍ନୋକ୍ତ ମନ୍ତ୍ର ବୋଲିବେ—

ଓ୩ମ୍ । ମମ ବ୍ରତେ ତେ ହୃଦୟଂ ଦଧାମି ମମ ଚିତ୍ତମନୁ ଚିତ୍ତଂ ତେ ଅସ୍ତୁ । ମମ ବାଚମେକମନା ଜୁଷସ୍ୱ ପ୍ରଜାପତିଷ୍ଟ୍ୱା ନିଯୁନକ୍ତୁ ମହ୍ୟମ୍* ॥

( ପାର. କାଂ. ୧।କଂ. ୮।୮ )

---

* ହେ ବଧୂ ! ( ତେ ) ତୁମର ( ହୃଦୟମ୍ ) ଅନ୍ତଃକରଣ ଓ ଆତ୍ମାକୁ ( ମମ ) ମୋର ( ବ୍ରତେ ) କର୍ମର ଆନୁକୂଲ୍ୟରେ ( ଦଧାମି ) ଧାରଣ ଅର୍ଥାତ୍ ଗ୍ରହଣ କରୁଅଛି । ( ତେ ) ତୁମର ( ଚିତ୍ତମ୍ ) ଚିତ୍ତ ଯଦା ( ମମ ) ମୋର ( ଚିତ୍ତମ୍ ଅନୁ ) ଚିତ୍ତର ଅନୁକୂଳ ( ଅସ୍ତୁ ) ହେଉ । ତୁମେ ( ଏକମନାଃ ) ଏକାଗ୍ର ଚିତ୍ତରେ ( ମମ ) ମୋର ( ବାଚମ୍ ) ବାଣୀ (ଜୁଷସ୍ୱ) ସେବନ କରୁଥାଅ ।

ତାପରେ ଠିକ୍ ଏହି ଅବସରରେ ବଧୂ ମଧ୍ୟ ସ୍ୱୀୟ ଦକ୍ଷିଣ ହସ୍ତଦ୍ୱାରା ବରର ହୃଦୟ ସ୍ପର୍ଶକରି ଉପରଲିଖିତ ଓଁମ୍ ମମ ବ୍ରତେ... ମନ୍ତ୍ର ବୋଲିବେ* ।

ତାପରେ ବର ବଧୂର ମସ୍ତକୋପରେ ହସ୍ତ ରଖି ନିମ୍ନୋକ୍ତ ମନ୍ତ୍ର ବୋଲି କାର୍ଯ୍ୟୋପଲକ୍ଷରେ ସମାଗତ ବ୍ୟକ୍ତିବୃନ୍ଦଙ୍କ ପ୍ରତି ଦୃଷ୍ଟିପାତ କରିବେ—

**ବର—ସୁମଙ୍ଗଲୀରିୟଂ ବଧୂରିମାଂ ସମେତ ପଶ୍ୟତ ।**
**ସୌଭାଗ୍ୟମସୈ୍ୟ ଦତ୍ତ୍ୱାୟାଥାସ୍ତଂ ବି ପରେତନ ॥**
( ଋ. ମଂ. ୧୦।ସୂ. ୮୫।ମଂ. ୩୩ ॥ ପାର. ୧।୮।୯ ॥

---

( ପ୍ରଜାପତିଃ ) ପ୍ରଜାପାଳକ ପରମାତ୍ମା ( ତ୍ୱା ) ତୁମକୁ ( ମହ୍ୟମ୍ ) ମୋ ପାଇଁ ( ନିଯୁନକ୍ତୁ ) ନିଯୁକ୍ତ କରନ୍ତୁ ॥୧॥

* ହେ ପ୍ରିୟ ବୀର ସ୍ୱାମିନ୍ ! ତୁମର ହୃଦୟ, ଆତ୍ମା ଓ ଅନ୍ତଃକରଣକୁ ମୋର ପ୍ରିୟ ଆଚରିତ କର୍ମର ଆନୁକୂଲ୍ୟରେ ଧାରଣ କରୁଅଛି । ଆପଣଙ୍କର ଚିତ୍ତ ସର୍ବଦା ମୋ ଚିତ୍ତର ଅନୁକୂଳ ଥାଉ । ଆପଣ ଏକାଗ୍ର ହୋଇ ମୋର ବାଣୀର ( ଯାହା ମୁଁ ଆପଣଙ୍କୁ କହିବି ତାହାର ) ସର୍ବଦା ସେବନ କରୁଥାଆନ୍ତୁ । ଆଜଠାରୁ ପ୍ରଜାପତି ପରମାତ୍ମା ଆପଣଙ୍କୁ ମୋର ଅଧୀନ କରିଛନ୍ତି । ଏହି ଭାବରେ ମୋତେ ଆପଣଙ୍କର ଅଧୀନ କରିଛନ୍ତି ଅର୍ଥାତ୍ ଉଭୟେ ଏହି ପ୍ରତିଜ୍ଞାର ଅନୁକୂଳ ଆଚରଣ କରିବା— ସର୍ବଦା ଆନନ୍ଦିତ, କୀର୍ତ୍ତିମାନ୍, ପତିବ୍ରତା ଓ ସ୍ତ୍ରୀ ବ୍ରତ ହୋଇ ସମସ୍ତ ପ୍ରକାର ବ୍ୟଭିଚାର ଓ ଅପ୍ରିୟ ଭାଷଣାଦି ଦୋଷ ପରିତ୍ୟାଗ ପୂର୍ବକ ପରସ୍ପର ପ୍ରୀତି ପୂର୍ବକ ଜୀବନ ଧାରଣ କରିବା ।

ଏବଂ ସେତେବେଳେ ସମସ୍ତେ ନିମ୍ନୋକ୍ତ ବାକ୍ୟରେ ଆଶୀର୍ବାଦ ପ୍ରଦାନ କରିବେ ।

**ଓମ୍ ସୌଭାଗ୍ୟମସ୍ତୁ । ଓମ୍ ଶୁଭଂ ଭବତୁ ॥**

ତାପରେ ବଧୂ-ବର ଯଜ୍ଞକୁଣ୍ଡ ସମୀପରେ ପୂର୍ବବତ୍ ଉପବେଶନ କରି ପୁନରପି ୩୨ ପୃଷ୍ଠାରେ ଲିଖିତ ରୀତିରେ ଉଭୟେ **ଓମ୍ ଯଦସ୍ୟ କର୍ମଣୋ୦** ଏହି ମନ୍ତ୍ରରେ **ସ୍ୱିଷ୍ଟକୃତ୍ ହୋମାହୁତି** ଅର୍ଥାତ୍ ଏକ ଆଜ୍ୟାହୁତି ଏବଂ ୩୨ ପୃଷ୍ଠାରେ ଲିଖିତ ବିଧିରେ **ଓମ୍ । ଭୂରଗ୍ନୟେ ସ୍ୱାହା ।** ଇତ୍ୟାଦି ଚାରି ମନ୍ତ୍ରରେ ଗୋଟିଏ ଗୋଟିଏ ମନ୍ତ୍ର-ଦ୍ୱାରା ଗୋଟିଏ ଗୋଟିଏ ଆହୁତି କରି ମୋଟ ୪ (ଚାରି) ଆଜ୍ୟାହୁତି ଦେବେ । ଏହି ପଦ୍ଧତିରେ ବିବାହ ବିଧି ପୂର୍ଣ୍ଣ-ହେଲେ ଉଭୟେ ବିଶ୍ରାମ କରିବେ । ଏହାପରେ କିଛି ସମୟ ବିଶ୍ରାମ କରି ବିବାହର ଉତ୍ତର ବିଧି ଆରମ୍ଭ କରିବେ ।

## ଉତ୍ତର ବିଧି

**ବଧୂ ଗୃହର ଈଶାନ କୋଣରେ ବିଶେଷ ଘରରେ ଗୋଟିଏ କକ୍ଷ ପୂର୍ବରୁ ପ୍ରସ୍ତୁତ କରି ସେଥିରେ ଯାଇ ଉତ୍ତର**

ବିଧିର ଏହି ସମସ୍ତ କାର୍ଯ୍ୟ କରିବାକୁ ହେବ । ସୂର୍ଯ୍ୟାସ୍ତ ପରେ ଆକାଶର ନକ୍ଷତ୍ର ଦୃଷ୍ଟିହେଲେ ବଧୂ-ବର ଯଜ୍ଞକୁଣ୍ଡର ପଶ୍ଚିମ ଭାଗରେ ପୂର୍ବାଭିମୁଖରେ ଉପବେଶନ କରିବେ ଏବଂ ୨୮ ପୃଷ୍ଠାରେ ଲିଖିତ ବିଧିରେ **ଓ୩ମ୍ । ଭୂର୍ଭୁବଃ ସ୍ୱର୍ଦ୍ୟୌ** ।। ଏହି ମନ୍ତ୍ରରେ ଅଗ୍ନ୍ୟାଧାନ କରିବେ ।

ଯଦି ସଭାମଣ୍ଡପ ପ୍ରଥମରୁ ଈଶାନ କୋଣରେ ଥିବ ଏବଂ ପ୍ରଥମରେ ହିଁ ଅଗ୍ନ୍ୟାଧାନ ହୋଇଥିବ ତେବେ ପୁନର୍ବାର ଅଗ୍ନ୍ୟାଧାନ କରିବେ ନାହିଁ ।

୨୮-୨୯ ପୃଷ୍ଠାରେ ଲିଖିତ ବିଧିରେ **ଓ୩ମ୍ ଅୟନ୍ତ ଇଧ୍ମ** ଇତ୍ୟାଦି ୪ (ଚାରି) ମନ୍ତ୍ରରେ ସମିଧାଦାନ କରି ଅଗ୍ନି ପ୍ରଦୀପ୍ତ ହେଲେ ୩୧ ପୃଷ୍ଠାରେ ଲିଖିତ ବିଧିରେ **ଓ୩ମ୍ । ଅଗ୍ନୟେ ସ୍ୱାହା** ଇତ୍ୟାଦି ୪ (ଚାରି) ମନ୍ତ୍ରରେ ଆଘାରାବାଜ୍ୟଭାଗାହୁତି ୪ (ଚାରି) ଓ ୩୨ ପୃଷ୍ଠାରେ ଲିଖିତ ବିଧିରେ **ଓ୩ମ୍ ଭୂରଗ୍ନୟେ ସ୍ୱାହା** ।। ଇତ୍ୟାଦି ୪ (ଚାରି) ମନ୍ତ୍ରରେ ୪ (ଚାରି) ବ୍ୟାହୃତି ଆହୁତି - ଏହିପରି ସର୍ବସମେତ ୮ (ଆଠ) ଆଜ୍ୟାହୁତି ଦେବେ ।

ତତ୍ପରେ ନିମ୍ନଲିଖିତ ମନ୍ତ୍ରରେ ପ୍ରଧାନ ହୋମ କରିବେ । ଏଠାରେ ଛଅଟି ମନ୍ତ୍ର ଗୋଟି ଗୋଟି କରି ବୋଲି ଛଅଟି ଆଜ୍ୟାହୁତି ପ୍ରଦାନ କରିବେ—



ଓଁ ଲେଖାସନ୍ଧିଷୁ ପକ୍ଷ୍ମସ୍ୱାବର୍ତ୍ତେଷୁ ଚ ଯାନି ତେ
ତାନି ପୂର୍ଣ୍ଣାହୁତ୍ୟା ସର୍ବାଣି ଶମୟାମ୍ୟହଂ ସ୍ୱାହା ॥
ଇଦଂ କନ୍ୟାୟୈ ଇଦଂ ନ ମମ ॥୧॥

ଓଁ କେଶେଷୁ ଯଚ୍ଚ ପାପକମୀକ୍ଷିତେ ରୁଦିତେ
ଚ ଯତ୍ । ତାନିଂ ॥୨॥

ଓଁ ଶୀଲେଷୁ ଯଚ୍ଚ ପାପକଂ ଭାଷିତେ ହସିତେ
ଚ ଯତ୍ । ତାନିଂ ॥୩॥

ଓଁ ଆରୋକେଷୁ ଚ ଦନ୍ତେଷୁ ହସ୍ତୟୋଃ
ପାଦୟୋଶ୍ଚ ଯତ୍ । ତାନିଂ ॥୪॥

ଓଁ ଊର୍ବୋରୁପସ୍ଥେ ଜଙ୍ଘୟୋଃ ସନ୍ଧାନେଷୁ
ଚ ଯାନି ତେ । ତାନି··· ॥୫॥

ଓଁ ଯାନି କାନି ଚ ଘୋରାଣି ସର୍ବାଙ୍ଗେଷୁ
ତବାଭବନ୍ । ପୂର୍ଣ୍ଣାହୁତିଭିରାଜ୍ୟସ୍ୟ ସର୍ବାଣି ତାନ୍ୟ-
ଶୀଶମଂ ସ୍ୱାହା॥ ଇଦଂ କନ୍ୟାୟୈ-ଇଦନ୍ନ ମମ ॥୬॥
( ମଂ. ବ୍ରା०. ୧।୩।୧ ୬ ॥ ଗୋଭି. ୨।୩।୫ )

ତାପରେ ୩୨ ପୃଷ୍ଠାରେ ଲିଖିତ ବିଧିରେ **ଓଁ**



ଭୂରଗ୍ନୟେ ସ୍ୱାହା ॥ ଇତ୍ୟାଦି ୪ (ଗୃହ) ବ୍ୟାହୃତି ମନ୍ତ୍ରରେ ୪ (ଘୃତ) ଆଜ୍ୟାହୁତି ଦାନ କରିବେ ।

ତତ୍ପରେ ବଧୂ ବର ସେଠାରୁ ଉଠିଆସି ସଭାମଣ୍ଡପର ବାହାରେ ଉତ୍ତର ଦିଗକୁ ଯିବେ । ବର, ବଧୂକୁ ନିମ୍ନୋକ୍ତ ମନ୍ତ୍ର ବୋଲି ଧ୍ରୁବତାରା ଦେଖାଇଦେବେ ※ —

ବର—ଧ୍ରୁବଂ ପଶ୍ୟ

ଏବଂ ବଧୂ ବରକୁ କହିବେ—

ବଧୂ—ପଶ୍ୟାମି

ମୁଁ ଧ୍ରୁବତାରା ଦେଖୁଛି— ଏହା କହି ବଧୂ ନିମ୍ନୋକ୍ତ ମନ୍ତ୍ର ବୋଲିବେ—

ବଧୂ—**ଓଁମ୍ । ଧ୍ରୁବମସି ଧ୍ରୁବାହଂ ପତିକୁଲେ ଭୂୟାସମ୍ ( ଅମୁଷ୍ୟ ଅସୌ ) †**

( ଗୋଭି. ଗୃ. ପ୍ର. ୨।ଖଂ. ୩।ସୂ. ୮ )

---

※ ହେ ବଧୂ ! ( ବା ହେ ବର ) ଯେପରି ଏହି ଧ୍ରୁବ ଦୃଢ଼ ଓ ସ୍ଥିର; ସେହିପରି ତୁମେ ଓ ମୁଁ ଜଣେ ଅନ୍ୟଜଣଙ୍କ ପ୍ରତି ପ୍ରିୟ ଆଚରଣରେ ଦୃଢ଼ ଓ ସ୍ଥିର ରହିବୁ ।

† ( ଅମୁଷ୍ୟ ) ଏହି ପଦସ୍ଥାନରେ ପତି ନାମ ଷଷ୍ଠୀ ବିଭକ୍ତ୍ୟନ୍ତ କରି କହିବେ, ଯେପରି—"ଶିବଶର୍ମା" ପତିଙ୍କ ନାମ ହେଲେ

ତାପରେ ବର ନିମ୍ନୋକ୍ତ ମନ୍ତ୍ର ବୋଲି ବଧୂକୁ ଅରୁନ୍ଧତୀ ତାରା ଦର୍ଶନ କରାଇବେ—

ବର—ଅରୁନ୍ଧତୀଂ ପଶ୍ୟ ॥

ବଧୂ—ପଶ୍ୟାମି । ଓଁ ଅରୁନ୍ଧତ୍ୟସି ରୁଦ୍ଧାହମସ୍ମି (ଅମୁଷ୍ୟ ଅସୌ) ※ (ଗୋଭି. ୨।୩।୧୦ ।)

---

"ଶିବଶର୍ମଣଃ" ଏହିପରି ଏବଂ (ଅସୌ) ଏହି ପଦ ସ୍ଥାନରେ ବଧୂ ନିଜ ନାମପ୍ରଥମା ବିଭକ୍ତ୍ୟନ୍ତ କରି କହିବେ, ଯେପରି "ଭୂୟାସଂ ଶିବଶର୍ମଣସ୍ତେ ସୌଭାଗ୍ୟଦାହମ୍" ଏହିପରି ଦୁଇଟି ପଦଯୁକ୍ତ କରି କହିବେ— ହେ ସ୍ୱାମିନ୍ ! ସୌଭାଗ୍ୟଦା (ଅହମ୍) ମୁଁ (ଅମୁଷ୍ୟ) ଆପଣ ଶିବଶର୍ମା, ଆପଣଙ୍କର ଅର୍ଦ୍ଧାଙ୍ଗିନୀ (ପତିକୁଳେ) ଆପଣଙ୍କ କୁଳରେ (ଧ୍ରୁବ) ମୁଁ ଧ୍ରୁବ ସ୍ୱରୂପ । ଯେପରି ଆପଣ (ଧ୍ରୁବମ୍) ଦୃଢନିଶ୍ଚିତ ରୂପରେ ମୋର ସ୍ଥିର ପତି (ଅସି) ଅଟନ୍ତି, ଯେହିପରି ମୁଁ ମଧ୍ୟ ଆପଣଙ୍କର ସ୍ଥିର ଦୃଢ଼ା ପତ୍ନୀ (ଭୂୟାସମ୍) ହେଲି ।

※ ଆପଣ ଅରୁନ୍ଧତୀ ନକ୍ଷତ୍ର ତୁଲ୍ୟ । ମୁଁ ମଧ୍ୟ ଆବଦ୍ଧ ହୋଇ-ଅଛି । ମୁଁ ଆପଣଙ୍କର ।

ତାପରେ ବର ବଧୂଆଡକୁ ଚାହିଁ ବଧୂର ମସ୍ତକରେ ହସ୍ତ ରଖି ନିମ୍ନୋକ୍ତ ଦୁଇଟି ମନ୍ତ୍ର ବୋଲିବେ—

ବର—ଓମ୍ ଧ୍ରୁବା ଦ୍ୟୌର୍ଧ୍ରୁବା ପୃଥିବୀ ଧ୍ରୁବଂ ବିଶ୍ୱମିଦଂ ଜଗତ୍ । ଧ୍ରୁବାସଃ ପର୍ବତା ଇମେ ଧ୍ରୁବା ସ୍ତ୍ରୀ ପତିକୁଲେ ଇୟମ୍ * (ମ· ବ୍ରା· ୧।୬।୭)

ଓମ୍ ଧ୍ରୁବମସି ଧ୍ରୁବନ୍ତ୍ୱା ପଶ୍ୟାମି ଧ୍ରୁବୈଧି ପୋଷ୍ୟେ ମୟି । ମହ୍ୟଂ ତ୍ୱାଦାଦ୍ ବୃହସ୍ପତିର୍ମୟା ପତ୍ୟା ପ୍ରଜାବତୀ ସଂଜୀବ ଶରଦଃ ଶତମ୍ * ॥୨॥
(ପାର. କା°. ୧।୮।୧୯ ॥)

---

* ହେ ବରାନନେ ! (ଦ୍ୟୌଃ) ଯେପରି ସୂର୍ଯ୍ୟର କାନ୍ତି ବା ବିଦ୍ୟୁତ୍ (ଧ୍ରୁବା) ସୂର୍ଯ୍ୟାଲୋକରେ ବା ପୃଥିବୀରେ ନିଶ୍ଚଳ, ଯେପରି (ପୃଥିବୀ) ଭୂମି ନିଜ ସ୍ୱରୂପରେ (ଧ୍ରୁବା) ସ୍ଥିର, ଯେପରି (ଇଦମ୍) ଏହି (ବିଶ୍ୱମ୍) ସମସ୍ତ (ଜଗତ୍) ସଂସାର ପ୍ରବାହ ସ୍ୱରୂପରେ (ଧ୍ରୁବମ୍) ସ୍ଥିର, ଯେପରି (ଇମେ) ଏହି ପ୍ରତ୍ୟକ୍ଷ (ପର୍ବତାଃ) ପର୍ବତମାନେ (ଧ୍ରୁବାସଃ) ଆପଣା ସ୍ଥିତିରେ ସ୍ଥିର, ସେପରି (ଇୟମ୍) ଏହି ତୁମେ ମୋର (ସ୍ତ୍ରୀ) ପତ୍ନୀ (ପତିକୁଲେ) ମୋ କୁଳରେ (ଧ୍ରୁବା) ସର୍ବଦା ସ୍ଥିର ହୁଅ ।

ତତ୍ପରେ ବଧୂ ଓ ବର ଉଭୟେ ଯଜ୍ଞକୁଣ୍ଡର ପଶ୍ଚିମ-ଭାଗରେ ପୂର୍ବାଭିମୁଖରେ ଉପବେଶନ କରିବେ ଏବଂ ୨୬ ପୃଷ୍ଠାରେ ଲିଖିତ ବିଧିରେ **ଓ୩ମ୍ । ଅମୃତୋପସ୍ତରଣମସି ସ୍ୱାହା ।।** ଇତ୍ୟାଦି ତିନ ମନ୍ତ୍ରରେ ଗୋଟିଏ ଗୋଟିଏ କରି

---

ଂ ହେ ସ୍ୱାମିନ୍ ! ଯେପରି ଆପଣ ମୋ ସମୀପରେ (ଧ୍ରୁବମ୍) ଦୃଢ ସଂକଳ୍ପ ନେଇ ସ୍ଥିର ରହିଛନ୍ତି କିମ୍ବା ଯେପରି ମୁଁ ( ତ୍ୱା ) ଆପଣଙ୍କୁ ( ଧ୍ରୁବମ ) ସ୍ଥିର ଓ ଦୃଢ ( ପଶ୍ୟାମି ) ଦେଖୁଅଛି, ସେହିପରି ଚିରଦିନ ପାଇଁ ଆପଣ ମୋ ସଙ୍ଗେ ଦୃଢ ରହିଥାଆନ୍ତୁ ଯେପରି ମୋ ମନର ଆନୁକୂଲ୍ୟରେ ( ତ୍ୱା ) ଆପଣଙ୍କୁ ( ବୃହସ୍ପତିଃ ) ପରମାତ୍ମା ( ଅଦାତ୍ ) ସମର୍ପଣ କରିଅଛନ୍ତି, ସେପରି ପତ୍ନୀରୂପ ମୋ ସହିତ ଉତ୍ତମ ପ୍ରଜାଯୁକ୍ତ ହୋଇ ( ଶତଂ ଶରଦଃ ) ଶତବର୍ଷ ପର୍ଯ୍ୟନ୍ତ ( ସମ୍ ଜୀବ ) ଜୀବନ ଧାରଣ କରନ୍ତୁ । ( ଏହିପରି )— ହେ ବରାନନେ ପତ୍ନି ! ତୁମକୁ ( ପୋଷ୍ୟେ ) ଧାରଣ ଓ ପାଳନ କରିବାର ଯୋଗ୍ୟ ( ମୟି ) ମୋ ନିକଟରେ ତୁମେ (ଧ୍ରୁବା) ସ୍ଥିରଭାବେ ( ଏଧି ) ଥାଅ । ( ମହ୍ୟମ୍ ) ମୋତେ ମୋ ମନର ଆନୁକୂଲ୍ୟରେ ପରମାତ୍ମା ତୁମକୁ ସମର୍ପଣ କରିଅଛନ୍ତି । ତୁମର ( ମୟା ପତ୍ୟା ) ମୁଁ ପତି, ମୋ ସହିତ (ପ୍ରଜାବତୀ) ବହୁ ଉତ୍ତମ ସନ୍ତାନର ଜନନୀ ହୋଇ ଶତବର୍ଷ ପର୍ଯ୍ୟନ୍ତ ସାନନ୍ଦରେ ଜୀବନ ଧାରଣ କର । ଏହିପରି ବର ଓ ବଧୂ ଉଭୟେ ଦୃଢ ପ୍ରତିଜ୍ଞା କରିବେ, ଯେପରିକି ଉଭୟଙ୍କ ମଧ୍ୟରେ କେହି ବିପରୀତ ବା ବିରୁଦ୍ଧାଚରଣ ନକରନ୍ତି ।

୩ ଟି ଆଚମନ କରିବେ । ପରେ ୨୦ ପୃଷ୍ଠାରେ ଲିଖିତ ସମିଧାଦ୍ୱାରା ଯଜ୍ଞକୁଣ୍ଡର ଅଗ୍ନିକୁ ପ୍ରଦୀପ୍ତ କରି ୨୧ ପୃଷ୍ଠାରେ ଲିଖିତ ଘୃତ ଓ ସ୍ଥାଳୀପାକ ଅର୍ଥାତ୍ ଅନ୍ନ ସଙ୍ଗେ ସଙ୍ଗେ ପ୍ରସ୍ତୁତ କରିବେ ।

୨୮-୨୯ ପୃଷ୍ଠାରେ ଲିଖିତ ବିଧିରେ **ଓ୩ମ୍ । ଅୟନ୍ତ ଇଧ୍ମଂ** ଇତ୍ୟାଦି ଚାରି ମନ୍ତ୍ରରେ ଉଭୟେ ବର ଓ ବଧୂ ସମିଧା ହୋମକରି ପରେ ୩୧-୩୨ ପୃଷ୍ଠାରେ ଲିଖିତ ବିଧିରେ ଅ.ଘାରବାଜ୍ୟଭାଗାହୁତି ୪ (ଚାରି) ଓ ବ୍ୟାହୃତି ଆହୁତି ୪ (ଚାରି), ଉଭୟ ମିଶାଇ ମୋଟରେ ୮ (ଆଠଟି) ଆଜ୍ୟାହୁତି ଦେବେ ।

ତାପରେ ପୂର୍ବରୁ ପ୍ରସ୍ତୁତ ଥିବା ସିଦ୍ଧାନ୍ନ ଗୋଟିଏ ପାତ୍ରରେ ବାହାର କରି ତଦୁପରି ସ୍ରୁବାଦ୍ୱାରା ଘୃତସିଞ୍ଚନ କରିବେ । ଘୃତ ଓ ଅନ୍ନକୁ ଉତ୍ତମରୂପେ ମିଶ୍ରିତ କରି ଦକ୍ଷିଣ ହସ୍ତଦ୍ୱାରା କିଛି କିଛି ଅନ୍ନ ନେଇ ଉଭୟେ ନିମ୍ନୋକ୍ତ ମନ୍ତ୍ରଗୁଡ଼ିକରେ ପ୍ରତ୍ୟେକ ମନ୍ତ୍ରରେ ଗୋଟିଏ ଗୋଟିଏ କରି ୪ (ଚାରି) ଥର ସ୍ଥାଳୀପାକ ଅର୍ଥାତ୍ ଅନ୍ନର ଆହୁତି ଦେବେ—

ବଧୂ-ବର—**ଓ୩ମ୍ । ଅଗ୍ନୟେ ସ୍ୱାହା ॥ ଇଦମଗ୍ନୟେ ଇଦନ୍ନ ମମ ।**

**ଓ୩ମ୍ । ପ୍ରଜାପତୟେ ସ୍ୱାହା ॥ ଇଦଂ ପ୍ରଜାପତୟେ ଇଦନ୍ନ ମମ ॥**

ଓଁମ୍ । ବିଶ୍ୱେଭ୍ୟୋ ଦେବେଭ୍ୟଃ ସ୍ୱାହା ॥ ଇଦଂ ବିଶ୍ୱେଭ୍ୟୋ ଦେବେଭ୍ୟଃ—ଇଦନ୍ନ ମମ ॥
ଓଁମ୍ । ଅନୁମତୟେ ସ୍ୱାହା ॥ ଇଦମନୁମତୟେ—ଇଦନ୍ନ ମମ ॥ ( ଗୋଭି. ୨।୩।୧୭-୨୧ ॥ )

ତତ୍ପରେ ୩୨ ପୃଷ୍ଠାରେ ଲିଖିତ ବିଧିରେ **ଓଁମ୍ । ଯଦସ୍ୟ କର୍ମଣୋ°** ଏହି ମନ୍ତ୍ରରେ ଗୋଟିଏ ସ୍ୱିଷ୍ଟକୃତ ଆହୁତି ଦେବେ ।

ତାପରେ ୩୨ ପୃଷ୍ଠାରେ ଲିଖିତ ବିଧିରେ ବ୍ୟାହୃତି ଆହୁତି ୪ ( ଚାରି ) ଏବଂ ୩୪-୩୬ ପୃଷ୍ଠାରେ ଲିଖିତ ବିଧିରେ ଅଷ୍ଟାଜ୍ୟାହୁତି ୮ ( ଆଠ ), ଉଭୟେ ମିଶି ୧୨ ( ବାର ) ଆଜ୍ୟାହୁତି ଦେବେ ।

ତାପରେ ବର ଅବଶିଷ୍ଟ ଅନ୍ନ ଏକ ପାତ୍ରରେ ବାହାର କରି ତା ଉପରେ ଘୃତ ସିଞ୍ଚନ କରିବେ ଏବଂ ସେଥିରେ ଦକ୍ଷିଣ ହସ୍ତ ରଖି ନିମ୍ନୋକ୍ତ ତିନି ମନ୍ତ୍ର ମନେ ମନେ ଜପ କରି ସେହି ଅନ୍ନ ସ୍ୱୟଂ କିଞ୍ଚିତ୍ ଭକ୍ଷଣ କରିବେ—

*ଓଁମ୍ ଅନ୍ନପାଶେନ **ମଣିନା** ପ୍ରାଣସୂତ୍ରେଣ ପୃଶ୍ନିନା । ବଧ୍ନାମି ସତ୍ୟଗ୍ରନ୍ଥିନା **ମନଶ୍ଚ** ହୃଦୟଂ ଚ ତେ ॥୧॥

---

* ହେ ବଧୂ ବା ବର ! ଯେପରି ଅନ୍ନସହିତ ପ୍ରାଣ, ପ୍ରାଣ ସହିତ ଅନ୍ନ ଏବଂ ଅନ୍ନ ଓ ପ୍ରାଣ ସହିତ ଅନ୍ତରିକ୍ଷର ସମ୍ବନ୍ଧ ଅଛି, ସେହିପରି ( ତେ ) ତୁମର ( ହୃଦୟମ୍ ) ହୃଦୟ ( ଚ ) ଏବଂ ( ମନଃ ) ମନ ( ଚ ) ଏବଂ ଶରୀରକୁ ( ସତ୍ୟଗ୍ରନ୍ଥିନା ) ସତ୍ୟତାର ଗ୍ରନ୍ଥିଦ୍ୱାରା ( ବଧ୍ନାମି ) ବନ୍ଧନ କରୁଛି ॥୧॥

* ଓଁମ୍ ଯଦେତଦ୍‌ଧୃଦୟଂ ତବ ତଦସ୍ତୁ ହୃଦୟଂ ମମ । ଯଦିଦଁ ହୃଦୟଂ ମମ ତଦସ୍ତୁ ହୃଦୟଂ ତବ ॥୨॥

† ଓଁମ୍ ଅନ୍ନଂ ପ୍ରାଣସ୍ୟ ଷଡ଼୍‌ବିଁ ଶସ୍ତେନ ବଧ୍ନାମି ତା ଅସୌ ॥୩॥ ( ସଂ. ବ୍ରା· ୧।୩।୮–୧୦ )

ଯେଉଁ ଅନ୍ନ ଅବଶିଷ୍ଟ ରହିବ, ତାହା ବଧୂକୁ ଭକ୍ଷଣ କରିବାକୁ ଦେବେ । ବଧୂର ଭୋଜନ ସମାପ୍ତ ହେଲେ ବର ଓ ବଧୂ ସଭାମଣ୍ଡପରେ ସଜାହୋଇଥିବା ଶୁଭାସନରେ ଯଥାବିଧି ପୂର୍ବାଭିମୁଖରେ ଉପବେଶନ କରି ୩୭–୩୮ ପୃଷ୍ଠାରେ ଲିଖିତ ବିଧିରେ ସାମବେଦୋକ୍ତ ମହାବାମଦେବ୍ୟଗାନ କରିବେ ।

---

* ହେ ବର, ହେ ସ୍ୱାମିନ୍ ! ( ବା ହେ ପତ୍ନି ) ! (ଯଦେତତ୍) ଏହି ଯାହା ( ତବ ) ତୁମର ( ହୃଦୟମ୍ ) ଆତ୍ମା ବା ଅନ୍ତଃକରଣ, ( ତତ୍ ) ତାହା ( ମମ ) ମୋର ( ହୃଦୟମ୍ ) ଆତ୍ମା ଓ ଅନ୍ତଃକରଣ ତୁଲ୍ୟ ପ୍ରିୟ ( ଅସ୍ତୁ ) ହେଉ ଏବଂ ( ମମ ) ମୋର ( ଯଦିଦମ୍ ) ଏହି ଯେ ( ହୃଦୟମ୍ ) ଆତ୍ମା, ପ୍ରାଣ ଓ ମନ, ( ତତ୍ ) ତାହା ( ତବ ତୁମର ( ହୃଦୟମ୍ ) ଆତ୍ମାଦି ତୁଲ୍ୟ ପ୍ରିୟ ( ଅସ୍ତୁ ) ହୋଇରହୁ ॥୨॥

† ହେ ଯଶୋଦେ ! ( ପ୍ରାଣସ୍ୟ ) ପ୍ରାଣର ପୋଷଣ କର୍ତ୍ତା ( ଷଡ଼୍‌ବିଂଶଃ ) ୧୬ ଷଡ଼୍‌ବିଂଶ ତତ୍ତ୍ୱପୂର୍ଣ୍ଣ ( ଅନ୍ନମ୍ ) ଯେଉଁ ଅନ୍ନ, ( ତେନ ) ତଦ୍ୱାରା ( ତ୍ୱା ) ତୁମକୁ ( ବଧ୍ନାମି ) ଦୃଢ ପ୍ରୀତିର ସହିତ ବନ୍ଧନ କରୁଅଛି ॥୩॥

ତାପରେ ୨—୧୭ ପୃଷ୍ଠାରେ ଲିଖିତ ବିଧିରେ ଈଶ୍ୱରସ୍ତୁତି ପ୍ରାର୍ଥନୋପାସନା, ସ୍ୱସ୍ତି ବାଚନ ଓ ଶାନ୍ତିପ୍ରକରଣ ସମାପ୍ତ କରି କ୍ଷାର ଓ ଲବଣରହିତ ମିଷ୍ଟଦୁଗ୍ଧ ଘୃତାଦି ସହିତ ଭୋଜନ କରିବେ ।

ତାପରେ ୮୧ ପୃଷ୍ଠାରେ ଲିଖିତ ବିଧିରେ ପୁରୋହିତାଦି ସଧର୍ମୀ ଓ କାର୍ଯ୍ୟୋପଲକ୍ଷେ ସମବେତ ବ୍ୟକ୍ତିଗଣଙ୍କୁ ସମ୍ମାନାର୍ଥେ ଉତ୍ତମରୂପ ଭୋଜନ କରାଇବେ । ତାପରେ ପୁରୁଷମାନଙ୍କୁ ପୁରୁଷ ଓ ସ୍ତ୍ରୀ ମାନଙ୍କୁ ସ୍ତ୍ରୀ ଆଦର ସମ୍ମାନ କରି ବିଦାୟ କରିବେ ।

## ଉତ୍ତରବିଧି ସମାପ୍ତ

ତତ୍ପରେ ରାତ୍ରି ୧୦ ଘଣ୍ଟା ଅତୀତ ହେଲେ ବର ଓ ବଧୂ ପୃଥକ୍ ପୃଥକ୍ ସ୍ଥାନରେ ଭୂମିରେ ଶଯ୍ୟା ରଚନା କରି ତିନି ରାତ୍ରି ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ବ୍ରତ ରକ୍ଷାକରି ଶୟନ କରିବେ ଏବଂ ଏପରି ଆହାର କରିବେ, ଯହାଫଳରେ ସ୍ୱପ୍ନରେବି ବୀର୍ଯ୍ୟପାତ ହେବନାହିଁ । ତାପରେ ଚତୁର୍ଥ ଦିନରେ ବିଧିପୂର୍ବକ ଗର୍ଭାଧାନ ସଂସ୍କାର କରିବେ ।

ଯଦି ଚତୁର୍ଥ ଦିନରେ କୌଣସି ବିଘ୍ନଥାଏ, ତେବେ ଅଧିକ ଦିନ ବ୍ରହ୍ମଚର୍ଯ୍ୟ ବ୍ରତରେ ଦୃଢ ରହି ଯେଉଁଦିନ ଉଭୟଙ୍କର ଇଚ୍ଛା ହେବ ସେହିଦିନ ୩୯—୭୧ ପୃଷ୍ଠାରେ ଲିଖିତ ବିଧି ଅନୁସାରେ ଗର୍ଭାଧାନର ରାତ୍ରି ସ୍ଥିରହେଲେ ସେହି ରାତ୍ରିରେ ଗର୍ଭାଧାନ କରିବେ ।

ଯଦ୍ୱି କୌଣସି ବିଶେଷ କାରଣରୁ ଶ୍ୱଶୁରାଳୟରେ ଗର୍ଭାଧାନ ସଂସ୍କାର ହୋଇ ନପାରେ, ତେବେ ଦ୍ୱିତୀୟ ବା ତୃତୀୟ ଦିନ ପ୍ରାତଃକାଳରେ ବରପକ୍ଷର ଲୋକମାନେ ବଧୂ ଓ ବରକୁ ରଥରେ ଆରୋହଣକରାଇ ଅତି ସମ୍ମାନର ସହିତ ବର-ଗୃହକୁ ନେଇ ଆସିବେ ।

ବଧୂର ସ୍ୱ ପିତାମାତାଙ୍କର ଗୃହ ପରିତ୍ୟାଗ କାଳରେ ଚକ୍ଷୁ ଅଶ୍ରୁଭାରକ୍ରାନ୍ତ ହେଲେ ବର ନିମ୍ନୋକ୍ତ ମନ୍ତ୍ର ବୋଲିବେ—

ବର— ଜୀବଂ ରୁଦନ୍ତି ବି ମୟନ୍ତେ ଅଧ୍ୱରେ
ଦୀର୍ଘାମନୁ ପ୍ରସିତିଂ ଦୀଧ୍ୟୁର୍ନରଃ ।
ବାମଂ ପିତୃଭ୍ୟୋ ଯ ଇଦଂ ସମେରିରେ ମୟଃ
ପତିଭ୍ୟୋ ଜନୟଃ ପରିଷ୍ୱଜେ ॥

( ଋ୍ ମଂ. ୧୦।ସୂ. ୪୦।ମଂ. ୧୦ )

ଏବଂ ରଥରେ ଉପବେଶନ ସମୟରେ ବର ବଧୂକୁ ନିଜର ଦକ୍ଷିଣ ପାର୍ଶ୍ୱରେ ଉପବେଶନ କରାଇ ନିମ୍ନୋକ୍ତ ମନ୍ତ୍ରଦ୍ୱୟ ବୋଲି ରଥ ଚଳାଇବେ—

ପୂଷା ତ୍ୱେତୋ ନୟତୁ ହସ୍ତଗୃହ୍ୟାଶ୍ୱିନା ତ୍ୱା ପ୍ରବହତାଂ ରଥେନ । ଗୃହାନ୍‌ଗଚ୍ଛ ଗୃହପତ୍ନୀ ଯଥାସୋ ବଶିନୀ ତ୍ୱଂ ବିଦଥମା ବଦାସି ॥୧॥

ସୁକିଂଶୁକଂ ଶଲ୍ମଳିଂ ବିଶ୍ୱରୂପଂ ହିରଣ୍ୟବର୍ଣ୍ଣଂ
ସୁବୃତଂ ସୁଚକ୍ରମ୍ । ଆ ରୋହ ସୂର୍ଯ୍ୟେ ଅମୃତସ୍ୟ
ଲୋକଂ ସ୍ୟୋନଂ ପତ୍ୟେ ବହତୁଂ କୃଣୁଷ୍ୱ ॥୨॥
( ଋ· ମଂ· ୧୦।ସୂ· ୮୫।ମଂ. ୨୬, ୨୦ )

ବଧୂକୁ ଶ୍ୱଶୁରାଳୟରୁ ସ୍ୱଗୃହକୁ ଆଣିବା ସମୟରେ ଯଦି ନୌକାଯୋଗେ ଆସିବାକୁ ହୁଏ, ତେବେ ନୌକାରୋହଣ ପୂର୍ବରୁ ନିମ୍ନଲିଖିତ ମନ୍ତ୍ର ବୋଲି ନୌକାରୋହଣ କରିବେ –

ବର—ଅଶ୍ମନ୍ୱତୀ ରୀୟତେ ସଂ ରଭଧ୍ୱମୁତ୍ତିଷ୍ଠତ ପ୍ର
ତରତା ସଖାୟଃ ॥ ( ଆଶ୍ୱ. ୧।୮।୨ ॥ )

ଏବଂ ନୌକାରୁ ଅବତରଣ କରିବା ପୂର୍ବରୁ ନିମ୍ନୋକ୍ତ ମନ୍ତ୍ର ( ମନ୍ତ୍ରର ଉତ୍ତରାର୍ଦ୍ଧ ) ବୋଲି ନୌକାରୁ ଅବତରଣ କରିବେ—

ବର— ଅତ୍ରା ଜହାମ ଯେ ଅସନ୍ନଶେବାଃ
ଶିବାନ୍ୱୟମୁତ୍ତରେମାଭି ବାଜାନ୍ ॥
ଋ. ମଂ. ୧୦।ସୂ· ୫୩।ମଂ୮ ) ( ଆଶ୍ୱ. ୧।୮।୩ ॥ )

ପୁନଶ୍ଚ ଏହିରୂପରେ ପଥମଧ୍ୟରେ ୪ ମାର୍ଗର ସଂଯୋଗ-ସ୍ଥଳ, ନଦୀ, ବ୍ୟାଘ୍ର, ତସ୍କରାଦିର ଭୟ ବା ଉଚ୍ଚ, ନିମ୍ନ ଓ ସରଳୋନ୍ନତ ଭୂମି, ବୃହତ୍ ବୃହତ୍ ବୃକ୍ଷ, ବନ ବା ଶ୍ମଶାନଭୂମି ପ୍ରଭୃତି ଉଭୟଙ୍କର ସ୍ଥାନର ସମ୍ମୁଖୀନ ହେଲେ ପର ପୃଷ୍ଠାର ମନ୍ତ୍ର ବୋଲିବେ –

ବର—ମା ବିଦନ୍ ପରିପନ୍ଥିନୋ ଯ ଆସୀଦନ୍ତି ଦମ୍ପତୀ । ସୁଗେଭିର୍ଦୁର୍ଗମତୀତାମପଦ୍ରାନ୍ତ୍ୱରାତୟଃ ॥
( ଋ. ମଂ. ୧୦।ସୂ. ୮୫।ମଂ. ୩୨ ॥ ଆଶ୍ୱ. ୧।୮।୭ )

ତାପରେ ବଧୂ-ବର ଯେଉଁ ରଥରେ ଆରୋହଣ କରିଥିବେ, ସେହି ରଥର କୌଣସି ଅଙ୍ଗ ଭଙ୍ଗ ହୋଇଗଲେ ଅଥବା କୌଣସି ପ୍ରକାର ଆକସ୍ମିକ ଦୁର୍ଘଟଣା ଘଟିଲେ ପଥ-ମଧ୍ୟରେ କୌଣସି ଉତ୍ତମ ସ୍ଥାନ ଦେଖି ଅବସ୍ଥାନ କରିବେ ଏବଂ ସଙ୍ଗରେ ଆଣିଥିବା ସୁରକ୍ଷିତ ବିବାହାଗ୍ନିକୁ ପ୍ରଦୀପ୍ତ କରି ସେଥିରେ ୩୨ ପୃଷ୍ଠାରେ ଲିଖିତ ବିଧିରେ ୪ ( ଘୃତ ) ବ୍ୟାହୃତି ଆଜ୍ୟାହୁତି ଦେବେ । ତତ୍‌ପରେ ୩୭-୩୮ ପୃଷ୍ଠାରେ ଲିଖିତ ବିଧିରେ ବାମଦେବ୍ୟ ଗାନ କରିବେ ।

## ପତିଗୃହରେ

ତତ୍‌ପରେ ଯେତେବେଳେ ବର- ବଧୂର ରଥ ବରର ଗୃହ ସମ୍ମୁଖକୁ ଆସି ଉପସ୍ଥିତ ହେବ, ସେତେବେଳେ କୁଳୀନ ପୁତ୍ରବତୀ, ସୌଭାଗ୍ୟବତୀ ବା କୌଣସି ବ୍ରାହ୍ମଣୀ ବା ନିଜ କୁଳର କୌଣସି ସ୍ତ୍ରୀ ସମ୍ମୁଖକୁ ଆସି ବଧୂର ହସ୍ତ ଧାରଣପୂର୍ବକ କରସହ ତାହାକୁ ରଥରୁ ଓହ୍ଲାଇ ସଭାମଣ୍ଡପକୁ ନେଇଯିବେ ।

ସଭାମଣ୍ଡପର ଦ୍ୱାରଦେଶରେ ଉପସ୍ଥିତ ହୋଇ ବର କାର୍ଯ୍ୟାର୍ଥଲକ୍ଷେ ଆଗତ ବ୍ୟକ୍ତିବର୍ଗଙ୍କ ପ୍ରତି ଦୃଷ୍ଟିପାତ କରି ପର ପୃଷ୍ଠାର ମନ୍ତ୍ର ବୋଲିବେ—

ବର—ସୁମଙ୍ଗଲୀରିୟଂ ବଧୂରିମାଂ ସମେତ ପଶ୍ୟତ ।
ସୌଭାଗ୍ୟମସ୍ୟୈ ଦତ୍ତ୍ୱା ଯାଥାସ୍ତଂ ବି ପରେତନ ॥
( ଋ. ମଂ. ୧୦।ସୂ. ୮୫।ମଂ. ୩୩ ॥ ଅଶ୍ୱ. ୧।୮।୭ ॥ )

ଏବଂ ଆଗନ୍ତୁକ ବ୍ୟକ୍ତିମାନେ ନିମ୍ନୋକ୍ତ ବାକ୍ୟରେ ଆଶୀର୍ବାଦ କରିବେ—

ଓଁ ସୌଭାଗ୍ୟମସ୍ତୁ । ଓଁ ଶୁଭଂ ଭବତୁ ॥

ତାପରେ ବର ନିମ୍ନୋକ୍ତ ମନ୍ତ୍ର ବୋଲି ବଧୂକୁ ସଭା-ମଣ୍ଡପକୁ ନେଇଯିବେ—

ବର—ଇହ ପ୍ରିୟଂ ପ୍ରଜୟା ତେ ସମୃଧ୍ୟତାମସ୍ମିନ୍-
ଗୃହେ ଗାର୍ହପତ୍ୟାୟ ଜାଗୃହି । ଏନା ପତ୍ୟା ତନ୍ୱଂ
ସଂ ସୃଜସ୍ୱାଧା ଜିବ୍ରୀ ବିଦଥମା ବଦାଥଃ ।
( ଋ. ମଂ. ୧୦।ସୂକ୍ତ ୮୫।ମଂ. ୨୭ )

ତତ୍ପରେ ବଧୂ-ବର ପୂର୍ବସ୍ଥାପିତ ଯଜ୍ଞକୁଣ୍ଡ ସମୀପକୁ ଯିବେ । ସେ ସମୟରେ ବର ଉକ୍ତ ପୃଷ୍ଠାର ମନ୍ତ୍ର ବୋଲି ଯଜ୍ଞକୁଣ୍ଡର ପଶ୍ଚିମଭାଗରେ ପୀଠାସନେ ବା ତୃଣାସନରେ ବଧୂକୁ ସ୍ୱୀୟ ଦକ୍ଷିଣଭାଗରେ ପୂର୍ବାଭିମୁଖରେ ଉପବେଶନ କରାଇବେ—



ବର—ଓ୩ମ୍ ଇହ ଗାବଃ ପ୍ରଜାୟଧ୍ୱମିହାଶ୍ୱା ଇହ ପୁରୁଷାଃ । ଇହୋ ସହସ୍ରଦକ୍ଷିଣୋଽପି ପୂଷା ନି ଷୀଦତୁ ॥ ( ଅଥର୍ବ. କା°. ୨୦।ସୂ. ୧୨୭।ମଂ. ୧୨ )

ତତ୍ପରେ ୨୬ ପୃଷ୍ଠାରେ ଲିଖିତ ବିଧିରେ **ଓ୩ମ୍ । ଅମୃତୋପସ୍ତରଣମସି** ଇତ୍ୟାଦି ତିନ ମନ୍ତ୍ରରେ ତିନଥର ଆଚମନ କରିବେ ।

ତତ୍ପରେ ୨୭-୨୮ ପୃଷ୍ଠାର ଲିଖିତ ବିଧିରେ କୁଣ୍ଡରେ ଯଥାବିଧି ସମିଧାଚୟନ ଓ ଅଗ୍ନ୍ୟାଧାନ କରିବେ । ଯେତେବେଳେ କୁଣ୍ଡରେ ଅଗ୍ନି ପ୍ରଜ୍ୱଳିତ ହେବ, ସେତେବେଳେ ତଦୁପରି ଘୃତ ସିଞ୍ଚନ କରି ୨୮-୨୯ ପୃଷ୍ଠାର ଲିଖିତ ରୀତିରେ ସମିଧା ଦାନକରି ପ୍ରଦୀପ୍ତ ଅଗ୍ନିରେ ବଧୂ-ବର ୩୧-୩୨ ପୃଷ୍ଠାର ଲିଖିତ ବିଧିରେ ଆଘାରାବାଜ୍ୟଭାଗାହୁତି ୪ (ଚାରି), ବ୍ୟାହୃତି ଆହୁତି ୪ (ଚାରି) ଏବଂ ୩୪ ପୃଷ୍ଠାର ଲିଖିତ ବିଧିରେ ଅଷ୍ଟାଜ୍ୟାହୁତି ୮ ( ଆଠ ), ସର୍ବମୋଟ ୧୬ ( ଷୋଳ ) ଆଜ୍ୟାହୁତି ଦେବେ ।

ତତ୍ପରେ ବଧୂ-ବର ନିମ୍ନଲିଖିତ ମନ୍ତ୍ରରେ ପ୍ରଧାନ ହୋମ ଆରମ୍ଭ କରିବେ । ପ୍ରତ୍ୟେକ ମନ୍ତ୍ରଦ୍ୱାରା ଗୋଟିଏ ଗୋଟିଏ କରି ୮ ( ଆଠ ) ଆଜ୍ୟାହୁତି ଦେବେ ।

ବଧୂ ବରଃ—

**ଓ୩ମ ଇହ ଧୃତିଃ ସ୍ୱାହା ॥ ଇଦମିହ ଧୃତ୍ୟୈ—ଇଦନ୍ନ ମମ ॥୧॥**

ଓମ୍ ଇହ ସ୍ୱଧୃତିଃ ସ୍ୱାହା ॥ ଇଦମିହ ସ୍ୱଧୃତ୍ୟୈ ଇଦନ୍ନ ମମ ॥୨॥

ଓମ୍ ଇହ ରନ୍ତିଃ ସ୍ୱାହା ॥ ଇଦମିହ ରନ୍ତ୍ୟୈ ଇଦନ୍ନ ମମ ॥୩॥

ଓମ୍ ଇହ ରମସ୍ୱ ସ୍ୱାହା ॥ ଇଦମିହ ରମାୟୈ ଇଦନ୍ନ ମମ ॥୪॥

ଓମ୍ ମୟି ଧୃତିଃ ସ୍ୱାହା ॥ ଇଦଂ ମୟି ଧୃତ୍ୟୈ ଇଦନ୍ନ ମମ ॥୫॥

ଓମ୍ ମୟି ସ୍ୱଧୃତିଃ ସ୍ୱାହା ॥ ଇଦଂ ମୟି ସ୍ୱଧୃତ୍ୟୈ ଇଦନ୍ନ ମମ ॥୬॥

ଓମ୍ ମୟି ରମଃ ସ୍ୱାହା ॥ ଇଦଂ ମୟି ରମାୟୈ ଇଦନ୍ନ ମମ ॥୭॥

ଓମ୍ ମୟି ରମସ୍ୱ ସ୍ୱାହା ॥ ଇଦଂ ମୟି ରମାୟୈ ଇଦନ୍ନ ମମ ॥୮॥ ( ମଂ ବ୍ରା· ୧।୩।୧୪ )

ବଧୂ-ବର ଚଉ ପୃଷ୍ଠାର ୪ ( ଘୃତ ) ମନ୍ତ୍ରର ଗୋଟିଏ ଗୋଟିଏ ମନ୍ତ୍ରରେ ଗୋଟିଏ ଗୋଟିଏ କରି ୪ ( ଘୃତ ) ଆଜ୍ୟାହୁତି ଦେବେ—

ବଧୂ-ବରଃ—

ଓଁ ଆ ନଃ ପ୍ରଜାଂ ଜନୟତୁ ପ୍ରଜାପତିରାଜରସାୟ ସମନକ୍ତ୍ୱର୍ୟ୍ୟମା । ଅଦୁର୍ମଙ୍ଗଳୀଃ ପତିଲୋକମାବିଶ ଶଂ ନୋ ଭବ ଦ୍ୱିପଦେ ଶଂ ଚତୁଷ୍ପଦେ ସ୍ୱାହା* ॥ ଇଦଂ ପ୍ରଜାପତୟେ ସାବିତ୍ରୈ୍ୟ—ଇଦନ୍ନ ମମ ॥୧॥

---

* ହେ ବଧୂ ! ( ଅର୍ଯ୍ୟମା ) ନ୍ୟାୟକାରୀ ଦୟାଳୁ (ପ୍ରଜାପତିଃ) ପରମାତ୍ମା କୃପାକରି ( ଆଜରସାୟ ) ଜରାବସ୍ଥା ପର୍ଯ୍ୟନ୍ତ ବଞ୍ଚିବାପାଇଁ ( ନଃ ) ଆମର ( ପ୍ରଜାମ୍ ) ଉତ୍ତମ ପ୍ରଜାଙ୍କୁ ଶୁଭଗୁଣ, କର୍ମ ସ୍ୱଭାବଦ୍ୱାର ( ଆଜନୟତୁ ) ପ୍ରସିଦ୍ଧ କରନ୍ତୁ । ( ସମନକ୍ତୁ ) ତାହାଦ୍ୱାରା ଯେପରି ଉତ୍ତମ ସୁଖ ଲାଭ କରନ୍ତୁ ଏବଂ ଶୁଭ ଗୁଣ ଯୁକ୍ତା ( ମଂଗଳୀଃ ) ସ୍ତ୍ରୀ-ମାନେ ସମସ୍ତ ସ୍ୱଜନଙ୍କୁ ଆନନ୍ଦ ( ଅଦୁଃ ) ଦାନ କରନ୍ତୁ । ସେମାନଙ୍କ ମଧ୍ୟରେ ତୁମେ ଅନ୍ୟତମା । ହେ ବରାନନେ ! ( ପତିଲୋକମ୍ ) ପତିଗୃହରେ ସୁଖରେ (ଆବିଶ) ପ୍ରବେଶ କର ନା ତାହା ପ୍ରାପ୍ତ ହୁଅ । ( ନଃ ) ଆମ୍ଭମାନଙ୍କର (ଦ୍ୱିପଦେ) ପିତାଦି ମନୁଷ୍ୟଗଣଙ୍କ ପାଇଁ ( ଶମ୍ ) ସୁଖଦାୟିନୀ ଓ ( ଚତୁଷ୍ପଦେ ) ଗବାଦି ପଶୁଗଣଙ୍କ ପାଇଁ ( ଶମ୍ ) ସୁଖ-କର୍ତ୍ତ୍ରୀ ( ଭବ ) ହୁଅ ॥୧॥

ଓଁ ଅଘୋର ଚକ୍ଷୁରପତିଘ୍ନ୍ୟେଧି ଶିବା ପଶୁଭ୍ୟଃ ସୁମନାଃ ସୁବର୍ଚ୍ଚାଃ । ବୀରସୂର୍ଦ୍ଦେବୃକାମା ସ୍ୟୋନା ଶନ୍ନୋ ଭବ ଦ୍ୱିପଦେ ଶଂ ଚତୁଷ୍ପଦେ ସ୍ୱାହା * ॥ ଇଦଂ ସୂର୍ଯ୍ୟାୟୈ ସାବିତ୍ର୍ୟୈ—ଇଦନ୍ନ ମମ ॥୨॥

ଓଁ ଇମାଂ ତ୍ୱମିନ୍ଦ୍ର ମୀଢ୍ୱଃ ସୁପୁତ୍ରାଂ ସୁଭଗାଂ କୃଣୁ । ଦଶାସ୍ୟାଂ ପୁତ୍ରାନାଧେହି ପତିମେକା-ଦଶଂ କୃଧି ସ୍ୱାହା * । ଇଦଂ ସୂର୍ଯ୍ୟାୟୈ ସାବିତ୍ର୍ୟୈ ଇଦନ୍ନ ମମ ॥୩॥

---

* ଏହି ମନ୍ତ୍ରର ଅର୍ଥ ବିବାହ ସଂସ୍କାରରେ ୨୧୫ ପୃଷ୍ଠାରେ ଅଛି ॥୨॥

* ଈଶ୍ୱର ପୁରୁଷ ଓ ସ୍ତ୍ରୀକୁ ଆଜ୍ଞା ଦେଉଛନ୍ତି— ହେ (ମୀଢ୍ୱଃ) ବୀର୍ଯ୍ୟ ସିଞ୍ଚନକାରୀ ( ଇନ୍ଦ୍ର ) ଏହି ବଧୂର ପରମୈଶ୍ୱର୍ଯ୍ୟ-ଯୁକ୍ତ ସ୍ୱାମିନ୍ ( ତ୍ୱମ୍ ) ତୁମେ ( ଇମାମ୍ ) ଏହି ବଧୂକୁ ( ସୁପୁତ୍ରାମ୍ ) ସୁପୁତ୍ରବତୀ ( ସୁଭଗାମ୍ ) ତଥା ସୌଭାଗ୍ୟ-ବତୀ ( କୃଣୁ ) କର । ( ଅସ୍ୟାମ୍ ) ଏହି ବଧୂ ଦ୍ୱାରା ଦଶ ( ପୁତ୍ରାନ୍ ) ପୁତ୍ର ( ଆଧେହି ) ଉତ୍ପନ୍ନ କର । ଅଧିକ ନୁହେଁ । ହେ ସ୍ତ୍ରୀ ! ତୁମେ ଅଧିକ କାମନା କରନାହିଁ । କିନ୍ତୁ ଦଶ ପୁତ୍ର ଓ ( ଏକାଦଶମ୍ ) ଏକାଦଶ ସ୍ଥାନରେ ( ପତିମ୍ ) ପତିକୁ ପ୍ରାପ୍ତହୋଇ ସନ୍ତୋଷ ( କୃଧି ) କର-

ଓଂ ସମ୍ରାଜ୍ଞୀ ଶ୍ୱଶୁରେ ଭବ ସମ୍ରାଜ୍ଞୀ ଶ୍ୱଶ୍ରୂଂ ଭବ।
ନନାନ୍ଦରି ସମ୍ରାଜ୍ଞୀ ଭବ ସମ୍ରାଜ୍ଞୀ ଅଧି ଦେବୃଷୁ ସ୍ୱାହା॥
ଇଦଂ ସୂର୍ଯ୍ୟାଯୈ ସାବିତ୍ର୍ୟୈ ଇଦନ୍ନ ମମ ॥୪॥
( ଋ. ମଂ. ୧୦।ସୂ. ୮୫।ମଂ ୪୩-୪୬ )

କର। ଯଦି ଏହାପରେ ସନ୍ତାନୋତ୍ପତ୍ତିର ଲୋଭକର ତେବେ ତୁମର ଦୁଷ୍ଟ ଅଳ୍ପାୟୁ ଓ ନିର୍ବୁଦ୍ଧି ସନ୍ତାନ ହେବେ ଏବଂ ତୁମେବି ଅଳ୍ପାୟୁ ଓ ରୋଗଗ୍ରସ୍ତ ହୋଇଯିବ। ଏଣୁ ଅଧିକ ସନ୍ତାନୋତ୍ପତ୍ତି କରିବ ନାହିଁ। ( ପତିଂ ଏକାଦଶଂ କୃଧି ) ଏହି ପଦର ଅର୍ଥ ନିୟୋଗ କାଳରେ ଅନ୍ୟରୂପହେବ ଅର୍ଥାତ୍ ଯେପରି ପରମାତ୍ମା ପୁରୁଷକୁ ବିବାହିତ ସ୍ତ୍ରୀ ଦ୍ୱାରା ଦଶପୁତ୍ର ଉତ୍ପାଦନ କରିବାକୁ ଆଜ୍ଞା ଦେଇଛନ୍ତି। ସେହିପରି ଆଜ୍ଞା ସ୍ତ୍ରୀ ପ୍ରତି ମଧ୍ୟ ଅଛି, ଯେ ଦଶପୁତ୍ର ପର୍ଯ୍ୟନ୍ତ ବିବାହିତ ପତିଦ୍ୱାରା ଅଥବା ବିଧବା ହେଲେ ନିୟୋଗରେ ଲାଭକରିବେ। ଏହିପରି ସ୍ତ୍ରୀ ଏକ ପତିସହିତ ଥରେ ବିବାହିତ ହେବେ ଏବଂ ପୁରୁଷ ଏକ ସ୍ତ୍ରୀକୁ ଥରେ ବିବାହ କରିବେ— ଏହିପରି ଆଜ୍ଞା ଅଛି। ଯେପରି ବିଧବା ହେଲେ ସ୍ତ୍ରୀ ନିୟୋଗଦ୍ୱାରା ସନ୍ତାନୋତ୍ପତ୍ତି କରି ପୁତ୍ରବତୀ ହେବେ, ସେହିପରି ପୁରୁଷ ମଧ୍ୟ ବିପତ୍ନୀକ ହେଲେ ନିୟୋଗଦ୍ୱାରା ପୁତ୍ରବାନ୍ ହେବେ ॥୩॥

ଓଁ ହେ ବରାନନେ ! ତୁମେ ନିରପେକ୍ଷଭାବରେ ଏବଂ ପ୍ରୀତି-ସହକାରେ ( ଶ୍ୱଶୁର ) ମୋ ପିତା, ଯେ ତୁମର ଶ୍ୱଶୁର ତାହାଙ୍କ ନିକଟରେ (ସମ୍ରାଜ୍ଞୀ) ଚକ୍ରବର୍ତ୍ତୀ ରଜାଙ୍କର ରାଣୀଭଳି ସମ୍ୟକ୍‌ରୂପରେ ପ୍ରକାଶମାନ ( ଭବ ) ହୁଅ, ( ଶ୍ୱଶ୍ରୂବାମ୍ ) ମୋର ମାତା, ଯେ ତୁମର ଶାଶୁ ତାହାଙ୍କ ପ୍ରତି ପ୍ରେମପୂର୍ଣ୍ଣ-

ତତ୍ପରେ ୩୨-୩୩ ପୃଷ୍ଠାର ଲିଖିତ ବିଧିରେ ସ୍ୱିଷ୍ଟକୃତ୍ ହୋମାହୁତି ୧ ( ଏକ ), ବ୍ୟାହୃତି ଆଜ୍ୟାହୁତି ୪ ( ଚାରି ) ଓ ପ୍ରାଜାପତ୍ୟାହୁତି ୧ ( ଏକ ), ସର୍ବସମେତ ୬ ( ଛଅ ) ଆଜ୍ୟାହୁତି ଦେବେ ।

ତାପରେ ବଧୂ ଓ ବର ନିମ୍ନୋକ୍ତ ମନ୍ତ୍ର ବୋଲି ଦଧି-ପ୍ରାଶନ କରିବେ ।

ବର-ବଧୂ:—

**ସମଞ୍ଜନ୍ତୁ ବିଶ୍ୱେ ଦେବାଃସମାପୋ ହୃଦୟାନି ନୌ ।**
**ସଂ ମାତରିଶ୍ୱା ସଂ ଧାତା ସମୁ ଦେଷ୍ଟ୍ରୀ ଦଧାତୁ ନୌ* ॥**

( ଋ. ମଂ. ୧୦।ସୂ. ୮୫।ମଂ. ୪୭ )

ତତ୍ପରେ ପର ପୃଷ୍ଠାର ମନ୍ତ୍ର ବୋଲି ବଧୂ-ବର ବରର ମାତାପିତାଦି ଗୁରୁଜନମାନଙ୍କୁ ପ୍ରୀତିପୂର୍ବକ ନମସ୍କାର କରିବେ —

---

ଭାବେ ତାଙ୍କ ଆଜ୍ଞାରେ ( ସମ୍ରାଜ୍ଞୀ ) ସମ୍ୟକ୍ ରୂପେ ପ୍ରକାଶମାନ ( ଭବ ) ହୁଅ, ( ନନାନ୍ଦରି ) ମୋର ଭଗ୍ନୀ, ଯେ ତୁମର ନଣନ୍ଦ, ତାହାର ନିକଟରେ ମଧ୍ୟ ( ସମ୍ରାଜ୍ଞୀ ) ପ୍ରୀତିପୂର୍ବକ ପ୍ରକାଶମାନ ଏବଂ ( ଦେବୃଷୁ ) ମୋର ଭ୍ରାତା, ଯେ ତୁମର ଦେବର ଜ୍ୟେଷ୍ଠ ବା କନିଷ୍ଠ, ତାହାଙ୍କ ନିକଟରେ (ସମ୍ରାଜ୍ଞୀ) ପ୍ରୀତିପୂର୍ବକ ପ୍ରକାଶମାନ ହୋଇ ( ଅଧିଭବ ) ଅଧିକାରଯୁକ୍ତ ହୁଅ ଅର୍ଥାତ୍ ସମସ୍ତଙ୍କ ସହିତ ଅବିରୋଧରେ ପ୍ରୀତିପୂର୍ବକ ବାସ ( ବ୍ୟବହାର ) କର ॥୪॥

* ଏହି ମନ୍ତ୍ରର ଅର୍ଥ ଏହି "ବିବାହ ସଂସ୍କାର"ର ପ୍ରଥମ ଭାଗ ୨୧୩ ପୃଷ୍ଠାରେ ଲିଖିତ ହୋଇଛି ।

ଅହଂ ଭୋ ଅଭିବାଦୟାମି ॥ ( ଗୋଭି. ୨।୮।୧୧ )

ତାପରେ ବଧୂ-ବର ଉଭୟେ ସୁଭୂଷିତ ହୋଇ ଶୁଭାସନରେ ଉପବେଶନ ପୂର୍ବକ ୩୭-୩୮ ପୃଷ୍ଠାର ଲିଖିତ ବିଧିରେ ବାମଦେବ୍ୟଗାନ ଏବଂ ୨-୭ ପୃଷ୍ଠାର ଲିଖିତ ପ୍ରଣାଳୀରେ ଈଶ୍ୱରୋପାସନା କରିବେ । ସେତେବେଳେ କାର୍ଯ୍ୟୋପଲକ୍ଷେ ଆଗତ ସମସ୍ତ ସ୍ତ୍ରୀ-ପୁରୁଷ ଭକ୍ତିପୂର୍ବକରେ ପରମେଶ୍ୱରଙ୍କର ଧ୍ୟାନ କରିବେ ।

ତାପରେ ବଧୂ ବର ପିତା, ଆଚାର୍ଯ୍ୟ ଓ ପୁରୋହିତାଦି ମାନଙ୍କୁ ନିମ୍ନୋକ୍ତ ବାକ୍ୟରେ ସ୍ୱସ୍ତିବାଚନ କରିବାକୁ କହିବେ-

ବଧୂ-ବର – **ଓଁ ସ୍ୱସ୍ତି ଭବନ୍ତୋ ବ୍ରୁବନ୍ତୁ** ॥

( ଆଶ୍ୱଲା. ଗୃ. ଅ. ୧।କଂ ୮।ସଂ ୧୫ )

ତାପରେ ପିତା, ଆଚାର୍ଯ୍ୟ ଓ ପୁରୋହିତାଦି ବିଦ୍ୱାନ୍‌ମାନେ ବା ସେମାନଙ୍କ ଅଭାବରେ ବଧୂ-ବର ବିଦ୍ୱାନ୍ ଓ ବେଦଜ୍ଞ ହେଲେ ସେମାନେ ଉଭୟେ ୭-୧୨ ପୃଷ୍ଠାର ଲିଖିତ ବିଧିରେ ସାନନ୍ଦରେ ସ୍ୱସ୍ତିବାଚନ ପାଠ କରିବେ । ପାଠ ସମାପ୍ତ ହେଲେ କାର୍ଯ୍ୟୋପଲକ୍ଷେ ଆଗତ ସ୍ତ୍ରୀ ପୁରୁଷ-ମାନେ ପର ପୃଷ୍ଠାର ବାକ୍ୟ କହିବେ—

---

* ଏହାଠାରୁ ଉତ୍ତମ "ନମସ୍ତେ" । ନିତ୍ୟପ୍ରତି ସ୍ତ୍ରୀ, ପୁରୁଷ, ପିତା, ପୁତ୍ର ଅଥବା ଗୁରୁ-ଶିଷ୍ୟାଦି ସମସ୍ତଙ୍କ ପକ୍ଷରେ ଅଭିବାଦନ ପାଇଁ ଏହା ବେଦୋକ୍ତ ବାକ୍ୟ । ପ୍ରାତଃକାଳରେ ବା ସାୟଂକାଳରେ, ଅପୂର୍ବ ସମାଗମରେ ବା ଯେତେବେଳେ ଦେଖାସାକ୍ଷାତ୍ ବା ମିଳନ ହେବ, ସେଇ ସମୟରେ ଏହି ବାକ୍ୟରେ ପରସ୍ପର ଅଭିବାଦନ କରିବେ ।

ସମସ୍ତେ—ଓଁ ଶାନ୍ତ ସ୍ୱସ୍ତି, ଓଁ ଶାନ୍ତ ସ୍ୱସ୍ତି, ଓଁ ଶାନ୍ତ ସ୍ୱସ୍ତି ।

ତାପରେ କର୍ମକର୍ତ୍ତା ପିତା, କକେଇ ( ଓ ବଡ଼ବାପା ) ଭ୍ରାତା ଆଦି ପୁରୁଷମାନଙ୍କୁ ଏବଂ ମାତା, କାକୀ ( ଖୁଡ଼ୀ ଓ ଜେଠେଇ ବା ବଡ଼ମା ), ଭଗ୍ନୀ ଆଦି ସ୍ତ୍ରୀଗଣଙ୍କୁ ଯଥାବିଧ ସମ୍ବର୍ଦ୍ଧନା କରି ବିଦାୟ ଦାନ କରିବେ । ଯଦି କୌଣସି ବିଶେଷ କାରଣ ବଶତଃ ଶ୍ୱଶୁରାଳୟରେ ଗର୍ଭାଧାନ ସଂସ୍କାର ହୋଇ ନଥାଏ ତେବେ ବଧୂ-ବର କ୍ଷାର ଆହାର ଓ ବିଷୟ-ତୃଷ୍ଣା ତ୍ୟାଗ ପୂର୍ବକ ବ୍ରହ୍ମଚର୍ଯ୍ୟ ରହି ୩୯ ରୁ ୬୧ ପୃଷ୍ଠାପାଏଁ ଲିଖିତ ବିଧିରେ ବିବାହର ଚତୁର୍ଥ ଦିନରେ ଗର୍ଭାଧାନ ସଂସ୍କାର କରିବେ । ସେଦିନ ଋତୁକାଳ ହୋଇ ନଥିଲେ ଅନ୍ୟ କୌଣସି ଦିନ ଗର୍ଭସ୍ଥାପନ କରିବେ । ଯଦି ବର ଅନ୍ୟଦେଶରୁ ବିବାହ ନିମିତ୍ତ ଆସିଥାଏ, ତେବେ ଯେଉଁସ୍ଥାନରେ ବିବାହ ନିମିତ୍ତ ବରପକ୍ଷ ଅସ୍ଥାୟୀ ବାସକରିଥିବେ ସେ ସ୍ଥାନରେ ଗର୍ଭାଧାନ କରିବେ ।

ତାପରେ ନିଜର ଗୃହକୁ ଆସିଲେ ପତି, ଶ୍ୱଶୁର, ଶାଶୁ, ନଣନ୍ଦ, ଦେବର, ଯା', ଦେଢ଼ଶୁର ଓ ବଡ଼ଯା' ପ୍ରଭୃତି ସମସ୍ତେ ବଧୂକୁ ପୂଜା ଅର୍ଥାତ୍ ଆଦର ସମ୍ମାନ କରିବେ । ମଧୁର ବାଣୀ, ବସ୍ତ୍ର ଓ ଅଳଙ୍କାରଦ୍ୱାରା ବଧୂକୁ ସନ୍ତୁଷ୍ଟ ରଖିବେ ଏବଂ ବଧୂ ମଧ୍ୟ ସମସ୍ତଙ୍କୁ ସନ୍ତୁଷ୍ଟ ରଖିବେ । ବର ବଧୂ ସହିତ ପତ୍ନୀବ୍ରତାଦି ସଦ୍‌ଧର୍ମ ପାଳନ ପୂର୍ବକ ରହିବେ ଏବଂ ପତ୍ନୀ ମଧ୍ୟ ପତିସହିତ ପତିବ୍ରତାଦି ସମ୍ବନ୍ଧରେ ରହିବେ । ଶାନ୍ତିମାନ୍ତ ଓ ଆତ୍ମିକ ବ୍ୟବହାରରେ ତଥା ପତିର ଆଜ୍ଞା-ପାଳନରେ ସଦା ତତ୍ପର ଓ ଉତ୍ସୁକ ରହିବେ ଏବଂ ବର ମଧ୍ୟ ସ୍ତ୍ରୀର ସେବାରେ ଓ ପ୍ରସନ୍ନତାପାଇଁ ତତ୍ପର ରହିବେ ।

॥ ଇତି ବିବାହ ସଂସ୍କାରବିଧିଃ ସମାପ୍ତଃ ॥

# ଅଥ ଗୃହାଶ୍ରମ ସଂସ୍କାର ବିଧିଂ ବକ୍ଷ୍ୟାମଃ

ଐହିକ ଏବଂ ପାରଲୌକିକ ସୁଖପ୍ରାପ୍ତି ନିମନ୍ତେ ବିବାହ କରି ନିଜ ନିଜର ସାମର୍ଥ୍ୟ ଅନୁସାରେ ପରୋପକାର କରିବା, ନିର୍ଦ୍ଦିଷ୍ଟ ସମୟରେ ଯଥାବିଧି ଈଶ୍ୱରୋପାସନା ଏବଂ ଗୃହକୃତ୍ୟ କରିବା ସଙ୍ଗେ ସଙ୍ଗେ ସତ୍ୟଧର୍ମରେହିଁ ନିଜର ଶରୀର, ମନ, ଧନକୁ ବିନିଯୋଗ କରିବା ତଥା ଧର୍ମାନୁସାରେ ସନ୍ତାନ ଉତ୍ପନ୍ନ କରିବାକୁ ଗୃହାଶ୍ରମ ସଂସ୍କାର କୁହାଯାଏ ।

## ଅତ୍ର ପ୍ରମାଣାନି

ସୋମୋ ବଧୂୟୁରଭବଦଶ୍ୱିନାସ୍ତାମୁଭା ବରା ।
ସୂର୍ଯାଂ ଯତ୍ପତ୍ୟେ ଶଂସନ୍ତୀଂ ମନସା ସବିତା ଦଦାତ୍ ॥୧॥

ଇହୈବ ସ୍ତଂ ମା ବି ୟୌଷ୍ଟଂ ବିଶ୍ୱମାୟୁର୍ବ୍ୟଶ୍ନୁତମ୍ ।
କ୍ରୀଡ଼ନ୍ତୌ ପୁତ୍ରୈର୍ନପ୍ତୃଭିର୍ମୋଦମାନୌ ସ୍ୱସ୍ତକୌ ॥୨॥

( ଅ. କାଂ. ୧୪।ସୂ. ୧। ମଂ. ୯, ୨୨ )

**ଅର୍ଥ:**—( ସୋମଃ) ସୁକୁମାର ଶୁଭଗୁଣଯୁକ୍ତ ( ବଧୂୟୁଃ ) ବଧୂକୁ କାମନା କରୁଥିବା ପତି ତଥା ପତିକୁ କାମନା କରୁଥିବା ବଧୂ ( ଅଶ୍ୱିନା ) ଉଭୟେ ବ୍ରହ୍ମଚର୍ଯ୍ୟ ଦ୍ୱାରା

ବିଦ୍ୟା ( ଅଭବତ୍ ) ପ୍ରାପ୍ତହେବେ, ଏବଂ ( ତଥା ) ଉଭୟେ ( ବଶ ) ଶ୍ରେଷ୍ଠତୁଲ୍ୟ ଗୁଣ, କର୍ମ, ସ୍ୱଭାବଯୁକ୍ତ ( ଅସ୍ତାମ୍ ) ହେବେ, ଏହିପ୍ରକାର ( ଯତ୍ ) ଯେଉଁ ( ସୂର୍ଯ୍ୟାମ୍ ) ସୂର୍ଯ୍ୟର କିରଣପରି ସୌନ୍ଦର୍ଯ୍ୟବତୀ ( ପତ୍ୟେ ) ପତି ନିମନ୍ତେ (ମନସା) ମନମଧ୍ୟରେ ( ଶଂସନ୍ତୀମ୍ ) ଗୁଣକୀର୍ତ୍ତନ କରୁଥିବା ବଧୂ ଅଟେ, ତାହାକୁ ପୁରୁଷ ଏବଂ ଏହିପ୍ରକାର ପୁରୁଷକୁ ସ୍ତ୍ରୀ ( ସବିତା ) ସକଳ ଜଗତର ଉତ୍ପାଦକ ପରମାତ୍ମା ( ଅଦଦାତ୍ ) ଦେଉନ୍ତୁ । ଅର୍ଥାତ୍, ସୌଭାଗ୍ୟବଶତଃ ତୁଲ୍ୟ ଗୁଣ, କର୍ମ, ସ୍ୱଭାବଯୁକ୍ତ ସ୍ତ୍ରୀ ଓ ପୁରୁଷଙ୍କର ଜୋଡା ମିଳେ । ॥୧॥

ହେ ସ୍ତ୍ରୀ ଏବଂ ପୁରୁଷ ! ମୁଁ ପରମେଶ୍ୱର, ଆଜ୍ଞା ଦେଉଛିଯେ, ପୂର୍ବରୁ ବିବାହ କାଳରେ ତୁମ୍ଭେ ଦୁଇଜଣଙ୍କର ଯାହା ପ୍ରତିଜ୍ଞା ହୋଇଛି, ଯାହାକୁ ତୁମ୍ଭେ ଦୁହେଁ ସ୍ୱୀକାର କରିଛ ( ଇହୈବ ) ସେଥିରେ ( ସ୍ତମ୍ ) ତତ୍ପର ରୁହ, ( ମା ବିୟୌଷ୍ଟମ୍ ) ଏହି ପ୍ରତିଜ୍ଞାରୁ ବିଯୁକ୍ତ ହୁଅନାହିଁ । ( ବିଶ୍ୱମାୟୁର୍ବ୍ୟଶ୍ନୁତମ୍ ) ) ଋତୁଗାମୀ ହୋଇ ବୀର୍ଯ୍ୟ ଅଧିକ ନଷ୍ଟ ନକରି ସଂପୂର୍ଣ୍ଣ ଆୟୁ ଅର୍ଥାତ୍ ଏକଶତ ବର୍ଷ ଆୟୁଷ ପ୍ରାପ୍ତହୁଅ ଏବଂ ପୂର୍ବୋକ୍ତ ଧର୍ମରୀତିରେ ( ପୁତ୍ରୈଃ ) ପୁତ୍ର ଏବଂ ( ନପ୍ତୃଭିଃ ) ନାତିମାନଙ୍କ ସହିତ ( କ୍ରୀଡନ୍ତୌ ) କ୍ରୀଡାକରି ( ସ୍ୱସ୍ତକୌ ) ଉତ୍ତମ ଗୃହାଶ୍ରବରେ (ମୋଦମାନୌ) ଆନନ୍ଦିତ ହୋଇ ଗୃହାଶ୍ରମରେ ପ୍ରୀତିପୂର୍ବକ ବାସକର ॥୨॥

**ସୁମଙ୍ଗଲୀ ପ୍ରତରଣୀ ଗୃହାଣାଂ ସୁଶେବା ପତ୍ୟେ ଶ୍ୱଶୁ-ରାୟ ଶମ୍ଭୂଃ । ସ୍ୟୋନା ଶ୍ୱଶ୍ରୈ୍ୱ ପ୍ର ଗୃହାନ୍ ବିଶେମାନ୍ ॥୩॥**

ସ୍ୟୋନା ଭବ ଶ୍ୱଶୁରେଭ୍ୟଃ ସ୍ୟୋନା ପତ୍ୟେ
ଗୃହେଭ୍ୟଃ । ସ୍ୟୋନାସ୍ୟୈ ସର୍ବସ୍ୟୈ ବିଶେ
ସ୍ୟୋନା ପୁଷ୍ଟାୟୈଷାଂ ଭବ ॥୪॥

ୟା ଦୁର୍ହାର୍ଦୋ ୟୁବତୟୋ ଯାଶ୍ଚେହ ଜରତୀରପି ।
ବର୍ଚୋ ନ୍ୱସ୍ୟୈ ସଂ ଦତ୍ତାଥାସ୍ତଂ ବିପରେତନ ॥୫॥

ଆରୋହ ତଲ୍ପଂ ସୁମନସ୍ୟମାନେହ ପ୍ରଜାଂ ଜନୟ
ପତ୍ୟେ ଅସ୍ମୈ । ଇନ୍ଦ୍ରାଣୀବ ସୁବୁଧା ବୁଧ୍ୟମାନା
ଜ୍ୟୋତିରଗ୍ରା ଉଷସଃ ପ୍ରତି ଜାଗରାସି ॥୬॥

( ଅଥର୍ବ. କା. ୧୪।ସୂ. ୨।ମଂ. ୨୬, ୨୭, ୨୯, ୩୧ )

**ଅର୍ଥ:**— ହେ ବରନନେ ! ତୁ ( ସୁମଙ୍ଗଳୀ ) ଉତ୍ତମରୂପେ ମଙ୍ଗଳାଚରଣ କରି, ( ପ୍ରତରଣୀ ) ଦୋଷ ଏବଂ ଶୋକାଦ୍ଧ ଦୂରକାରଣୀ ହୋଇ ( ଗୃହାଣାମ୍ ) ଗୃହକାର୍ଯ୍ୟରେ ଚତୁର ଓ ତତ୍ପର ରହି, ( ସ୍ୟୋନା ) ଉତ୍ତମ ସୁଖଯୁକ୍ତ ହୋଇ ( ପତ୍ୟେ ) ପତି ( ଶ୍ୱଶୁରେଭ୍ୟଃ ) ଶ୍ୱଶୁର ଏବଂ ( ଶ୍ୱଶ୍ରୂଭ୍ୟେ ) ଶାଶୁଙ୍କ ନିମନ୍ତେ ( ଶନ୍ତୁଃ ) ସୁଖକର୍ତ୍ତ୍ରୀ ହୋଇ ( ସ୍ୟୋନା ) ନିଜେ ପ୍ରସନ୍ନ ହୋଇ ( ଇମାନ୍ ) ଏହିସବୁ (ଗୃହାନ୍ ) ଗୃହମାନଙ୍କରେ ସୁଖପୂର୍ବକ ( ପ୍ରବିଶ ) ପ୍ରବେଶ କର ॥୩॥

ହେ ବଧୂ ! ତୁ ( ଶ୍ୱଶୁରେଭ୍ୟଃ ) ଶ୍ୱଶୁର ପ୍ରଭୃତିଙ୍କ ନିମନ୍ତେ ( ସ୍ୟୋନା ) ସୁଖଦାତା ( ପତ୍ୟେ ) ପତିଙ୍କ

ନିମନ୍ତେ ( ସ୍ୟୋନା ) ସୁଖଦାତ୍ରୀ ଏବଂ ( ଗୃହେଭ୍ୟଃ ) ଗୃହସ୍ଥ ସମ୍ପର୍କୀୟମାନଙ୍କ ନିମନ୍ତେ ( ସ୍ୟୋନା ) ସୁଖଦାୟକ (ଭବ) ହୁଅ ଏବଂ ( ଅସ୍ୟୈ ) ଏହି ( ସର୍ବସ୍ୟୈ ) ସମସ୍ତ (ବିଶେ) ପ୍ରଜାଙ୍କ ନିମନ୍ତେ ( ସ୍ୟୋନା ) ସୁଖପ୍ରଦ ଏବଂ ( ଏଷାମ୍ ) ଏମାନଙ୍କର ( ପୁଷ୍ଟାୟ ) ପୋଷଣ ନିମନ୍ତେ ତତ୍ପର (ଭବ) ହୁଅ ॥୪॥

( ଯାଃ ) ଯେଉଁ ( ଦୁର୍ହାର୍ଦଃ ) ଦୁଷ୍ଟ ହୃଦୟଯୁକ୍ତା ଅର୍ଥାତ୍ ଦୁଷ୍ଟାତ୍ମା ( ଯୁବତୟଃ ) ଯୁବତୀ ସ୍ତ୍ରୀମାନେ ( ଚ ) ଏବଂ ( ଯାଃ ) ଯେଉଁ ( ଇହ ) ଏହି ସ୍ଥାନରେ ( ଜରତୀ ) ବୃଦ୍ଧୀ ଦୁଷ୍ଟ ସ୍ତ୍ରୀ ଲୋକମାନେ ଅଛନ୍ତି, ସେହିମାନେ ( ଅପି ) ମଧ୍ୟ ( ଅସ୍ୟୈ ) ଏହି ବଧୂକୁ ( ନୁ ) ଶୀଘ୍ର ( ବର୍ଚଃ ) ତେଜ ( ସଂଦତ୍ତ ) ପ୍ରଦାନ କରିବେ, ( ଅଥ ) ଏହାପରେ ( ଅସ୍ତମ୍ ) ନିଜ ନିଜ ଗୃହକୁ ( ବିପରେତନ ) ଚାଲିଯିବେ ଏବଂ ପୁନଶ୍ଚ ତାହା ନିକଟକୁ କଦାପି ଆସିବେ ନାହିଁ ॥୫॥

ହେ ବଧୂଜନେ ! ତୁମେ ( ସୁମନସ୍ୟମାନା ) ପ୍ରସନ୍ନଚିତ୍ତ ହୋଇ ( ତଳ୍ପମ୍ ) ପଲଙ୍କଉପରେ ( ଆ ରୋହ ) ଚଢ଼ି ଶୟନକର ଏବଂ ( ଇହ ) ଏହି ଗୃହାଶ୍ରମରେ ସ୍ଥିର ରହି ( ଅସ୍ମୈ ) ଏହି ( ପତ୍ୟେ ) ପତିଙ୍କ ନିମନ୍ତେ ( ପ୍ରଜାଂ ଜନୟ ) ସନ୍ତାନ ଉତ୍ପାଦନ କର, ( ସୁବୁଧା ) ସୁନ୍ଦର ଜ୍ଞାନବତୀ (ବୁଧ୍ୟମାନା) ଉତ୍ତମ ଶିକ୍ଷା ପ୍ରାପ୍ତା (ଇନ୍ଦ୍ରାଣୀଵ) ସୂର୍ଯ୍ୟର କାନ୍ତିସଦୃଶ ତୁମେ ( ଉଷସଃ ) ଉଷାକାଳର (ଅଗ୍ରା) ପ୍ରଥମ ( ଜ୍ୟୋତିଃ ) ଜ୍ୟୋତି ତୁଲ୍ୟ ( ପ୍ରତି ଜାଗରସି ) ସମସ୍ତ କର୍ମରେ ପ୍ରତ୍ୟେକ ଜାଗ୍ରତ ହୁଅ ॥୬॥

ଦେବା ଅଗ୍ରେ ନ୍ୟପଦ୍ୟନ୍ତ ପତ୍ନୀଃ ସମସ୍ପୃଶନ୍ତ
ତନ୍ୱଂସ୍ତନୂଭିଃ । ସୂର୍ଯେବ ନାରି ବିଶ୍ୱରୂପା ମହିତ୍ୱା
ପ୍ରଜାବତୀ ପତ୍ୟା ସଂ ଭବେହ ॥୭॥

ସଂ ପିତରାବୃତ୍ୱିୟେ ସୃଜେଥାଂ ମାତା ପିତା ଚ
ରେତସୋ ଭବାଥଃ । ମର୍ଯ୍ୟଇବ ଯୋଷାମଧି
ରୋହୟୈନାଂ ପ୍ରଜାଂ କୃଣ୍ୱାଥାମିହ ପୁଷ୍ୟତଂ
ରୟିମ୍ ॥୮॥

ତାଂ ପୂଷଞ୍ଛିବତମାମେରୟସ୍ୱ ଯସ୍ୟାଂ ବୀଜଂ
ମନୁଷ୍ୟା ବପନ୍ତି । ଯାନ ଉରୂ ଉଶତୀ ବିଶ୍ରୟାତି
ଯସ୍ୟାମୁଶନ୍ତଃ ପ୍ରହରେମ ଶେପଃ ॥୯॥

( ଅଥର୍ବ· କା. ୧୪।ସୂ. ୨।ମ. ୩୨, ୩୭, ୩୮

ଅର୍ଥ: – ହେ ସୌଭାଗ୍ୟପ୍ରଦେ ! ( ନାରି ) ସ୍ତ୍ରି ! ତୁମେ ଯେପରି ( ଇହ ) ଏହି ଗୃହାଶ୍ରମରେ ( ଅଗ୍ରେ ) ପୂର୍ବରୁ ବା ପ୍ରଥମରୁ ( ଦେବାଃ ) ବିଦ୍ୱାନ୍‌ମାନେ ( ପତ୍ନୀଃ ) ଉତ୍ତମ ସ୍ତ୍ରୀମାନଙ୍କୁ ( ନ୍ୟପଦ୍ୟନ୍ତ ) ପ୍ରାପ୍ତ ହୋଇଛନ୍ତି ଏବଂ ( ତନୂଭିଃ ) ଶରୀର ଦ୍ୱାରା ( ତନ୍ୱଃ ) ଶରୀରକୁ ( ସମସ୍ପୃଶନ୍ତ ) ସ୍ପର୍ଶ କରିଛନ୍ତି, ସେହିପରି ( ବିଶ୍ୱରୂପା ) ବିବିଧ ସୁନ୍ଦର ରୂପ –ଧାରିଣୀ ତୁମେ ( ମହିତ୍ୱା ) ସତ୍କାର ପ୍ରାପ୍ତହୋଇ ( ସୂର୍ଯେବ ) ସୂର୍ଯ୍ୟପରି ତେଜସ୍ୱୀନ୍ ( ପତ୍ୟା ) ନିଜର ସ୍ୱାମୀଙ୍କ ସହିତ ମିଳିତହୋଇ ( ପ୍ରଜାବତୀ ) ସନ୍ତାନବତୀ ( ସଂଭବ ) ହୁଅ ॥୭॥

ହେ ସ୍ତ୍ରୀ ପୁରୁଷ ! ତୁମେ (ପିତରୌ) ବାଳକମାନଙ୍କର ଜନକ ଜନନୀ (ଋତ୍ୱ୍ୟେ) ଋତୁ ସମୟରେ ସନ୍ତାନମାନଙ୍କୁ (ସଂସୃଜେଥାମ୍) ଉତ୍ତମରୂପେ ଉତ୍ପନ୍ନ କର । (ମାତା) ଜନନୀ (ଚ) ଏବଂ (ପିତା) ଜନକ ଉଭୟେ (ରେତସଃ) ବୀର୍ଯ୍ୟକୁ ସଂଯୁକ୍ତକରି ଗର୍ଭାଧାନ–କାର୍ଯ୍ୟ (ଭବାଥଃ) ହୁଅନ୍ତୁ । ହେ ପୁରୁଷ ! (ଏନାମ୍) ଏହି (ଯୋଷାମ୍) ନିଜର ସ୍ତ୍ରୀକୁ (ମର୍ଯ୍ୟଇବ) ପ୍ରାପ୍ତକାର୍ଯ୍ୟ ପତିସଦୃଶ (ଅଧି–ରୋହୟଃ) ସନ୍ତାନଦ୍ୱାରା ବୃଦ୍ଧିକର ଏବଂ ଉଭୟେ (ଇହ) ଏହି ଗୃହାଶ୍ରମରେ ଏକତ୍ର ମିଶି (ପ୍ରଜାମ୍) ସନ୍ତାନକୁ (କୃଣ୍ୱାଥାମ୍) ଉତ୍ପନ୍ନ କର, (ପୁଷ୍ୟତମ୍) ପାଳନ ପୋଷଣ କର ଏବଂ ପୁରୁଷାର୍ଥକରି (ରୟିମ୍) ଧନପ୍ରାପ୍ତହୁଅ ॥୮॥

ହେ (ପୂଷନ୍) ବୃଦ୍ଧିକାରକ ପୁରୁଷ ! (ଯସ୍ୟାମ୍) ଯେଉଁଠାରେ (ମନୁଷ୍ୟାଃ) ମନୁଷ୍ୟମାନେ (ବୀଜମ୍) ବୀର୍ଯ୍ୟକୁ (ବପନ୍ତି) ବପନ କରନ୍ତି, (ଯା) ଯେ (ନଃ) ଅମ୍ଭ–ମାନଙ୍କୁ (ଉଶତୀ) କାମନାକରି (ଊରୂ) ଊରୁକୁ ସୁନ୍ଦର ଭାବରେ (ବିଶ୍ରୟାତି) ବିଶେଷରୂପେ ଆଶ୍ରୟ କରେ, (ଯସ୍ୟାମ୍) ଯାହାଠାରେ (ଉଶନ୍ତଃ) ସନ୍ତାନ କାମନା କରି ଆମ୍ଭେମାନେ (ଶେପଃ) ଉପସ୍ଥେନ୍ଦ୍ରିୟକୁ (ପ୍ରହରେମ) ପ୍ରହରଣ କରୁ, (ତାମ୍) ସେହି (ଶିବତମାମ୍) ଅତିଶୟ କଲ୍ୟାଣମୟୀ ନିଜର ସ୍ତ୍ରୀକୁ ସନ୍ତାନୋତ୍ପତ୍ତି ନିମନ୍ତେ (ଏରୟସ୍ୱ) ପ୍ରେମପୂର୍ବକ ପ୍ରେରଣା ଦିଅ ॥୯॥

**ସେଧ୍ୟାନାଦେଧ୍ୟାକ୍ଷେରଶ୍ୱ ବୃଧ୍ୟମାନୌ ହସାମୁଦୌ**

ସମ୍ବର୍ହସା ମୋଦମାନୌ । ସ୍ୱଗୁ, ସୁପୁତ୍ରୌ ସୁଗୃହୌ
ତରାଥୋ ଜୀବାବୁଷସୋ ବିଭାତୀଃ ॥୧୦॥
ଇହେମାବିନ୍ଦ୍ର ସଂ ନୁଦ ଚକ୍ରବାକେବ ଦମ୍ପତୀ ।
ପ୍ରଜୟୈନୌ ସ୍ୱସ୍ତକୌ ବିଶ୍ୱମାୟୁର୍ବ୍ୟଶ୍ନୁତାମ୍ ॥୧୧॥
ଜନୀୟନ୍ତ ନାବଗ୍ରବଃ ପୁତ୍ରୀୟନ୍ତ ସୁଦାନବଃ ।
ଅରିଷ୍ଟାସୂ ସଚେବହି ବୃହତେ ବାଜସାତୟେ ॥୧୨॥
( ଅଥର୍ବ. କା୦. ୧୪।ସୂ. ୨।ମ୦, ୪୩, ୬୪, ୭୨ )

ଅର୍ଥ:—ହେ ସ୍ତ୍ରୀ ଏବଂ ପୁରୁଷ ! ଯେପରି ସୂର୍ଯ୍ୟ (ବିଭାତୀଃ) ସୁନ୍ଦର ପ୍ରକାଶଯୁକ୍ତ (ଉଷସଃ) ପ୍ରଭାତବେଳାକୁ ପ୍ରାପ୍ତହୁଏ, ସେହିପରି (ସ୍ୟୋନାତ୍) ସୁଖରେ (ଯୋନେଃ) ଗୃହମଧ୍ୟରେ (ଅଧି ବୁଧ୍ୟମାନୌ) ସନ୍ତାନୋତ୍ପତ୍ତି ଆଦି ବିଦ୍ୟାକୁ ଜାଣି, ସବୁବେଳେ (ହସାମୁଦୌ) ହାସ୍ୟ, ଆନନ୍ଦଯୁକ୍ତ ହୋଇ (ମହା) ଅତ୍ୟନ୍ତ ପ୍ରୀତିପୂର୍ବକ [ମୋଦମାନୌ] ଅତ୍ୟନ୍ତ ପ୍ରସନ୍ନତା ସହିତ [ସୁଗୁ] ଉତ୍ତମ ଚାଲିଚଳନ ଓ ଧର୍ମଯୁକ୍ତ ବ୍ୟବହାର ସମ୍ପନ୍ନ ହୋଇ [ସୁପୁତ୍ରୌ] ଉତ୍ତମ ପୁତ୍ରବାନ୍ [ସୁଗୃହୌ] ଶ୍ରେଷ୍ଠ ଗୃହାଦି ସାମଗ୍ରୀଯୁକ୍ତ ହୋଇ [ଜୀବୌ] ଉତ୍ତମ ପ୍ରକାର ଜୀବନ ଧାରଣ କରି [ତରାଥଃ] ଗୃହାଶ୍ରମର କର୍ମ ବ୍ୟବହାରକୁ ପାର ହୁଅ ॥୧୦॥

ହେ [ଇନ୍ଦ୍ର] ପରମୈଶ୍ୱର୍ଯ୍ୟଯୁକ୍ତ ବିଦ୍ୱାନ୍ ରାଜନ୍ ! ଆପଣ [ଇହ] ଏହି ସଂସାରରେ [ଇମୌ] ଏହି ସ୍ତ୍ରୀ ପୁରୁଷ-ମାନଙ୍କୁ ଠିକ୍ ସମୟରେ ବିବାହ କରିବାକୁ ଏପରି ଆଜ୍ଞା

ଦିଅନ୍ତୁ ଏବଂ ବ୍ୟବସ୍ଥା କରନ୍ତୁ, ଯଦ୍ଵାରା କୌଣସି ସ୍ତ୍ରୀ ପୁରୁଷ ବେଦ ଶାସ୍ତ୍ରୋକ୍ତ ପ୍ରମାଣ [ପୃଷ୍ଠା ୧୪୯ ରୁ ୧୫୬] ପୂର୍ବରୁ ବା ତଦଭିନ୍ନ ନିୟମରେ ବିବାହ କରିନପାରେ, ଏହିପରି ସ୍ଵବରେ [ସଂନୁଦ] ସମସ୍ତଙ୍କୁ ପ୍ରସିଦ୍ଧ ରୂପେ ପ୍ରେରଣା ଦିଅନ୍ତୁ, ଯେପରିକି ବ୍ରହ୍ମଚର୍ଯ୍ୟ ପୂର୍ବକ ଶିକ୍ଷା ପ୍ରାପ୍ତହୋଇ [ଦମ୍ପତୀ] ଜାୟା ଏବଂ ପତି [ଚକ୍ରବାକେବ] ଚକ୍ରବାକ ଚକ୍ରବାକୀପରି ପରସ୍ପର ସହିତ ପ୍ରେମରେ ଆବଦ୍ଧ ରହିବେ ଏବଂ ଗର୍ଭାଧାନ ସଂସ୍କାରୋକ୍ତ ବିଧିରେ [ପ୍ରଜୟା] ଉତ୍ପନ୍ନ ହୋଇଥିବା ସନ୍ତାନ ଦ୍ଵାରା [ଏନୌ] ଏ ଦୁଇଜଣ [ସ୍ୱସ୍ତକୌ] ସୁଖଯୁକ୍ତ ହୋଇ [ବିଶ୍ଵମ୍] ସମ୍ପୂର୍ଣ୍ଣ ଏକଶହ ବର୍ଷପର୍ଯ୍ୟନ୍ତ [ଆୟୁ] ଆୟୁଷ [ବ୍ୟଶ୍ନୁତାମ୍] ପ୍ରାପ୍ତହେବେ ॥୧୧॥

ହେ ମନୁଷ୍ୟଗଣ ! ଯେପରି [ସୁଦାନବଃ] ବିଦ୍ୟାଦି ଉତ୍ତମ ଗୁଣରେ ଦାନଶୀଳ [ଅଗବଃ] ଉତ୍ତମ ସ୍ତ୍ରୀ ପୁରୁଷ [ଜନୟନ୍ତ] ପୁତ୍ରୋତ୍ପତ୍ତି କରନ୍ତୁ ଏବଂ [ପୁତ୍ରିୟନ୍ତୁ] ପୁତ୍ର କାମନା କରନ୍ତୁ ସେହିପରି [ନୌ] ଆମ୍ଭର ମଧ୍ୟ ସନ୍ତାନ ଉତ୍ତମ ହୁଅନ୍ତୁ, ତଥା ଆମେ [ଅରିଷ୍ଟାସୁ] ବଳ ଓ ପ୍ରାଣନାଶୀ ନହୋଇ [ବୃହତେ] ବିଶେଷ [ବାଜସାତୟେ] ପରୋପକାରାର୍ଥେ ବିଜ୍ଞାନ ଏବଂ ଅନ୍ନ ପ୍ରଭୃତି ଦାନକରିବା ନିମନ୍ତେ [ସଚେବହି] ସର୍ବଦା କଟିବଦ୍ଧ ରହିବୁ ଯଦ୍ଵାରା ଆମ୍ଭର ସନ୍ତାନମଧ୍ୟ ଉତ୍ତମ ହେବେ ॥୧୨॥

**ପ୍ର ବୁଧ୍ୟସ୍ଵ ସୁବୁଧା ବୁଧ୍ୟମାନା ଦୀର୍ଘାୟୁତ୍ଵାୟ ଶତଶାରଦାୟ । ଗୃହାନ୍ ଗଚ୍ଛ ଗୃହପତ୍ନୀ ଯଥାସୋ ଦୀର୍ଘଂ ତ ଆୟୁଃ ସବିତା କୃଣୋତୁ ॥୧୩॥**

( ଅଥର୍ବ· କାଂ· ୧୪ ।ସୂ. ୨।ମଂ. ୭୫ )

ସହୃଦୟଂ ସାଂମନସ୍ୟମବିଦ୍ୱେଷଂ କୃଣୋମି ବଃ ।
ଅନ୍ୟୋ ଅନ୍ୟମଭି ହର୍ଯତ ବତ୍ସଂ ଜାତମିବାଘ୍ନ୍ୟା
॥୧୪॥

( ଅଥର୍ବ. କା୦. ୩।ସୂ. ୩୦।ମ୦. ୧ ॥ )

ଅର୍ଥ:—ହେ ପତ୍ନୀ ! ତୁ ( ଶତଶାରଦାୟ ) ଶହେବର୍ଷ ପର୍ଯ୍ୟନ୍ତ ( ଦୀର୍ଘାୟୁତ୍ୱାୟ ) ଦୀର୍ଘକାଳ ଜୀବନଧାରଣ କରିବା ନିମନ୍ତେ ( ସୁବୁଧା ) ଉତ୍ତମ ବୁଦ୍ଧିଯୁକ୍ତ ( ବୁଧ୍ୟମାନା ) ଓ ଜ୍ଞାନସମ୍ପନ୍ନା ହୋଇ ( ଗୃହାନ୍ ) ମୋର ଗୃହକୁ ( ଗଚ୍ଛ ) ପ୍ରାପ୍ତହୁଅ ଏବଂ ( ଗୃହପତ୍ନୀ ) ଗୃହ ସ୍ୱାମୀରୂପ ମୋର ସ୍ତ୍ରୀ, ( ଯଥା ) ( ଛେ ) ରୂପେ ତୁମ୍ଭର ଯେପରି ( ଦୀର୍ଘମ ) ଦୀର୍ଘକାଳ ପର୍ଯ୍ୟନ୍ତ ( ଆୟୁଃ ) ଜୀବନ ( ଆସଃ ) ସ୍ଥାୟୀହେବ ସେହିପ୍ରକାର ( ପ୍ର ବୁଧସ୍ୱ ) ପ୍ରକୃଷ୍ଟଜ୍ଞାନ ଏବଂ ଉତ୍ତମ ବ୍ୟବହାରକୁ ଠିକ୍ ଭାବରେ ଜାଣିରଖ, ନିଜର ଏହି ଆଶାକୁ ( ସବିତା ) ସର୍ବସ୍ରଷ୍ଟା ଜଗତର ଉତ୍ପତ୍ତିକର୍ତ୍ତା ଏବଂ ଐଶ୍ୱର୍ଯ୍ୟଦାତା ପରମାତ୍ମା ( କୃଣୋତୁ ) ନିଜକୃପାରେ ସମ୍ପାଦିତ କରନ୍ତୁ ଯଦ୍ୱାରା ତୁମେ ଏବଂ ମୁଁ ସବୁବେଳେ ଜ୍ଞାନଶୀଳ ହୋଇ ଆନନ୍ଦରେ ବାସ କରିବା ॥୧୩॥

ହେ ଗୃହସ୍ଥମାନେ ! ମୁଁ ଈଶ୍ୱର ତୁମମାନଙ୍କୁ ଯେପରି ଆଜ୍ଞା ଦେଉଛି, ବର୍ତ୍ତମାନ୍ ତୁମ୍ଭେମାନେ ସେହିପରି କର୍ମ ଆଚରଣ କର ସେଥିରୁ ତୁମ୍ଭମାନଙ୍କୁ ଅକ୍ଷୟସୁଖ ପ୍ରାପ୍ତହେବ ଅର୍ଥାତ୍ ( ବ )ତୁମ୍ଭମାନଙ୍କ ( ସହୃଦୟମ୍ ) ପର ନିଜପାଇଁ

ସୁଖ ଇଚ୍ଛା କରୁଥିବା ଏବଂ ଦୁଃଖକାମନା କରୁଥିବା ମାତା, ପିତା, ସଂତାନ, ସ୍ତ୍ରୀ, ପୁରୁଷ, ଭୃତ୍ୟ, ମିତ୍ର, ପଡ଼ୋଶୀ ଏବଂ ଅନ୍ୟ ସମସ୍ତଙ୍କଠାରେ ସମାନ ହୃଦୟ ନେଇ ରୁହ । ଅର୍ଥାତ୍ ସମସ୍ତଙ୍କ ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର କର । (ସାଂମନସ୍ୟମ୍) ମନରେ ସମ୍ୟକ୍ ପ୍ରସନ୍ନତା ଏବଂ (ଅବିଦ୍ୱେଷମ୍) ବୈରବିରୋଧ ଆଦି ରହିତ ବ୍ୟବହାରକୁ ତୁମ୍ଭମାନଙ୍କ ଉଦ୍ଦେଶ୍ୟରେ (କୃଣୋମି) ସ୍ଥିର କରୁଅଛି, ତୁମେ (ଅଘ୍ନ୍ୟା) ହନନ କରିବାର ଅଯୋଗ୍ୟ ଗାଈ ବତ୍ସଂ ଜାତମିବ) ଉତ୍ପନ୍ନ ବତ୍ସଠାରେ ଯେପରି ବାତ୍ସଲ୍ୟପୂର୍ଣ୍ଣ ବ୍ୟବହାର କରେ, ସେହିପରି [ଅନ୍ୟୋ ଅନ୍ୟମ୍] ପରସ୍ପର-ଠାରେ (ଅଭି ହର୍ଯ୍ୟତ) ପ୍ରିୟ କାମନା ପୂର୍ବକ ବ୍ୟବହାର କର ॥୧୮॥

ଅନୁବ୍ରତଃ ପିତୁଃ ପୁତ୍ରୋ ମାତ୍ରା ଭବତୁ ସଂମନାଃ ।
ଜାୟା ପତ୍ୟେ ମଧୁମତୀଂ ବାଚଂ ବଦତୁ ଶନ୍ତିବାନ୍ ॥୧୯॥

ମା ଭ୍ରାତା ଭ୍ରାତରଂ ଦ୍ୱିକ୍ଷନ୍ମା ସ୍ୱସାରମୁତ ସ୍ୱସା ।
ସମ୍ୟଞ୍ଚଃ ସବ୍ରତା ଭୂତ୍ୱା ବାଚଂ ବଦତ ଭଦ୍ରୟା ॥୨୦॥

(ଅଥର୍ବ· କାଂ. ୩।ସୂ. ୩୦।ମଂ. ୨,୩ ॥)

ଅର୍ଥ:—ହେ ଗୃହସ୍ଥମାନେ ! ଯେପରି ତୁମର (ପୁତ୍ରଃ) ପୁତ୍ର (ମାତ୍ରା) ନିଜର ମା' ସହିତ (ସଂମନାଃ) ପ୍ରୀତିଯୁକ୍ତ ମନସମ୍ପନ୍ନ (ଅନୁବ୍ରତ) ଅନୁକୂଳ ଆଚରଣଯୁକ୍ତ (ପିତୁଃ)

ଏବଂ ପିତାଙ୍କ ବଶଗୁଣରେ ମଧ୍ୟ ଏହିପରି ଶ୍ରଦ୍ଧାଯୁକ୍ତ ( ଭବନ୍ତୁ ) ହୁଅ, ସେହି ଦୃଷ୍ଟିରୁ ତୁମେ ମଧ୍ୟ ପୁତ୍ରମାନଙ୍କ ସହିତ ସବୁ-ବେଳେ ସ୍ନେହପୂର୍ଣ୍ଣ ବ୍ୟବହାର କର । ଯେପରି ( ଜାୟା ) ସ୍ତ୍ରୀ ପତ୍ନୀ ) ପତିଙ୍କର ପ୍ରସନ୍ନତା ନିମନ୍ତେ ( ମଧୁମତୀମ୍ ) ମାଧୁର୍ଯ୍ୟ ଗୁଣଯୁକ୍ତ ( ବାଚମ୍ ) ବାଣୀ ( ବଦତୁ ) କହିବ ସେହିପରି ପତି ମଧ୍ୟ ( ଶନ୍ତିବାନ୍ ) ଶାନ୍ତ ଭାବରେ ନିଜର ପତ୍ନୀଙ୍କ ସହିତ ସବୁବେଳେ ମଧୁର ଭାଷଣ କରନ୍ତୁ ॥୧୫॥

ହେ ଗୃହସ୍ଥମାନେ ! ତୁମ୍ଭମାନଙ୍କ ମଧ୍ୟରେ ( ଭ୍ରାତା ) ଭାଇ ( ଭ୍ରାତରମ୍ ) ଭାଇ ସହିତ ( ମା ଦ୍ୱିକ୍ଷନ୍ ) କଦାପି ଦ୍ୱେଷ ନକରୁ, ( ଉତ ଏବଂ ( ସ୍ୱସା ) ଭଉଣୀ ' ସ୍ୱସାରମ୍ ] ଭଉଣୀ ସହିତ କଦାପି ଦ୍ୱେଷ ( ମା ) ନକରୁ ତଥା ଭାଇ ଭଉଣୀ ମଧ୍ୟରେ ବି ପରସ୍ପର ପ୍ରତି ଦ୍ୱେଷଭାବ ନରହୁ କିନ୍ତୁ [ସମ୍ୟଞ୍ଚଃ] ସମ୍ୟକ୍ ପ୍ରେମାଦି ଗୁଣଯୁକ୍ତ ହୋଇ ଏବଂ (ସବ୍ରତାଃ) ସମାନ ଗୁଣକର୍ମ ସ୍ୱଭାବଯୁକ୍ତ ( ଭୂତ୍ୱା ) ହୋଇ ( ଭଦ୍ରୟା ) ମଙ୍ଗଳକାରକ ନୟମାନ ସହିତ ଜଣେ ଅନ୍ୟ ଜଣଙ୍କ ସହିତ ( ବାଚମ୍ ) ସୁଖଦାୟକ ଭାଷାରେ ( ବଦତ ) କଥାବାର୍ତ୍ତା କର ॥୧୬॥

**ଯେନ ଦେବା ନ ବିୟନ୍ତି ନୋ ଚ ବିଦ୍ୱିଷତେ ମିଥଃ ।**
**ତତ୍କୃଣ୍ମୋ ବ୍ରହ୍ମ ବୋ ଗୃହେ ସଂଜ୍ଞାନଂ ପୁରୁଷେଭ୍ୟଃ ॥୧୭॥**

( ଅଥର୍ବ. କା°. ୩. ଅନୁ. ୩୦।ମ°.୪ ॥ )

ଅର୍ଥ:– ହେ ଗୃହସ୍ଥଗଣ ! ମୁଁ ଈଶ୍ୱର ( ଯେନ ) ଯେଉଁ ପ୍ରକାର ବ୍ୟବହାର ଦ୍ୱାରା ( ଦେବାଃ ) ବିଦ୍ୱାନ୍ ଲୋକ (ମିଥଃ) ପରସ୍ପର [ନ, ବିଯନ୍ତି] ପରସ୍ପର ସହିତ କଦାପି ଦ୍ୱେଷ କରନ୍ତି ନାହିଁ, [ ତତ୍ ] ସେହି କର୍ମ [ ବଃ ] ତୁମ୍ଭମାନଙ୍କ [ଗୃହେ] ଗୃହରେ [ କୃଣ୍ମଃ ] ନିଶ୍ଚିତ କରୁଅଛୁ । [ ପୁରୁଷେଭ୍ୟଃ ] ପୁରୁଷମାନଙ୍କୁ [ ସଂଜ୍ଞାନମ୍ ] ଉତ୍ତମରୂପେ ଚେତାଇ ଦେଉଛୁ, ଯଦ୍ୱାରା ସେମାନେ ପରସ୍ପର ସହିତ ପ୍ରୀତିପୂର୍ବକ ବ୍ୟବହାର କରି ବହୁତ [ ବ୍ରହ୍ମ ] ଧନ ଐଶ୍ୱର୍ଯ୍ୟ ପ୍ରାପ୍ତ ହେବେ ।।୧୭।।

ଜ୍ୟାୟସ୍ୱନ୍ତଶ୍ଚିତ୍ତିନୋ ମା ବି ଯୌଷ୍ଟ ସଂରାଧୟନ୍ତଃ ସଧୁରାଶ୍ଚରନ୍ତଃ । ଅନ୍ୟୋ ଅନ୍ୟସ୍ମୈ ବଲ୍‌ଗୁ ବଦନ୍ତ ଏତ ସଧ୍ରୀଚୀନାନ୍ୱଃ ସଂମନସସ୍କୃଣୋମି ।।୧୮।।

ଅଥର୍ବ. କାଂ. ୩ ସୂ. ୩୦।ମଂ. ୫ ।। ]

ଅର୍ଥ:– ହେ ଗୃହସ୍ଥାଦି ମନୁଷ୍ୟଗଣ ! ତୁମ୍ଭମାନେ [ଜ୍ୟାୟସ୍ୱନ୍ତଃ] ଉତ୍ତମ ବିଦ୍ୟାଦି ଗୁଣଯୁକ୍ତ [ ଚିତ୍ତିନଃ ] ବିଦ୍ୱାନ୍ ସଜ୍ଜନ [ ସଧୁରାଃ ] ଧୁରନ୍ଧର ହୋଇ ଚରଂତଃ ବିଚରଣ କରିବା ସଙ୍ଗେ ସଙ୍ଗେ [ ସଂରାଧୟଂତଃ ପରସ୍ପର ମିଳିମିଶି ଧନ, ଧାନ୍ୟ ରାଜ୍ୟ ଓ ସମୃଦ୍ଧି ପ୍ରାପ୍ତହୋଇ [ ମା ବିଯୌଷ୍ଟ ] ପରସ୍ପର ମଧ୍ୟରେ ବିରୋଧ ଭାବ ବା ପୃଥକ୍ ପୃଥକ୍ ଭାବ ରଖନାହିଁ । [ ଅନ୍ୟଃ ] ଜଣେ [ ଅନ୍ୟସ୍ମୈ ] ଅନ୍ୟ ଜଣଙ୍କ ସହିତ [ ବଲ୍‌ଗୁ ] ସତ୍ୟ ମଧୁରଭାଷା [ ବଦଂତଃ ] କହିବା

ସଙ୍ଗେ ସଙ୍ଗେ ଜଣେ ଅନ୍ୟଜଣଙ୍କୁ [ଏତ] ପ୍ରାପ୍ତହୁଅ, ଏଣୁ [ସଧ୍ରୀଚୀନାନ୍] ସମାନ ଲାଭଲାଭରେ [ବଃ] ତୁମ୍ଭମାନଙ୍କୁ ପରସ୍ପରର ସହାୟକ ଓ [ସଂମନସଃ] ଏକ ମନଯୁକ୍ତ [କୃଣୋମି] କରୁଅଛି । ଅର୍ଥାତ୍ ମୁଁ ଈଶ୍ୱର ତୁମ୍ଭମାନଙ୍କୁ ଯେପରି ଆଜ୍ଞା ଦେଉଛି, ନିରଳସ ଭାବରେ ତାହାହିଁ କର ॥୧୮॥

ସମାନୀ ପ୍ରପା ସହ ବୋଽନ୍ନଭାଗଃ ସମାନେ ଯୋକ୍ତ୍ରେ ସହ ବୋ ଯୁନଜ୍ମି । ସମ୍ୟଞ୍ଚୋଽଗ୍ନିଂ ସପର୍ୟତାରା ନାଭିମିବାଭିତଃ ॥୧୯॥

ସଧ୍ରୀଚୀନାନ୍ବଃ ସଂମନସସ୍କୃଣୋମ୍ୟେକଶ୍ରୁଷ୍ଟୀନ୍ତ୍ସଂ-ବନନେନ ସର୍ବାନ୍ । ଦେବା ଇବାମୃତଂ ରକ୍ଷମାଣାଃ ସାୟଂ ପ୍ରାତଃ ସୌମନସୋ ବୋ ଅସ୍ତୁ ॥୨୦॥

[ ଅଥର୍ବ. ୩।୩୦।୬ ୭ ॥ ]

ଅର୍ଥ:—ହେ ଗୃହସ୍ଥାଦି ମନୁଷ୍ୟଗଣ ! ମୁଁ ଈଶ୍ୱର ଆଜ୍ଞାଦେଉଛି ଯେ ତୁମ୍ଭମାନଙ୍କର (ପ୍ରପା) ଜଳପାନ ସ୍ନାନାଦିର ସ୍ଥାନ (ସମାନୀ) ଏକପ୍ରକାର ହେଉ, (ବଃ) ତୁମ୍ଭମାନଙ୍କର (ଅନ୍ନଭାଗଃ) ଖାଦ୍ୟପେୟ ବ୍ୟବସ୍ଥା (ସହ) ଏକସଙ୍ଗରେ ହେଉ । (ବଃ) ତୁମ୍ଭମାନଙ୍କର (ସମାନେ) ଏକପ୍ରକାର (ଯୋକ୍ତ୍ରେ) ଅଶ୍ୱାଦିଯାନରେ ଯାତ୍ରା କରୁଥିବା (ସହ)



ବ୍ୟକ୍ତି ସଙ୍ଗୀ ହୁଅନ୍ତୁ । ଏବଂ ତୁମ୍ଭମାନଙ୍କୁ ମଧ୍ୟ ମୁଁ ଧର୍ମଯୁକ୍ତ ବ୍ୟବହାରରେ ଏକୀଭୂତ କରି ( ଯୁନଜ୍ମି ) ନିଯୁକ୍ତ କରୁଅଛି । ଯେପରି ( ଅରାଃ ) ଚକର ଅରଗୁଡିକ ( ଅଭିତଃ ) ଚତୁର୍ଦ୍ଦିଗରୁ ( ନାଭମିବ ) ମଝିରେ ନାଭି ରୂପକ କାଠ-ସହିତ ଲାଗିରହିଥା'ନ୍ତି ଅଥବା ଯେପରି ଋତ୍ୱିକ୍‌ମାନେ ଏବଂ ଯଜମାନ ଯଜ୍ଞରେ ମିଳିତ ଭାବରେ ( ଅଗ୍ନିମ୍ ) ଅଗ୍ନି-ଆଦି ସେବନଦ୍ୱାରା ଜଗତର ଉପକାର କରନ୍ତି, ସେହିପରି ( ସମ୍ୟଞ୍ଚଃ ) ସମ୍ୟକ୍ ଭାବରେ ପ୍ରାପ୍ତ ହୋଇଥିବା ତୁମ୍ଭେ-ମାନେ ମିଳିମିଶି ଧର୍ମଯୁକ୍ତ କର୍ମକୁ ( ସପର୍ଯ୍ୟତଃ ) ପରସ୍ପରର ହିତନିମନ୍ତେ ସିଦ୍ଧକର ॥୧୯॥

ହେ ଗୃହସ୍ଥାଦି ମନୁଷ୍ୟଗଣ ! ମୁଁ ଈଶ୍ୱର ( ବଃ ) ତୁମ୍ଭମାନଙ୍କୁ ( ସଧ୍ରୀଚୀନାନ୍ ) ସହ ବର୍ତ୍ତମାନ୍, ( ସମନସଃ ) ପରସ୍ପର ନିମନ୍ତେ ହିତୈଷୀ, ( ଏକଶ୍ରୁଷ୍ଟୀନ୍ ) ଗୋଟିଏ ମାତ୍ର ଧର୍ମକୃତ୍ୟରେ ଶୀଘ୍ର ପ୍ରବୃତ୍ତିଶୀଳ, ( ସର୍ବାନ୍ ) ସମସ୍ତଙ୍କୁ ( ସଂବନନେନ ) ଧର୍ମକୃତ୍ୟ ସେବନ ସହିତ ଜଣେ ଅନ୍ୟ-ଜଣଙ୍କର ଉପକାର କରିବା ନିମନ୍ତେ ନିଯୁକ୍ତ ( କୃଣୋମି ) କରୁଅଛି । ତୁମ୍ଭେମାନେ ( ଦେବାଃ ଇବ ) ବିଦ୍ୱାନ୍ ମାନଙ୍କ-ପରି ( ଅମୃତମ୍ ) ବ୍ୟବହାରିକ ତଥା ପାରମାର୍ଥିକ ସୁଖକୁ ( ରକ୍ଷମାଣାଃ ) ରକ୍ଷାକରିବା ସଙ୍ଗେ ସଙ୍ଗେ ( ସାୟଂପ୍ରାତଃ ) ସନ୍ଧ୍ୟା ଏବଂ ପ୍ରାତଃ ସମୟରେ ଅର୍ଥାତ୍ ସବୁ ସମୟରେ ପରସ୍ପର ସହିତ ଶ୍ରଦ୍ଧାର ସହିତ ମିଳିତ ହୁଅ । ଏହିପରି କର୍ମ ଆଚରଣ ସହିତ ( ବଃ ) ତୁମ୍ଭମାନଙ୍କର (ସୌମନସଃ) ମନର ଆନନ୍ଦଯୁକ୍ତ ଶୁଦ୍ଧଭାବ ( ଅସ୍ତୁ ) ଚିରସ୍ଥାୟୀ ହେଉ ॥୨୦॥



ଶ୍ରମେଣ ତପସା ସୃଷ୍ଟା ବ୍ରହ୍ମଣା ବିତ୍ତ ଋତେ ଶ୍ରିତାଃ ॥୨୧॥

ସତ୍ୟେନାବୃତାଃ ଶ୍ରିୟା ପ୍ରାବୃତା ଯଶସା ପରୀବୃତାଃ ॥୨୨॥

ସ୍ୱଧୟା ପରିହିତାଃ ଶ୍ରଦ୍ଧୟା ପର୍ଯ୍ୟୂଢ଼ା ଦୀକ୍ଷୟା ଗୁପ୍ତା ଯଜ୍ଞେ ପ୍ରତିଷ୍ଠିତା ଲୋକୋ ନିଧନମ୍ ॥୨୩॥

( ଅଥର୍ବ. କାଂ. ୧୨।ସୂ. ୫।ମଂ. ୧ ୩ ॥ )

**ଅର୍ଥ:** – ହେ ସ୍ତ୍ରୀ ପୁରୁଷଗଣ ! ମୁଁ ଈଶ୍ୱର ତୁମ୍ଭମାନଙ୍କୁ ଆଜ୍ଞା ଦେଉଅଛି ଯେ ତୁମେମାନେ ଧର୍ମଯୁକ୍ତ ଗୃହସ୍ଥଗଣ ( ଶ୍ରମେଣ ) **ପରି**ଶ୍ରମ ତଥା ( ତପସା ) ପ୍ରାଣାୟାମ ସାଧନା ସହିତ ( ସୃଷ୍ଟାଃ ) ସଂଯୁକ୍ତ, ( ବ୍ରହ୍ମଣା ) ବେଦବିଦ୍ୟା ପରମାତ୍ମା ଏବଂ ଧନାଦି ସହିତ ( ବିତ୍ତେ ) ଭୋଗ୍ୟ ଧନାଦି ପ୍ରାପ୍ତିର ପ୍ରଯ-ତ୍ନରେ ଏବଂ ( ଋତେ ) ଯଥାର୍ଥ ପକ୍ଷପାତରହିତ ନ୍ୟାୟ-ରୂପକ ଧର୍ମମାର୍ଗରେ ( ଶ୍ରିତାଃ ) ସର୍ବଦା ପଥିକ ହୁଅ ॥୨୧॥

(ସତ୍ୟେନ) ସତ୍ୟଭାଷଣାଦି କର୍ମଗୁଡ଼ିକ ଦ୍ୱାରା (ଆବୃତାଃ) ଚତୁର୍ଦ୍ଦିଗରୁ ଯୁକ୍ତ, ( ଶ୍ରିୟା ) ଶୋଭାମୟୀ ଲକ୍ଷ୍ମୀଙ୍କ ସହିତ ( ପ୍ରବୃତାଃ ) ଯୁକ୍ତ ( ଯଶସା ) କୀର୍ତ୍ତି ଏବଂ ଧର୍ମସହିତ ( ପରିବୃତାଃ ) ଚତୁର୍ଦ୍ଦିଗରୁ ସଂଯୁକ୍ତ ହୁଅ ॥୨୨॥

( ସ୍ୱଧୟା ) ନିଜର ଅନ୍ନାଦି ପଦାର୍ଥର ଧାରଣ ସହିତ ( ପରିହିତାଃ ) ସମସ୍ତଙ୍କର ହିତକାରୀ, ( ଶ୍ରଦ୍ଧୟା ) ସତ୍ୟ-ଧାରଣରେ ଶ୍ରଦ୍ଧାହେତୁ ( ପର୍ଯ୍ୟୂଢା ) ସବୁଦିଗରୁ ସମସ୍ତଙ୍କୁ ସତ୍ୟାଚରଣ ପ୍ରଦାନକାରୀ ( ଦୀକ୍ଷୟା ) ନାନାପ୍ରକାର ବ୍ରହ୍ମ-ଚର୍ଯ୍ୟ ସତ୍ୟଭାଷଣାଦି ବ୍ରତ ଧାରଣରେ ( ଗୁପ୍ତାଃ ) ସୁରକ୍ଷିତ ( ଯଜ୍ଞ ) ବିଦ୍ୱାନ୍ ମାନଙ୍କର ସତ୍କାର, ଶିଳ୍ପବିଦ୍ୟା, ଏବଂ ଶୁଭଗୁଣ ବିତରଣରେ ( ପ୍ରତିଷ୍ଠିତାଃ ) ପ୍ରତିଷ୍ଠା ପ୍ରାପ୍ତହୁଅ ଏବଂ ଏ ସମସ୍ତ କର୍ମଦ୍ୱାରା ( ନିଧନମ୍ ଲୋକଃ ) ଏହି ମନୁଷ୍ୟ ଲୋକକୁ ପ୍ରାପ୍ତହୋଇ ମୃତ୍ୟୁ ପର୍ଯ୍ୟନ୍ତ ସଦା ଆନନ୍ଦରେ ରୁହ ॥୨୩॥

**ଓଜଶ୍ଚ ତେଜଶ୍ଚ ସହଶ୍ଚ ବଲଞ୍ଚ ବାକ୍ ଚେନ୍ଦ୍ରିୟଂ ଚ ଶ୍ରୀଶ୍ଚ ଧର୍ମଶ୍ଚ ॥୨୪॥** ( ଅଥର୍ବ. କାଂ.୧୨।ସୂ.୫।ମଂ.୭ ॥ )

**ଅର୍ଥ:**– ହେ ମନୁଷ୍ୟଗଣ ! ତୁମ୍ଭେମାନେ ଯେଉଁ ( ଓଜଃ ) ପରାକ୍ରମ ( ଚ ) ଏବଂ ଏହାର ସାମଗ୍ରୀ ( ତେଜଃ ) ତେଜ-ସ୍ୱିତା ( ଚ ) ଏବଂ ଏହାର ସାମଗ୍ରୀ ( ସହ ) ସ୍ତୁତି, ନିନ୍ଦା, ହାନି, ଲାଭ ତଥା ଶୋକାଦି ସହନ କରିବାର ଶକ୍ତି ( ଚ ) ଏବଂ ତାହାର ସାଧନ ( ବଲଞ୍ଚ ) ବଳ ଏବଂ ତାହାର ସାଧନ ( ବାକ୍ ଚ ) ସତ୍ୟ, ପ୍ରିୟବାଣୀ ଏବଂ ତାହାର ଅନୁକୂଳ କର୍ମାଚରଣ ( ଇନ୍ଦ୍ରିୟଞ୍ଚ ) ଶାନ୍ତ, ଧର୍ମଯୁକ୍ତ ଅନ୍ତଃକରଣ ଏବଂ ଶୁଦ୍ଧାତ୍ମା ତଥା ଜିତେନ୍ଦ୍ରିୟତା ( ଶ୍ରୀଶ୍ଚ ) ଲକ୍ଷ୍ମୀ, ସମ୍ପତ୍ତି ଏବଂ ଏହାର ପ୍ରାପ୍ତି ନିମନ୍ତେ ଧର୍ମଯୁକ୍ତ ପ୍ରଚେଷ୍ଟା ( ଧର୍ମଶ୍ଚ ) ପକ୍ଷ-



ଯାତ ରକ୍ଷିତ ନ୍ୟାୟାଚରଣ, ବେଦୋକ୍ତ ଧର୍ମ ଏବଂ ଯାହାକଚ୍ଛି ଏଦ୍ୱାର ସାଧନ ବା ଲକ୍ଷଣ ରହିଛି, ତାହା ତୁମ୍ଭେମାନେ ପ୍ରାପ୍ତହୋଇ ସଦା ସର୍ବଦା ତଦ୍ରୂପ ଆଚରଣ କର ॥୨୪॥

ବ୍ରହ୍ମ ଚ କ୍ଷତ୍ରଂ ଚ ରାଷ୍ଟ୍ରଂ ଚ ବିଶଶ୍ଚ ତ୍ୱିଷିଶ୍ଚ
ଯଶଶ୍ଚ ବର୍ଚ୍ଚଶ୍ଚ ଦ୍ରବିଣଂ ଚ ॥୨୫॥

ଆୟୁଶ୍ଚ ରୂପଂ ଚ ନାମ ଚ କୀର୍ତ୍ତିଶ୍ଚ ପ୍ରାଣଶ୍ଚାପାନଶ୍ଚ
ଚକ୍ଷୁଶ୍ଚ ଶ୍ରୋତ୍ରଂ ଚ ॥୨୬॥

ପୟଶ୍ଚ ରସଶ୍ଚାନ୍ନଂ ଚାନ୍ନାଦ୍ୟଂ ଚ ଋତଂ ଚ ସତ୍ୟଂ
ଚେଷ୍ଟଂ ଚ ପୂର୍ତ୍ତଂ ଚ ପ୍ରଜା ଚ ପଶବଶ୍ଚ ॥୨୭॥

( ଅଥର୍ବ· କାଂ. ୧୨।ସୂ. ୫।ମଂ. ୮—୧୦ ॥ )

ଅର୍ଥ:—ହେ ଗୃହସ୍ଥାଦି ମନୁଷ୍ୟଗଣ ! ତୁମମାନଙ୍କର ଉପଯୁକ୍ତ କର୍ମ ହେଉଛି ( ବ୍ରହ୍ମଶ୍ଚ ) ପୂର୍ଣ୍ଣବିଦ୍ୟାଦି ଶୁଭ ଗୁଣଯୁକ୍ତ ମନୁଷ୍ୟ ଏବଂ ସମସ୍ତଙ୍କର ଉପକାରକ ଶମଦମାଦି ଗୁଣଯୁକ୍ତ ବ୍ରହ୍ମକୁଳ ( କ୍ଷତ୍ରଞ୍ଚ ) ବିଦ୍ୟାଦି ଉତ୍ତମ ଗୁଣଯୁକ୍ତ ତଥା ବିନୟ ଏବଂ ଶୌର୍ଯ୍ୟାଦି ଗୁଣଯୁକ୍ତ କ୍ଷତ୍ରିୟକୁଳ, ( ରାଷ୍ଟ୍ରଞ୍ଚ ) ରାଜ୍ୟ ଏବଂ ତାହାର ନ୍ୟାୟଯୁକ୍ତ ପାଳନ, ( ବିଶଶ୍ଚ ) ଉତ୍ତମ ପ୍ରଜା ଏବଂ ତାହାର ଉନ୍ନତି, ( ତ୍ୱିଷିଶ୍ଚ ) ସଦ୍‌ବିଦ୍ୟାଦି ଦ୍ୱାରା ତେଜ, ଆରୋଗ୍ୟ ଶରୀର ଏବଂ ଆତ୍ମାର ବଳରେ ପ୍ରକାଶମାନ



ଏବଂ ତାହାର ଉନ୍ନତିରେ (ଯଶସ୍ଵ) କୀର୍ତ୍ତିଯୁକ୍ତ ତଥା ତାହାର ସାଧନ ଗୁଡିକୁ ପ୍ରାପ୍ତହୁଅ । (ବର୍ଚସ୍ୱ) ପଠିତ ବିଦ୍ୟାର ବିସ୍ତର ଏବଂ ତାହାର ନିତ୍ୟପାଠ (ଦ୍ରବିଣସ୍ୱ) ଦ୍ରବ୍ୟୋପାର୍ଜନ ଏବଂ ତାହାର ରକ୍ଷଣାବେକ୍ଷଣ ତଥା ଧର୍ମଯୁକ୍ତ ପରୋପକାରରେ ବ୍ୟୟ ପ୍ରଭୃତି କର୍ମ ସର୍ବଦା ଆଚରଣ କର ॥୨୫॥

ହେ ସ୍ତ୍ରୀ ପୁରୁଷଗଣ ! ତୁମେମାନେ ନିଜର (ଅ.ୟୁ) ଜୀବନକୁ ଦୀର୍ଘସ୍ଥାୟୀ କର, (ଚ) ଏବଂ ଜୀବନଦ୍ୱାରା ଧର୍ମଯୁକ୍ତ ଉତ୍ତମ କର୍ମ ହିଁ ଆଚରଣ କର । (ରୂପସ୍ୱ) ବିଷୟାସକ୍ତି, କୁପଥ୍ୟସେବା ଏବଂ ଅଧର୍ମାଚରଣକୁ ତ୍ୟାଗକରି ନିଜର ସ୍ୱରୂପକୁ ସ୍ୱଚ୍ଛ ରଖ ଏବଂ ବସ୍ତ୍ରାଳଂକାର ମଧ୍ୟ ଧାରଣ କର । (ନା ମ ଚ) ନାମକରଣ ସଂସ୍କାରର ପୃଷ୍ଠା ୮୫–୯୧ ଲିଖିତ ପ୍ରମାଣ ଅନୁସାରେ ଶାସ୍ତ୍ରୋକ୍ତ ସଂଜ୍ଞା ଧାରଣ ଏବଂ ତାହାର ନିୟମ ଗୁଡିକୁ ମଧ୍ୟ (ତଥା) (କୀର୍ତ୍ତିସ୍ୱ) ସତ୍ୟାଚରଣ ଦ୍ୱାରା ପ୍ରଶଂସା ଧାରଣ କର ଏବଂ ଗୁଣରେ ଦୋଷାରୋପଣ ରୂପକ ନିନ୍ଦା ତ୍ୟାଗକର । (ପ୍ରାଣସ୍ୱ) ଚିରକାଳ ପର୍ଯ୍ୟନ୍ତ ଜୀବନଧାରଣ ଏବଂ ଯୁକ୍ତାହାର ବିହାରାଦି ସାଧନ (ଅପାନସ୍ୱ) ସମସ୍ତ ଦୁଃଖ ଦୂର କରିବା ଉପାୟ ଏବଂ ତାହାର ସାମଗ୍ରୀ (ଚକ୍ଷୁସ୍ୱ) ପ୍ରତ୍ୟକ୍ଷ ଏବଂ ଅନୁମାନ, ଉପମାନ (ଶ୍ରୋତ୍ରସ୍ୱ) ଶବ୍ଦ ପ୍ରମାଣ ଏବଂ ତାହାର ସାମଗ୍ରୀକୁ ଧାରଣ କର ॥୨୬॥

ହେ ଗୃହସ୍ଥଗଣ ! (ପୟସ୍ୱ) ଉତ୍ତମ ଜଳ, ଦୁଗ୍ଧ ଏବଂ ତାହାର ସାଧନ ତଥା ଯୁକ୍ତିଯୁକ୍ତ ଭାବରେ ତାହାର

ସେବନ ( ରସଷ୍ଣ ) ଘୃତ, ଦୁଗ୍ଧ, ମଧୁ ପ୍ରଭୃତି ଏବଂ ଯୁକ୍ତିଯୁକ୍ତ ଭାବରେ ତାହାର ସେବନ ( ଅନ୍ନଷ୍ଣ ) ଉତ୍ତମ ଗୁଡ଼ଳ ପ୍ରଭୃତି ଅନ୍ନ ଏବଂ ତାହାର ଉତ୍ତମ ସଂସ୍କାର କରାଯାଇଥିବା ( ଅନ୍ନାଦ୍ୟଷ୍ଣ ) ଖାଇବା ଯୋଗ୍ୟ ପଦାର୍ଥ ଏବଂ ତାହା ସହିତ ଉତ୍ତମ ଡାଲି, ତରକାରି, ଶାଗ ପ୍ରଭୃତି ( ଋତଷ୍ଣ ) ସତ୍ୟ ମାନିବା ତଥା ସତ୍ୟ ମନେ ବା, (ସତ୍ୟଷ୍ଣ) ମନ୍ତ୍ର କହିବା ତଥା ସତ୍ୟ କୁହାଇବା ( ଇଷ୍ଟଷ୍ଣ ) ଯଜ୍ଞ କରିବା ଏବଂ ଯଜ୍ଞ କରାଇବା ( ପୂର୍ତ୍ତଷ୍ଣ ) ଯଜ୍ଞର ସାମଗ୍ରୀ ପୂର୍ତ୍ତିକରିବା ତଥା ଜଳାଶୟ ଏବଂ ବିଶ୍ରାମ ଉଦ୍ୟାନ ପ୍ରଭୃତି ତିଆରି କରିବା ତଥା କରାଇବା ( ପଶବଷ୍ଣ ) ଗାଈ ପ୍ରଭୃତି ପଶୁପାଳନ ଏବଂ ଉନ୍ନତି ସବୁବେଳେ କରିବା ଓ କରାଇବା ଉଚିତ ॥ ୬॥

**କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଁ ସମାଃ ।**
**ଏବଂ ତ୍ୱୟି ନାନ୍ୟଥେତୋଽସ୍ତି ନ କର୍ମ ଲିପ୍ୟତେ ନରେ ॥୧॥** ( ଯଜୁ. ଅ. ୪୦।ମଂ. ୨ ॥ )

**ଅର୍ଥ:**—ମୁଁ ପରମାତ୍ମା ସମସ୍ତ ମନୁଷ୍ୟ ସମାଜକୁ ଏହି ଆଜ୍ଞା ଦେଉଅଛି ଯେ, ପ୍ରତ୍ୟେକ ମନୁଷ୍ୟ ( ଇହ ) ଏହି ସଂସାରରେ ସମର୍ଥ ଶରୀରଯୁକ୍ତ ହୋଇ ( କର୍ମାଣି ) ସତ୍କର୍ମ [କୁର୍ବନ୍ନେବ] ଆଚରଣ କରି [ ଶତଂ ସମାଃ ] ଏକଶହ ବର୍ଷ ପର୍ଯ୍ୟନ୍ତ [ଜିଜୀବିଷେତ୍] ବଞ୍ଚିରହିବା ପାଇଁ ଇଚ୍ଛାକରିବା ଉଚିତ୍ । ଆଳସ୍ୟ ପ୍ରମାଦ ତ୍ୟାଗକରିବା ଉଚିତ । [ଏବମ୍] ଏହିପରି ଉତ୍ତମ

କର୍ମ କରୁ କରୁ [ଇଷ୍ଟି ନରେ] ହେ ମନୁଷ୍ୟ, ତୋ ଠାରେ [ଇତଃ] ଏହି କାରଣରୁ [ଅନ୍ୟଥା] ବିପରୀତ ପାପରୂପକ [କର୍ମ] ଦୁଃଖଦକର୍ମ [ନ ଲିପ୍ୟତେ] କଦାପି ଲିପ୍ୟମାନ ହୁଏନାହିଁ । ତୁମ୍ଭେମାନେ ପାପକର୍ମରେ କଦାପି ଲିପ୍ତ ହୁଅନାହିଁ, ଏହି ଉତ୍ତମ କର୍ମ ଆଚରଣରେ ଆଦୌ ଦୁଃଖ [ନାସ୍ତି] ହୁଏନାହିଁ । ଅତଏବ ତୁମେ ସ୍ତ୍ରୀ ପୁରୁଷ ସବୁବେଳେ ପୁରୁଷାର୍ଥୀ ହୋଇ ଉତ୍ତମ କର୍ମାଚରଣ ଦ୍ୱାରା ନିଜର ଏବଂ ଅନ୍ୟମାନ-ଙ୍କର ସର୍ବଦା ଉନ୍ନତି କର ॥୧॥

ପୁନଶ୍ଚ ସ୍ତ୍ରୀ ପୁରୁଷ ସର୍ବଦା ନିମ୍ନଲିଖିତ ମନ୍ତ୍ରମାନଙ୍କର ଅନୁକୂଳ ଇଚ୍ଛା ଏବଂ ଆଚରଣ କରିବା ଆବଶ୍ୟକ ।

ଭୂର୍ଭୁବଃ ସ୍ୱଃ ସୁପ୍ରଜାଃ ପ୍ରଜାଭିଃ ସ୍ୟାଂ ସୁବୀରୋ ବୀରୈଃ ସୁପୋଷଃ ପୋଷୈଃ । ନର୍ଯ୍ୟ ପ୍ରଜାଂ ମେ ପାହି ଶଁସ୍ୟ ପଶୂନ୍ ମେ ପାହ୍ୟଥର୍ଯ୍ୟ ପିତୁଂ ମେ ପାହି ॥୨॥

ଗୃହା ମା ବିଭୀତ ମ ବେପଧ୍ୱମୂର୍ଜଂ ବିଭ୍ରତ ଏମସି । ଊର୍ଜଂ ବିଭ୍ରଦ୍ୱଃ ସୁମନାଃ ସୁମେଧା ଗୃହାନୈମି ମନସା ମୋଦମାନଃ ॥୩॥

[ ଯଜୁ. ଅ. ୩।ମଂ. ୩୭, ୪୧ ॥ ]

**ଅର୍ଥ:**—ହେ ସ୍ତ୍ରୀ କମ୍ବା ପୁରୁଷ ! ମୁଁ ତୁମର କମ୍ବା ନିଜ ସମ୍ବନ୍ଧରେ [ ଭୂର୍ଭୁବଃ ସ୍ୱଃ ] ଶାରୀରିକ, ବାଚିକ ଏବଂ ମାନସିକ ଅର୍ଥାତ୍ ତ୍ରିବିଧ ସୁଖରେ ଯୁକ୍ତହୋଇ [ ପ୍ରଜାଭିଃ ] ମନୁଷ୍ୟାଦି ଉତ୍ତମ ପ୍ରଜାମାନଙ୍କ ସହିତ [ ସୁପ୍ରଜାଃ ] ଉତ୍ତମ ପ୍ରଜାଯୁକ୍ତ [ ସ୍ୟାମ୍ ] ହୁଏ । [ ବୀରୈଃ ] ଉତ୍ତମ ପୁତ୍ର ବନ୍ଧୁ ସଂବନ୍ଧୀ ଏବଂ ଭୃତ୍ୟଗଣଙ୍କ ସହିତ ବର୍ତ୍ତମାନ, [ ସୁବୀରଃ ] ଉତ୍ତମ ବୀରଯୁକ୍ତ ହୁଏ । [ ପୋଷୈଃ ] ଉତ୍ତମ ପୁଷ୍ଟିକାରକ ବ୍ୟବହାର ଦ୍ୱାରା [ ସୁପୋଷଃ ] ଉତ୍ତମ ପୁଷ୍ଟିଯୁକ୍ତ ହୁଏ । ହେ [ନର୍ଯ୍ୟ] ମନୁଷ୍ୟ ମାନଙ୍କ ମଧ୍ୟରେ ସଜ୍ଜନ ବୀର ସ୍ୱାମିନ୍ ! [ ମେ ] ମୋର [ ପ୍ରଜାମ୍ ] ପ୍ରଜାଙ୍କୁ [ପାହି] ରକ୍ଷା କରନ୍ତୁ । ହେ [ଶଂସ୍ୟ] ପ୍ରଶଂସନୀୟ ସ୍ୱାମିନ୍ ! ଆପଣ [ମେ] ମୋର [ପଶୂନ୍] ପଶୁମାନଙ୍କୁ [ପାହି] ରକ୍ଷା କରନ୍ତୁ । ହେ (ଅଥର୍ଯ୍ୟ) ଅହିଂସକ ଦୟାଳୁ ସ୍ୱାମିନ୍ ! ( ମେ ) ମୋର ( ପିତୁମ୍ ) ଅନ୍ନ ପ୍ରଭୃତିକୁ ( ପାହି ) ରକ୍ଷାକରନ୍ତୁ । ସେହିପରି ହେ ନାରୀ ! ପ୍ରଶଂସନୀୟ ଗୁଣଯୁକ୍ତ ତୁମେ ମୋର ପ୍ରଜା, ମୋର ଅନ୍ନକୁ ସବୁବେଳେ ରକ୍ଷାକର ।।୨।।

ହେ ( ଗୃହାଃ ) ଗୃହସ୍ଥଗଣ ! ତୁମ୍ଭେମାନେ ବିଧିପୂର୍ବକ ଗୃହସ୍ଥାଶ୍ରମରେ ପ୍ରବେଶ କରିବାପାଇଁ ( ମା ବିଭୀତ ) ଭୟ କରନାହିଁ । ( ମା ବେପଧ୍ୱମ୍ ) କମ୍ପାୟମାନ ହୁଅନାହିଁ (ଉର୍ଜ୍ଜମ୍) ଅନ୍ନ, ପରାକ୍ରମ ତଥା ବିଦ୍ୟାଦି ଶୁଭଗୁଣଯୁକ୍ତହୋଇ ଗୃହାଶ୍ରମକୁ ( ବିଭ୍ରତଃ ) ଧାରଣ କରି ତୁମ୍ଭମାନଙ୍କୁ ଆମ୍ଭେ ସତ୍ୟୋପଦେଶକ ବିଦ୍ୱାନ୍‌ଗଣ ( ଏମସି ) ପ୍ରାପ୍ତ ହେଉଅଛୁ ଏବଂ ସତ୍ୟୋପଦେଶ କରୁଅଛୁ ତଥା ଅନ୍ନପାନାଚ୍ଛାଦନ ସ୍ଥାନ

ଦ୍ୱାରା ତୁମେ ହିଁ ଆମର ନିର୍ବାହ କରୁଅଛ, ଅତଏବ ତୁମ୍ଭ-ମାନଙ୍କର ଗୃହାଶ୍ରମରେ ନିବାସ ସର୍ବୋତ୍କୃଷ୍ଟ ଅଟେ । ହେ ବରାନନେ ! ଯେପରି ମୁଁ ତୁମ୍ଭର ଚିତ୍ତ (ମନସା) ଅନ୍ତଃକରଣରେ ( ମୋଦମାନଃ ) ଆନନ୍ଦିତ (ସୁମନାଃ) ପ୍ରସନ୍ନ ମନ (ସୁମେଧାଃ) ଉତ୍ତମ ବୁଦ୍ଧିଯୁକ୍ତ ତୁମକୁ ଏବଂ ହେ ମୋର ପୂଜନୀୟ ପିତା ଆଦି ଗୁରୁଜନ ! ( ବଃ ) ତୁମ୍ଭମାନଙ୍କ ନିମନ୍ତେ ( ଉର୍ଜ୍ଜମ୍ ) ପରାକ୍ରମ ତଥା ଅନ୍ନାଦି ଐଶ୍ୱର୍ଯ୍ୟକୁ ( ବିଭ୍ରତ୍ ) ଧାରଣ-କରି, ତୁମ୍ଭପରି ( ଗୃହାନ୍ ) ଗୃହସ୍ଥ ମାନଙ୍କୁ ( ଆ ଏମି ) ସବୁପ୍ରକାରେ ପ୍ରାପ୍ତ ହେଉଅଛି, ଏହିପରି ଭାବରେ ତୁମ୍ଭେମାନେ ମଧ୍ୟ ମୋ ସହିତ ପ୍ରସନ୍ନ ଭାବରେ ବ୍ୟବହାର କର ।।୩।।

ଯେଷା ମଧ୍ୟେତି ପ୍ରବସନ୍ୟେଷୁ ସୌମନସୋ ବହୁଃ । ଗୃହାନୁପ ହ୍ୱୟାମହେ ତେ ନୋ ଜାନନ୍ତୁ ଜାନତଃ ।।୪।।

ଉପହୂତା ଇହ ଗାବ ଉପହୂତା ଅଜାବୟଃ । ଅଥୋ ଅନ୍ନସ୍ୟ କୀଲାଲ ଉପହୂତୋ ଗୃହେଷୁ ନଃ । କ୍ଷେମାୟ ବଃ ଶାନ୍ତ୍ୟୈ ପ୍ରପଦ୍ୟେ ଶିବଁ ଶଗ୍ମଁ ଶଂୟୋଃ ଶଂୟୋଃ ।।୫।।

ଯଜୁ. ଅ. ୩।ମଂ. ୪୨, ୪୩ ।।

**ଅର୍ଥ:**– ହେ ଗୃହସ୍ଥଗଣ ! ( ପ୍ରବସନ୍ ) ପରଦେଶ ଗମନ କରିବା ମନୁଷ୍ୟ ( ଯେଷାମ୍ ) ଯାହାଙ୍କୁ ( ଅଧ୍ୟେତି ) ସ୍ମରଣ-

କରେ, ( ଯେଷୁ ) ଯେଉଁ ଗୃହସ୍ଥ ମାନଙ୍କ ମଧ୍ୟରେ ( ବହୁଃ ) ବହୁତ ( ସୌମନସଃ ) ପ୍ରୀତିଥାଏ, ସେହି ( ଗୃହାନ୍ ) ଗୃହସ୍ଥ ମାନଙ୍କୁ ଆମେ ସନ୍ନ୍ୟାସୀଗଣ ( ଉପହ୍ୱୟାମହେ ) ପ୍ରଶଂସା କରୁ ଏବଂ ଶ୍ରଦ୍ଧାରେ ନିକଟକୁ ଡକାଉ, ( ତେ ) ସେହି ଗୃହସ୍ଥଗଣ ( ଜାନନ୍ତଃ ) ସେମାନଙ୍କୁ ଜାଣିଥିବା (ନଃ) ଆମ୍ଭମାନଙ୍କୁ ( ଜାନନ୍ତୁ ) ଭଲଭାବରେ ଜାଣନ୍ତୁ, ଯେମିତି ତୁମେ ଗୃହସ୍ଥ ଏବଂ ଆମ୍ଭେ ସନ୍ନ୍ୟାସୀମାନେ ପରସ୍ପର ମିଳିମିଶି ପୁରୁଷାର୍ଥ ସହିତ ବ୍ୟବହାର ଏବଂ ପରମାର୍ଥ ବାଟରେ ସବୁବେଳେ ଉନ୍ନତି କରୁ ॥୪॥

ହେ ଗୃହସ୍ଥ ଗଣ ! ( ନଃ ) ନିଜର ( ଗୃହେଷୁ ) ଗୃହ ମାନଙ୍କରେ ଯେପରି ( ଗାବଃ ) ଗବାଦି ପଶୁ ( ଉପହୂତାଃ ) ସମୀପସ୍ଥ ହେବ, ( ଅଜାବୟଃ ଛେଳି, ମେଣ୍ଢା ପ୍ରଭୃତି ଦୁଗ୍ଧଦାନ କରୁଥିବା ପଶୁ ( ଉପହୂତାଃ ) ସମୀପସ୍ଥ ହେବ, ( ଅଥୋ )ଏହା ବ୍ୟତୀତ ( ଅନ୍ନସ୍ୟ ) ଅନ୍ନାଦି ପଦାର୍ଥ ଭିତରେ ଉତ୍ତମ ( କୀଲାଲଃ ) ଅନ୍ନାଦି ପଦାର୍ଥ ( ଉପହୂତ ) ପ୍ରାପ୍ତହେବ, ଆମ୍ଭେମାନେ ସେହିପରି ପ୍ରଚେଷ୍ଟା କରିବା । ହେ ଗୃହସ୍ଥଗଣ ! ମୁଁ ଉପଦେଶକ ବା ରାଜା ( ଇହ ) ଏହି ଗୃହାଶ୍ରମରେ ( ବଃ ) ତୁମ୍ଭମାନଙ୍କର ( କ୍ଷେମାୟ ) ରକ୍ଷଣ ତଥା ( ଶାନ୍ତ୍ୟୈ ) ନିରୁପଦ୍ରବତା କରିବା ନିମନ୍ତେ (ପଦ୍ୟେ) ପ୍ରାପ୍ତ ( ସମର୍ଥ ) ହୋଇଅଛି । ମୁଁ ଏବଂ ଆପଣମାନେ ପ୍ରୀତିପୂର୍ବକ ମିଳିମିଶି ( ଶିବମ୍ ) କଲ୍ୟାଣ, ( ଶଗ୍ମମ୍ ) ବ୍ୟାବହାରିକ ସୁଖ ଏବଂ ( ଶଂଯୋଃ ଶଂଯୋଃ ) ପାର-ମାର୍ଥିକ ସୁଖ ପ୍ରାପ୍ତହୋଇ ଅନ୍ୟ ସମସ୍ତ ଲୋକଙ୍କୁ ସର୍ବଦା ସୁଖଦାନ କରୁଁ ॥୫॥

ସନ୍ତୁଷ୍ଟୋ ଭାର୍ଯ୍ୟୟା ଭର୍ତ୍ତା ଭର୍ତ୍ତ୍ରା ଭାର୍ଯ୍ୟା ତଥୈବ ଚ । ଯସ୍ମିନ୍ନେବ କୁଳେ ନିତ୍ୟଂ କଲ୍ୟାଣଂ ତତ୍ର ବୈ ଧ୍ରୁବମ୍ ॥୧॥

ଯଦି ହି ସ୍ତ୍ରୀ ନ ରୋଚେତ ପୁମାଂସଂ ନ ପ୍ରମୋଦୟେତ୍ । ଅପ୍ରମୋଦାତ୍ ପୁନଃ ପୁଂସଃ ପ୍ରଜନଂ ନ ପ୍ରବର୍ତ୍ତତେ ॥ ॥୨॥ ( ମନୁ. ଅ. ୩ ॥ ଶ୍ଲୋ. ୬୦, ୬୧ )

ହେ ଗୃହସ୍ଥଗଣ ! ଯେଉଁକୁଳରେ ସ୍ତ୍ରୀ ସବୁବେଳେ ସ୍ୱାମୀ ଠାରେ ପ୍ରସନ୍ନ ରହେ ଏବଂ ସ୍ୱାମୀ ସବୁବେଳେ ସ୍ତ୍ରୀଠାରେ ପ୍ରସନ୍ନ ରହେ, ସେହିକୁଳର ନିଶ୍ଚିତ କଲ୍ୟାଣ ହୁଏ ଏବଂ ଉଭୟେ ଅପ୍ରସନ୍ନ ରହିଲେ ସେହିକୁଳରେ ନିତ୍ୟପ୍ରତି କଳହ ଲାଗିରହେ ॥୧॥

ଯଦି ସ୍ତ୍ରୀ ପୁରୁଷଠାରେ ରୁଚି ନରଖେ ବା ପୁରୁଷକୁ ପ୍ରହର୍ଷିତ ନକରେ, ତେବେ ଅପ୍ରସନ୍ନତା ବଶତଃ ପୁରୁଷଠାରେ ଆଦୌ କାମୋତ୍ପତ୍ତି ନହୋଇ ସନ୍ତାନ ହୁଏନାହିଁ କିମ୍ବା ଯଦି ସନ୍ତାନ ହୁଏ, ତେବେ ସେମାନେ ଦୁଷ୍ଟ ସ୍ୱଭାବ ହୁଅନ୍ତି ॥୨॥

ସ୍ତ୍ରିୟାନ୍ତୁ ରୋଚମାନାୟାଂ ସର୍ବାନ୍ତଦ୍ରୋଚତେ କୁଳମ୍ । ତସ୍ୟାଂ ତ୍ୱରୋଚମାନାୟାଂ ସର୍ବମେବ ନ ରୋଚତେ ॥୩॥ ( ମନୁ. ଅ. ୩ ଶ୍ଲୋ. ୬୨ ) .



ଅର୍ଥ:—ଏବଂ ଯେଉଁ ପୁରୁଷ ସ୍ତ୍ରୀକୁ ପ୍ରସନ୍ନ କରେନାହିଁ, ସେହି ସ୍ତ୍ରୀର ଅପ୍ରସନ୍ନତା କାରଣରୁ ସମ୍ପୂର୍ଣ୍ଣ ପରିବାର ଅପ୍ରସନ୍ନ, ଶୋକାତୁର ରହେ, ଏବଂ ସ୍ତ୍ରୀ ଯେତେବେଳେ ପୁରୁଷଠାରେ ପ୍ରସନ୍ନ ରହେ, ସେତେବେଳେ ପରିବାରର ସମସ୍ତେ ଆନନ୍ଦରେ ରହନ୍ତି ।।୩।।

ପିତୃଭିର୍ଭ୍ରାତୃଭିଶ୍ଚୈତାଃ ପତିଭିର୍ଦେବରୈସ୍ତଥା ।
ପୂଜ୍ୟା ଭୂଷୟିତବ୍ୟାଶ୍ଚ ବହୁକଲ୍ୟାଣମୀପ୍ସୁଭିଃ ।।୪।।

ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବାସ୍ତତ୍ରାଫଳାଃ କ୍ରିୟାଃ
।।୫।।

ଶୋଚନ୍ତି ଜାମୟୋ ଯତ୍ର ବିନଶ୍ୟତ୍ୟାଶୁ ତତ୍କୁଲମ୍ ।
ନ ଶୋଚନ୍ତି ତୁ ଯତ୍ରୈତା ବର୍ଦ୍ଧତେ ତଦ୍ଧି ସର୍ବଦା
।।୬।।

ଜାମୟୋ ଯାନି ଗେହାନି ଶପନ୍ତ୍ୟପ୍ରତିପୂଜିତାଃ ।
ତାନି କୃତ୍ୟାହତାନୀବ ବିନଶ୍ୟନ୍ତି ସମନ୍ତତଃ ।।୭।।
( ମନୁ· ଅ· ୩। ଶ୍ଳୋକ· ୫୫—୫୮ )

ଅର୍ଥ—ପିତା, ଭ୍ରାତା, ପତି ଏବଂ ଦେବରଙ୍କ କର୍ତ୍ତବ୍ୟ ହେଉଛି ନିଜର କନ୍ୟା, ଭଗିନୀ ଓ ସ୍ତ୍ରୀ ପ୍ରଭୃତିଙ୍କୁ ସର୍ବଦା ପୂଜାକରିବେ, ଅର୍ଥାତ୍ ଯଥାଯୋଗ୍ୟ ମଧୁର ଭାଷଣ, ଭୋଜନ,

ବସ୍ତ୍ର, ଆଭୂଷଣଆଦିରେ ସେମାନଙ୍କୁ ପ୍ରସନ୍ନ ରଖିବେ । କଲ୍ୟାଣ ଇଚ୍ଛାକରୁଥିବା ମନୁଷ୍ୟ ସ୍ତ୍ରୀ ମାନଙ୍କୁ କଦାପି କ୍ଲେଶ ଦେବା ଉଚିତ ନୁହେଁ ॥୪॥

ଯେଉଁ କୁଳରେ ନାରୀମାନଙ୍କର ପୂଜା ଅର୍ଥାତ୍ ସତ୍କାର ହୁଏ, ସେହି କୁଳରେ ଦିବ୍ୟଗୁଣ, ଦିବ୍ୟଭୋଗ ଏବଂ ଉତ୍ତମ ସନ୍ତାନ ହୁଅନ୍ତି ଏବଂ ଯେଉଁ କୁଳରେ ସ୍ତ୍ରୀଲୋକ ମାନଙ୍କୁ ଉତ୍ତମ ସତ୍କାର କରାଯାଏ ନାହିଁ, ସେଠାରେ ନିଶ୍ଚିତ-ରୂପେ ସବୁପ୍ରକାର କ୍ରିୟା ନିଷ୍ଫଳ ହୁଏ ॥୫॥

ଯେଉଁ କୁଳରେ ସ୍ତ୍ରୀଲୋକମାନେ ନିଜନିଜର ପୁରୁଷ ମାନଙ୍କର ବେଶ୍ୟାଗମନ ବା ବ୍ୟଭିଚାରାଦି ଦୋଷରେ ଶୋକାତୁର ରହନ୍ତି, ସେହି କୁଳ ଶୀଘ୍ର ନାଶ ହୋଇଯାଏ ଏବଂ ଯେଉଁ କୁଳରେ ସ୍ତ୍ରୀଲୋକମାନେ ପୁରୁଷ ମାନଙ୍କର ଉତ୍ତମ କର୍ମା-ଚରଣରେ ପ୍ରସନ୍ନ ରହନ୍ତି, ସେ କୁଳ ସର୍ବଦା ବୃଦ୍ଧିଲାଭ କରେ ॥୬॥

ଯେଉଁ କୁଳରେ ଏବଂ ଗୃହରେ ଅପୂଜିତ ଅର୍ଥାତ୍ ସତ୍କାର ପ୍ରାପ୍ତ ନହୋଇ ସ୍ତ୍ରୀମାନେ, ଯେଉଁ ଗୃହସ୍ଥମାନଙ୍କୁ ଶାପ ଦିଅନ୍ତି, ସେହିକୁଳ ଏବଂ ଗୃହସ୍ଥ, ଯେପରି ବିଷ ଦେବାଦ୍ୱାରା ବହୁତ ଲୋକଙ୍କୁ ଏକାଥରେ ନଷ୍ଟକରିଦିଆଯାଏ, ସେହିପରି ଗୃହଆଦି ନଷ୍ଟଭ୍ରଷ୍ଟ ହୋଇଯାଆନ୍ତି ॥୭॥

**ତସ୍ମାଦେତାଃ ସଦା ପୂଜ୍ୟା ଭୂଷଣାଚ୍ଛାଦନାଶନୈଃ ।**
**ଭୂତିକାମୈର୍ନରୈର୍ନିତ୍ୟଂ ସତ୍କାରେଷୂତ୍ସବେଷୁ ଚ ॥**
॥୮॥ ( ମନୁ. ଅ. ୩। ଶ୍ଳୋ. ୫୯ )

ଅର୍ଥ:—ଅତଏବ ଐଶ୍ୱର୍ଯ୍ୟ ଇଚ୍ଛା କରୁଥିବା ପୁରୁଷମାନଙ୍କର କର୍ତ୍ତବ୍ୟ ହେଉଛି—ସ୍ତ୍ରୀଲୋକ ମାନଙ୍କ ଉତ୍ସବ, ସତ୍କାରାଦି ସମୟରେ ଭୂଷଣ, ବସ୍ତ୍ର, ଖାଦ୍ୟପେୟଆଦି ଦେଇ ସବୁବେଳେ ପୂଜା ଅର୍ଥାତ୍ ସତ୍କାର କରି ପ୍ରସନ୍ନ ରଖିବେ ॥୮॥

ସଦା ପ୍ରହୃଷ୍ଟୟା ଭାବ୍ୟଂ ଗୃହକାର୍ଯ୍ୟେଷୁ ଦକ୍ଷୟା ।
ସୁସଂସ୍କୃତୋପସ୍କରୟା ବ୍ୟୟେ ଚାମୁକ୍ତହସ୍ତୟା ॥୯॥

( ମନୁ. ଅ· ୫। ଶ୍ଳୋ. ୧୫୦ )

ଅର୍ଥ:—ସ୍ତ୍ରୀର କର୍ତ୍ତବ୍ୟ ହେଉଛି ସବୁବେଳେ ପ୍ରଫୁଲ୍ଲିତ ଚିତ୍ତରେ ଚତୁରତାର ସହିତ ଗୃହକାର୍ଯ୍ୟରେ ମଗ୍ନ ରହିବ ତଥା ଅନ୍ନାଦିର ଉତ୍ତମ ସଂସ୍କାର, ପାତ୍ର, ବସ୍ତ୍ର, ଗୃହାଦିର ସଂସ୍କାର ଏବଂ ଗୃହର ଭୋଜନାଦିରେ ଯେତେ ଧନ ଲାଗିବ, ଆବଶ୍ୟକତାନୁସାର ସେତିକି ଖର୍ଚ୍ଚ କରିବାରେ ସର୍ବଦା ପ୍ରସନ୍ନ ରହିବ ॥୯॥

ଏତାଶ୍ଚାନ୍ୟାଶ୍ଚ ଲୋକେଽସ୍ମିନ୍ନପକୃଷ୍ଟ ପ୍ରସୂତୟଃ ।
ଉତ୍କର୍ଷଂ ଯୋଷିତଃ ପ୍ରାପ୍ତାଃ ସ୍ୱୈଃ ସ୍ୱୈର୍ଭର୍ତ୍ତୃ-
ଗୁଣୈଃ ଶୁଭୈଃ ॥୧୦॥

( ମନୁ· ଅ. ୯।ଶ୍ଳୋ. ୨୪ )

ଅର୍ଥ:— ନୀଚକୁଳରୁ ଜନ୍ମ ହୋଇଥିବା ଅନେକ ସ୍ତ୍ରୀଲୋକ ଏହି ସଂସାରରେ ନିଜନିଜର ପତିଙ୍କର ଶୁଭଗୁଣର ପ୍ରଭାବରେ ଶ୍ରେଷ୍ଠ ହୋଇଯାଇଛନ୍ତି ଏବଂ ହେବେ ମଧ୍ୟ । ଅତଏବ ପତି

ପୁରୁଷ ଶ୍ରେଷ୍ଠ ଥାଏ, ତେବେ ସ୍ତ୍ରୀ ଶ୍ରେଷ୍ଠ ଏବଂ ଯଦି ପୁରୁଷ ଦୁଷ୍ଟ ଥାଏ, ତେବେ ସ୍ତ୍ରୀ ଦୁଷ୍ଟ ହୋଇଯାଏ । ଏଣୁ ପ୍ରଥମେ ପୁରୁଷମାନେ ଉତ୍ତମହୋଇ ନିଜନିଜର ସ୍ତ୍ରୀଙ୍କୁ ଉତ୍ତମ କରିବା ଉଚିତ ॥୧୦॥

ପ୍ରଜନାର୍ଥଂ ମହାଭାଗାଃ ପୂଜାର୍ହା ଗୃହଦୀପ୍ତୟଃ ।
ସ୍ତ୍ରିୟଃଶ୍ରିୟଶ୍ଚ ଗେହେଷୁ ନ ବିଶେଷୋଽସ୍ତି କଶ୍ଚନ
॥୧୧॥

ଉତ୍ପାଦନମପତ୍ୟସ୍ୟ ଜାତସ୍ୟ ପରିପାଳନମ୍ ।
ପ୍ରତ୍ୟହଂ ଲୋକଯାତ୍ରାୟାଃ ପ୍ରତ୍ୟକ୍ଷଂ ସ୍ତ୍ରୀ ନିବନ୍ଧନମ୍
॥୧୨॥

ଅପତ୍ୟଂ ଧର୍ମକାର୍ଯ୍ୟାଣି ଶୁଶ୍ରୂଷା ରତିରୁତ୍ତମା ।
ଦାରାଧୀନସ୍ତଥା ସ୍ୱର୍ଗଃ ପିତୃଣାମାତ୍ମନଶ୍ଚ ହ ॥୧୩॥
( ମନୁ. ଅ. ୯। ଶ୍ଳୋ. ୨୬-୨୮ )

ଯଥା ବାୟୁଂ ସମାଶ୍ରିତ୍ୟ ବର୍ତ୍ତନ୍ତେ ସର୍ବଜନ୍ତବଃ ।
ତଥା ଗୃହସ୍ଥମାଶ୍ରିତ୍ୟ ବର୍ତ୍ତନ୍ତେ ସର୍ବ ଆଶ୍ରମାଃ ॥୧୪॥
( ମନୁ. ଅ. ୩। ଶ୍ଳୋକ—୭୭ )

ଅର୍ଥ:—ହେ ପୁରୁଷଗଣ ! ସନ୍ତାନୋତ୍ପତ୍ତି ନିମନ୍ତେ, ମହାଭାଗ୍ୟୋଦୟକାରିଣୀ, ପୂଜାଯୋଗ୍ୟା, ଗୃହାଶ୍ରମର ପ୍ରକାଶସ୍ୱରୂପା,

ସନ୍ତାନୋତ୍ପତ୍ତିକାରିଣୀ ଗୃହିଣୀମାନେ ଶ୍ରୀ ଅର୍ଥାତ୍ ଲକ୍ଷ୍ମୀ ସ୍ୱରୂପା ଅଟନ୍ତି, କାରଣ ଲକ୍ଷ୍ମୀ, ଶୋଭା, ଧନ ଏବଂ ସ୍ତ୍ରୀମାନଙ୍କ ମଧ୍ୟରେ କୌଣସି ତଫାତ୍ ନାହିଁ ।।୧୧।।

ହେ ପୁରୁଷଗଣ ! ସନ୍ତାନୋତ୍ପତ୍ତି, ସନ୍ତାନର ପାଳନ ପ୍ରଭୃତି ଲୋକ ବ୍ୟବହାର ମୂଳକ ଯାହାକିଛି କର୍ମ ଗୃହାଶ୍ରମରେ କରାଯାଏ, ସେସବୁ କର୍ମର ପ୍ରତ୍ୟକ୍ଷ ବ୍ୟବସ୍ଥାକାରିଣୀ ସ୍ତ୍ରୀ ଅଟେ ।।୧୨।।

ସନ୍ତାନୋତ୍ପତ୍ତି, ଧର୍ମକାର୍ଯ୍ୟ, ଉତ୍ତମସେବା ଏବଂ ରତି ତଥା ନିଜର ଏବଂ ପିତୃପୁରୁଷଙ୍କର ସକଳ ପ୍ରକାର ସୁଖ ସ୍ତ୍ରୀଲୋକମାନଙ୍କର ଅଧୀନ ଅଟେ ।।୧୩।।

ଯେପରି ବାୟୁର ଆଶ୍ରୟରେ ସମସ୍ତ ଜୀବଜଗତର ସ୍ଥିତି ସିଦ୍ଧହୁଏ, ସେହିପରି ଗୃହସ୍ଥର ଆଶ୍ରୟରେ ବ୍ରହ୍ମଚାରୀ, ବାନପ୍ରସ୍ଥ ଓ ସନ୍ନ୍ୟାସୀ ଅର୍ଥାତ୍ ସମସ୍ତ ଆଶ୍ରମର ନିର୍ବାହ ହୁଏ ।।୧୪।।

ଯସ୍ମାତ୍ ତ୍ରୟୋଽପ୍ୟାଶ୍ରମିଣୋ ଦାନେନାନ୍ନେନ ଚାନ୍ୱହମ୍ ।
ଗୃହସ୍ଥେନୈବ ଧାର୍ଯ୍ୟନ୍ତେ ତସ୍ମାଜ୍ଜ୍ୟେଷ୍ଠାଶ୍ରମୋ ଗୃହୀ ।।୧୫।।
ସଃ ସଂଧାର୍ଯ୍ୟଃ ପ୍ରଯତ୍ନେନ ସ୍ୱର୍ଗମକ୍ଷୟମିଚ୍ଛତା ।
ସୁଖଂ ଚେହେଚ୍ଛତା ନିତ୍ୟଂ ଯୋଽଧାର୍ଯ୍ୟୋ ଦୁର୍ବଲେନ୍ଦ୍ରିୟୈଃ ।।୧୬।।
( ମନୁ.ଅ. ୩ । ଶ୍ଲୋ. ୭୮-୭୯ )

ସର୍ବେଷାମପି ଚୈତେଷାଂ ବେଦସ୍ମୃତିବିଧାନତଃ ।
ଗୃହସ୍ଥ ଉଚ୍ୟତେ ଶ୍ରେଷ୍ଠଃ ସ ତ୍ରୀନେତାନ୍ ବିଭର୍ତ୍ତି ହି
॥୧୭॥
( ମନୁ· ୬ । ୮୯ )

ଅର୍ଥ:—ଯେହେତୁ ବ୍ରହ୍ମଚାରୀ, ବାନପ୍ରସ୍ଥ ଏବଂ ସନ୍ୟାସୀ ଏହି ତିନ ଆଶ୍ରମୀଙ୍କୁ ଗୃହସ୍ଥ ଅନ୍ନବସ୍ତ୍ରାଦି ଦାନଦ୍ୱାରା ନିତ୍ୟପ୍ରତି ଧାରଣପୋଷଣ କରେ, ତେଣୁ କର୍ତ୍ତବ୍ୟବହାରର ଦୃଷ୍ଟିରୁ ଗୃହାଶ୍ରମ ସର୍ବଶ୍ରେଷ୍ଠ ଅଟେ ॥୧୫॥

ହେ ସ୍ତ୍ରୀ ପୁରୁଷଗଣ ! ତୁମ୍ଭେମାନେ ଯଦି ଅକ୍ଷୟ* ମୁକ୍ତିସୁଖ ଏବଂ ସାଂସାରିକ ସୁଖ ଇଚ୍ଛାକରୁଛ, ତେବେ ନିତ୍ୟପ୍ରଯତ୍ନ ସହିତ ଗୃହାଶ୍ରମକୁ ଧାରଣକରିବା ଉଚିତ । ଦୁର୍ବଳେନ୍ଦ୍ରିୟ ଓ ନିର୍ବୁଦ୍ଧି ପୁରୁଷମାନଙ୍କପାଇଁ ଗୃହାଶ୍ରମ ଉପଯୁକ୍ତ ନୁହେଁ ॥୧୬॥

ବେଦ ଏବଂ ସ୍ମୃତିର ପ୍ରମାଣ ଅନୁସାରେ ସମସ୍ତ ଆଶ୍ରମ ମଧ୍ୟରେ ଗୃହାଶ୍ରମ ଶ୍ରେଷ୍ଠଅଟେ । କାରଣ ଏହି ଆଶ୍ରମ ବ୍ରହ୍ମଚାରୀ, ବାନପ୍ରସ୍ଥୀ ଏବଂ ସନ୍ନ୍ୟାସୀ ଏହି ତିନ ଆଶ୍ରମୀଙ୍କୁ ଧାରଣ ଏବଂ ପାଳନ କରେ ॥୧୭॥

---

* ମୁକ୍ତିର ଏକ ନିଶ୍ଚିତ ସମୟସୀମା ଅଛି । ଏହି ସମୟକୁ ଅକ୍ଷୟ କୁହାଯାଏ । ଏହି ସମୟରେ ବିଷୟେନ୍ଦ୍ରିୟ ସଂଯୋଗଜନ୍ୟ ସୁଖରେ ଦୁଃଖର ସଂଯୋଗ ହୁଏନାହିଁ । ଆତ୍ମା ଏହି ଅବଧିରେ କେବଳ ସୁଖ ହିଁ ସୁଖ ଅନୁଭବ କରେ ।

ଯଥା ନଦୀନଦାଃ ସର୍ବେ ସାଗରେ ଯାନ୍ତି ସଂସ୍ଥିତମ୍ ।
ତଥୈବାଶ୍ରମିଣଃ ସର୍ବେ ଗୃହସ୍ଥେ ଯାନ୍ତି ସଂସ୍ଥିତମ୍ ॥
॥୧୮॥

( ମନୁ. ଅ. ୬ । ଶ୍ଲୋ. ୯୦ )

ଉପାସତେ ଯେ ଗୃହସ୍ଥାଃ ପରପାକମବୁଦ୍ଧୟଃ ।
ତେନ ତେ ପ୍ରେତ୍ୟ ପଶୁତାଂ ବ୍ରଜନ୍ତ୍ୟନ୍ନାଦ୍ୟଦାୟିନାମ୍
॥୧୯॥

ଆସନାବସଥୌ ଶଯ୍ୟାମନୁବ୍ରଜ୍ୟାମୁପାସନାମ୍ ।
ଉତ୍ତମେଷୂତ୍ତମଂ କୁର୍ଯ୍ୟାଦ୍ଧୀନେ ହୀନଂ ସମେ ସମମ୍ ॥
॥୨୦॥ ( ମନୁ. ଅ. ୩ । ୧୦୪, ୧୦୭ )

ପାଷଣ୍ଡିନୋ ବିକର୍ମସ୍ଥାନ୍ ବୈଡାଲବ୍ରତିକାନ୍ ଶଠାନ୍ ।
ହୈତୁକାନ୍ ବକବୃତ୍ତୀଂଶ୍ଚ ବାଙ୍ମାତ୍ରେଣାପି
ନାର୍ଚ୍ଚୟେତ୍ ॥୨୧॥ ( ମନୁ. ଅ. ୪ । ଶ୍ଲୋ. ୩୦ )

ଅର୍ଥ: – ହେ ମନୁଷ୍ୟ ! ଯେପରି ସମସ୍ତ ଛୋଟବଡ଼ ନଦନଦୀ ସମୁଦ୍ରରେ ଯାଇ ସ୍ଥିତହୁଅନ୍ତି, ସେହିପରି ସମସ୍ତ ଆଶ୍ରମୀ ଗୃହସ୍ଥଙ୍କୁ ପ୍ରାପ୍ତହୋଇ ସ୍ଥିରହୁଅନ୍ତି ॥୧୯॥

ଯଦି ଗୃହସ୍ଥହୋଇ ପରଘରେ ଭୋଜନାଦିପାଇଁ ଆକାଂକ୍ଷା ରଖିବେ, ତେବେ ସେହି ବୁଦ୍ଧିହୀନ ଗୃହସ୍ଥ ଅନ୍ୟଠାରେ ପ୍ରତିଗ୍ରହରୂପକ ପାପକରି ଜନ୍ମାନ୍ତରରେ ଅନ୍ନାଦି ଦାତାଙ୍କର ପଶୁହୁଅନ୍ତି, କାରଣ ଅନ୍ୟଠାରୁ ଅନ୍ନାଦି ଗ୍ରହଣ କରିବା ଅତିଥିମାନଙ୍କର କାମ, ଗୃହସ୍ଥ ମାନଙ୍କର ନୁହେଁ ॥୧୯॥

ଗୃହସ୍ଥ ନିକଟକୁ ଯେତେବେଳେ ଅତିଥି ଆସିବେ, ସେତେବେଳେ ସେମାନଙ୍କୁ ଆସନ, ନିବାସ, ଶଯ୍ୟା, ପଶ୍ଚାତ୍‌ଗମନ ଏବଂ ସମୀପରେ ଉପବେଶନ ପ୍ରଭୃତି ଯଥାଯୋଗ୍ୟ ଅର୍ଥାତ୍ ଉତ୍ତମଙ୍କୁ ଉତ୍ତମ, ମଧ୍ୟମଙ୍କୁ ମଧ୍ୟ ଏବଂ ନିକୃଷ୍ଟଙ୍କୁ ନିକୃଷ୍ଟ ପ୍ରକାର ବ୍ୟବହାର କରିବାକୁ ହେବ ॥୨୦॥

କିନ୍ତୁ ଯଦି ଅଧାର୍ମିକ, ବେଦ ନିନ୍ଦୁକ, ନାସ୍ତିକ ଅର୍ଥାତ୍ ଈଶ୍ୱର, ବେଦ ଏବଂ ଧର୍ମକୁ ମାନୁନଥିବା ବ୍ୟକ୍ତି, ଅଧର୍ମାଚ୍ଛନ୍ନ, ହିଂସକ, ଶଠ, ମିଥ୍ୟାଭିମାନୀ, କୁତର୍କୀ ଏବଂ ବକବୃତ୍ତି ଅର୍ଥାତ୍ ପର ପଦାର୍ଥ ହରଣ କରିବାରେ ବକତୁଲ୍ୟ ବ୍ୟକ୍ତି, ଅତିଥିବେଶ ଧାରଣକରି ଆସିବେ, ତେବେ ସେମାନଙ୍କୁ ଗୃହସ୍ଥଲୋକ ବଚନମାତ୍ରରେ ମଧ୍ୟ ସତ୍କାର କରିବେ ନାହିଁ ॥୨୧॥

ଦଶସୂନାସମଂ ଚକ୍ରଂ ଦଶଚକ୍ରସମୋ ଧ୍ୱଜଃ ।
ଦଶଧ୍ୱଜସମୋ ବେଶୋ ଦଶବେଶସମୋ ନୃପଃ ॥୨୨॥

( ମନୁ· ଅ· ୪ । ଶ୍ଳୋକ ୮୫ )



ନ ଲୋକବୃତ୍ତଂ ବର୍ତ୍ତେତ ବୃତ୍ତିହେତୋଃ କଥଂଚନ ।
ଅଜିହ୍ମାମଶଠାଂ ଶୁଦ୍ଧାଂ ଜୀବେଦ୍ ବ୍ରାହ୍ମଣଜୀବ-
( ମନୁ· ଅ· ୪ । ଶ୍ଲୋ. ୧୧ ) କାମ୍ ॥୨୩॥

ସତ୍ୟଧର୍ମାର୍ଯ୍ୟବୃତ୍ତେଷୁ ଶୌଚେଚୈବାରମେତ୍ସଦା ।
ଶିଷ୍ୟାଶ୍ଚ ଶିଷ୍ୟାଦ୍ଧର୍ମେଣ ବାଗ୍ବାହୂଦରସଂଯତଃ ॥
॥୨୪॥

ପରିତ୍ୟଜେଦର୍ଥକାମୌ ଯୌ ସ୍ୟାତାଂ ଧର୍ମବର୍ଜିତୌ ।
ଧର୍ମଂ ଚାପ୍ୟସୁଖୋଦର୍କଂ ଲୋକବିକ୍ରୁଷ୍ଟମେବ ଚ ॥୨୫॥
( ମନୁ. ଅ. ୪ । ଶ୍ଲୋ. ୧୭୫, ୧୭୬ )

ଅର୍ଥ:- ଦଶ ହତ୍ୟା ସଦୃଶଚକ୍ର ଅର୍ଥାତ୍ କୁମ୍ଭାର ( ତଥା ) ଗାଡ଼ିରେ ଜୀବିକା ଅର୍ଜନ କରୁଥିବା, ଦଶ ଚକ୍ର ସଦୃଶ ଧ୍ୱଜ ଅର୍ଥାତ୍ ଧୋବା ( ତଥା ମଦ୍ୟ ଭିଆରିକରି ବିକ୍ରୟ କରୁଥିବା ଲୋକ ) ଦଶଧ୍ୱଜ ସଦୃଶବେଶ ଅର୍ଥାତ୍ ବେଶ୍ୟା, ଖଣ୍ଡୁଆ, ଭଣ୍ଡ, ଅନ୍ୟର ପ୍ରତିମୂର୍ତ୍ତି ବା ପାଷାଣମୂର୍ତ୍ତି ପୂଜକ ( ପୂଜାରୀ ) ଇତ୍ୟାଦି ଏବଂ ଦଶ ବେଶ ସଦୃଶ ଯେ ଅନ୍ୟାୟକାରୀ ରଜା ଥାଆନ୍ତି, ସେମାନଙ୍କର ଅନ୍ନ ଇତ୍ୟାଦି ଅତିଥି ଲୋକ କଦାପି ଗ୍ରହଣକରିବା ଉଚିତ ନୁହେଁ ॥୨୨॥

ଗୃହସ୍ଥଲୋକ ଜୀବିକା ନିମନ୍ତେ କଦାପି ଶାସ୍ତ୍ରବିରୁଦ୍ଧ ଲୋକାଚାର କରିବେ ନାହିଁ ଏବଂ ଯେଉଁକର୍ମରେ କୌଣସି-ପ୍ରକାର କୁଟିଳତା, ମୂର୍ଖତା, ମିଥ୍ୟାଚାର ବା ଅଧର୍ମର ଲେଶମାତ୍ର ସ୍ପର୍ଶ ନଥିବ ସେହି ବେଦୋକ୍ତ ଧର୍ମ ସଂବଂଧୀ ଜୀବିକା ଗ୍ରହଣ କରିବେ ॥୨୩॥

କିନ୍ତୁ ସତ୍ୟ, ଧର୍ମ, ଆର୍ଯ୍ୟ ଅର୍ଥାତ୍ ଆପ୍ତପୁରୁଷଙ୍କର ବ୍ୟବହାର ଏବଂ ଶୁଚି ପବିତ୍ରତା ଦ୍ରଭୃତିରେ ଗୃହସ୍ଥଲୋକ ସର୍ବଦା ପ୍ରବୃତ୍ତ ରହିବେ । ସତ୍ୟବାଣୀ, ଭୋଜନାଦିରେ ନିର୍ଲୋଭ ତଥା ହସ୍ତପାଦାଦିରେ କୁଚେଷ୍ଟା ତ୍ୟାଗକରି ଧର୍ମର ସହିତ ଶିଷ୍ୟ ଏବଂ ସନ୍ତାନମାନଙ୍କୁ ସର୍ବଦା ଉତ୍ତମ ଶିକ୍ଷାଦାନ କରିବେ ॥୨୪॥

ଯଦି ବହୁତ ଧନ, ରାଜ୍ୟ ଏବଂ ନିଜର କାମନାବାସନା ଅଧର୍ମଦ୍ୱାରା ସିଦ୍ଧ ହୋଇପାରିବ, ତେବେମଧ୍ୟ ଅଧର୍ମ ସର୍ବଥା ତ୍ୟାଗକରିବ ଏବଂ ବେଦବିରୁଦ୍ଧ ଧର୍ମାଭାସ ଅର୍ଥାତ୍ ଯେଉଁକର୍ମ କରିବାଦ୍ୱାରା ଭବିଷ୍ୟତରେ ଦୁଃଖ ଏବଂ ସଂସାରର ଉନ୍ନତି ନଷ୍ଟହେବ, ସେପରି ନାମମାତ୍ରକ ଧର୍ମ ଏବଂ କର୍ମ କଦାପି କରିବା ଉଚିତ ନୁହେଁ ॥୨୫॥

**ସର୍ବେଷାମେବ ଶୌଚାନାମର୍ଥଶୌଚଂ ପରଂ ସ୍ମୃତମ୍ ।**
**ଯୋଽର୍ଥେ ଶୁଚିର୍ହି ସ ଶୁଚିର୍ନ ମୃଦ୍ବାରିଶୁଚିଃ ଶୁଚିଃ ॥୨୬॥**
**କ୍ଷାନ୍ତ୍ୟା ଶୁଧ୍ୟନ୍ତି ବିଦ୍ୱାଂସୋ ଦାନେନାକାର୍ଯ୍ୟ କାରିଣଃ ।**
**ପ୍ରଚ୍ଛନ୍ନପାପା ଜପ୍ୟେନ ତପସା ବେଦବିତ୍ତମାଃ ॥୨୭॥**

ଅଦ୍ଭିର୍ଗାତ୍ରାଣି ଶୁଧ୍ୟନ୍ତି ମନଃ ସତ୍ୟେନ ଶୁଧ୍ୟତି ।
ବିଦ୍ୟାତପୋଭ୍ୟାଂ ଭୂତାତ୍ମା ବୁଦ୍ଧିର୍ଜ୍ଞାନେନ ଶୁଧ୍ୟତି ॥
॥୨୮॥
( ମନୁ. ଅ. ୫ । ଶ୍ଳୋ. ୧୦୬; ୧୦୭, ୧୦୯ )

ଦଶାବରା ବା ପରିଷଦ୍ୟଂ ଧର୍ମଂ ପରିକଳ୍ପୟେତ୍ ।
ତ୍ର୍ୟବରା ବାପି ବୃତ୍ତସ୍ଥା ତଂ ଧର୍ମଂ ନ ବିଚାଳୟେତ୍ ।
॥୨୯॥
( ମନୁ. ଅ. ୧୨ । ଶ୍ଳୋ.୧୧୦ )

ଦଣ୍ଡଃ ଶାସ୍ତି ପ୍ରଜାଃ ସର୍ବା ଦଣ୍ଡ ଏବାଭିରକ୍ଷତି ।
ଦଣ୍ଡଃ ସୁପ୍ତେଷୁ ଜାଗର୍ତ୍ତି ଦଣ୍ଡଂ ଧର୍ମଂ ବିଦୁର୍ବୁଧାଃ ॥
॥୩୦॥

ତସ୍ୟାହୁଃ ସଂପ୍ରଣେତାରଂ ରାଜାନଂ ସତ୍ୟବାଦିନମ୍ ।
ସମୀକ୍ଷ୍ୟକାରିଣଂ ପ୍ରାଜ୍ଞଂ ଧର୍ମକାମାର୍ଥକୋବିଦମ୍ ॥୩୧॥
( ମନୁ. ଅ. ୭ । ଶ୍ଳୋ. ୧୮, ୨୬ )

ଅର୍ଥ:—ଧର୍ମର ସମ୍ବନ୍ଧ ପଦାର୍ଥ ସଞ୍ଚୟ କିମ୍ବା ସମସ୍ତ ପ୍ରକାର ମଳବନତା ମଧ୍ୟରେ ଉତ୍ତମ ପବିତ୍ରତା, ଅର୍ଥାତ୍ ଯେ ଅନ୍ୟାୟରେ କୌଣସି ପଦାର୍ଥକୁ ଗ୍ରହଣ କରେନାହିଁ ସେ ପବିତ୍ର ଅଟେ, କିନ୍ତୁ ଜଳମୃତ୍ତିକାଦି ସାହାଯ୍ୟରେ ଯେଉଁ ପବିତ୍ରତା ପ୍ରାପ୍ତହୁଏ, ତାହା ଧର୍ମ ସଦୃଶ ଉତ୍ତମ ନୁହେଁ ॥୨୬॥

ବିଦ୍ୱାନ୍ ଲୋକ କ୍ଷମା ଆଚରଣକରି, ଦୁଷ୍ଟକର୍ମ କରୁଥିବା ବ୍ୟକ୍ତି ସତ୍‌ସଙ୍ଗ ଏବଂ ବିଦ୍ୟାଦି ଶୁଭଗୁଣ ଦାନକରି, ଗୁପ୍ତ ପାପାଚରଣ କରୁଥିବା ବ୍ୟକ୍ତି ବିଚାରଦ୍ୱାରା ତାହା ପରିତ୍ୟାଗକରି ଏବଂ ବ୍ରହ୍ମଚର୍ଯ୍ୟ ତଥା ସତ୍ୟଭାଷଣାଦି ଦ୍ୱାରା ବେଦବିତ୍ ଉତ୍ତମ ବିଦ୍ୱାନ୍ ଶୁଦ୍ଧ ହୁଅନ୍ତି ॥୨୭॥

କିନ୍ତୁ ଜଳଦ୍ୱାରା ଶରୀରର ବାହାର ଅଂଶ ପବିତ୍ର ହୁଏ, ଆତ୍ମା ଏବଂ ମନ ନୁହେଁ । ମନ ସତ୍ୟମନନ, ସତ୍ୟ କଥନ ଏବଂ ସତ୍ୟାଚରଣରେ ଶୁଦ୍ଧହୁଏ, ଜୀବାତ୍ମା ବିଦ୍ୟା ଯୋଗାଭ୍ୟାସ ଏବଂ ଧର୍ମାଚରଣରେ ପବିତ୍ର ହୁଏ ଏବଂ ବୁଦ୍ଧି ଜ୍ଞାନଦ୍ୱାରା ଶୁଦ୍ଧହୁଏ, ଜଳ ମୃତ୍ତିକାଦି ଦ୍ୱାରା ନୁହେଁ ॥୨୮॥

ଗୃହସ୍ଥ ଲୋକ ଶ୍ରେଷ୍ଠ, ବଡ଼, ବା ରାଜକାର୍ଯ୍ୟକୁ ସିଦ୍ଧ କରିବାରେ ଅତି କମ୍‌ରେ ଦଶ ଅର୍ଥାତ୍ ଋକ୍‌ବେଦଜ୍ଞ, ଯଜୁ-ର୍ବେଦଜ୍ଞ, ସାମବେଦଜ୍ଞ, ହୈତୁକ (ନୈୟାୟିକ) ତର୍କକର୍ତ୍ତା, (ମୀମାଂସା ଶାସ୍ତ୍ରଜ୍ଞ) ନୈରୁକ୍ତ (ନିରୁକ୍ତଶାସ୍ତ୍ରଜ୍ଞ) ଧର୍ମାଧ୍ୟାପକ, ବ୍ରହ୍ମଚାରୀ, ସ୍ନାତକ ଏବଂ ବାନପ୍ରସ୍ଥ ବିଦ୍ୱାନ୍‌ମାନଙ୍କର କିମ୍ବା ଅତି-କମ୍‌ରେ ତିନ ବେଦଜ୍ଞଙ୍କର୍ (ଋକ୍‌ବେଦଜ୍ଞ, ଯଜୁର୍ବେଦଜ୍ଞ, ଏବଂ ସାମବେଦଜ୍ଞ )ଙ୍କର ସଭାରେ କର୍ତ୍ତବ୍ୟାକର୍ତ୍ତବ୍ୟ, ଧର୍ମ ଏବଂ ଅଧର୍ମର ଯେପରି ନିଷ୍ପତ୍ତି କରାଯିବ ସେହିପରି ଆଚରଣ କରିବେ ॥ ୨୯ ॥

ବିଦ୍ୱାନ୍ ଲୋକ ଯେପରି ଦଣ୍ଡକୁ ହିଁ ଧର୍ମ ଜ୍ଞାନ କରନ୍ତି, ସମସ୍ତେ ସେହିପରି ଜ୍ଞାନ କରିବା ଉଚିତ । କାରଣ ଦଣ୍ଡ

ହିଁ ପ୍ରଜାମାନଙ୍କର ଶାସନ ଓ ନ୍ୟାୟରକ୍ଷଣର ସହାୟକ । ଦଣ୍ଡ ହିଁ ସମସ୍ତଙ୍କର ସର୍ବପ୍ରକାର ରକ୍ଷକ । ସୁପ୍ତମାନଙ୍କ ମଧ୍ୟରେ ଦଣ୍ଡ ହିଁ ଜାଗ୍ରତ ରହେ । ଦଣ୍ଡର ପ୍ରଭୁତ୍ୱ ଦୁଷ୍ଟ ସ୍ୱଭାବର ଲୋକ ଦଣ୍ଡ ଭୟରେ ହିଁ ପାପକର୍ମ କରିପାରନ୍ତି ନାହିଁ ॥ ୩୦ ॥

ଯେଉଁ ଦଣ୍ଡକୁ ଉଚିତ ପ୍ରକାରେ ରାଜା ଚାଳନା କରେ ଯେ ସତ୍ୟବାଦୀ, ବିଚାରଯୁକ୍ତ କାର୍ଯ୍ୟକର୍ତ୍ତା, ବୁଦ୍ଧିମାନ୍, ବିଦ୍ୱାନ୍, ଧର୍ମ, ଅର୍ଥ, ଏବଂ କାମ ବିଷୟରେ ଯଥାର୍ଥ ଜ୍ଞାନୀ ଅଟେ ॥ ୩୧ ॥

ସୋଽସହାୟେନ ମୂଢ଼େନ ଲୁବ୍ଧେନାକୃତବୁଦ୍ଧିନା ।
ନ ଶକ୍ୟୋ ନ୍ୟାୟତୋ ନେତୁଂ ସକ୍ତେନ ବିଷୟେଷୁ ଚ ॥୩୨॥

ଶୁଚିନା ସତ୍ୟସନ୍ଧେନ ଯଥା ଶାସ୍ତ୍ରାନୁସାରିଣା ।
ପ୍ରଣେତୁଂ ଶକ୍ୟତେ ଦଣ୍ଡଃ ସୁସହାୟେନ ଧୀମତା ॥ ॥୩୩॥

( ମନୁ· ଅଧ୍ୟାୟ· ୭ । ଶ୍ଳୋକ. ୩୦, ୩୧ )

ଅଦଣ୍ଡ୍ୟାନ୍ ଦଣ୍ଡୟନ୍ ରାଜା ଦଣ୍ଡ୍ୟାଁଶ୍ଚୈବାପ୍ୟଦଣ୍ଡୟନ୍ ।
ଅଯଶୋ ମହଦାପ୍ନୋତି ନରକଂ ଚୈବ ଗଚ୍ଛତି ॥ ॥୩୪॥

( ମନୁ. ଅଧ୍ୟାୟ. ୮ । ଶ୍ଳୋକ· ୧୨୮ )

ଅର୍ଥ:– ଯେଉଁ ରାଜା ଉତ୍ତମ ସହାୟ ରହିତ, ମୂର୍ଖ, ଲୋଭୀ, ଯେ ବ୍ରହ୍ମଚର୍ଯ୍ୟାଦି ଉତ୍ତମ କର୍ମଦ୍ୱାରା ବିଦ୍ୟା, ବୁଦ୍ଧିର ଉନ୍ନତି କରିନାହିଁ, ଯେ ବିଷୟାସକ୍ତ, ସେ ନ୍ୟାୟର ସହିତ ଦଣ୍ଡନୀତି ଆଚରଣ କରିପାରେ ନାହିଁ ॥ ୩୨ ॥

ଅତଏବ ଯେ ପବିତ୍ର, ସତ୍‌ପୁରୁଷମାନଙ୍କ ବଂଧୁ, ରାଜନୀତି ଶାସ୍ତ୍ରର ଅନୁକୂଳରେ କର୍ମାଚରଣକାରୀ ଧାର୍ମିକ ପୁରୁଷଙ୍କର ସହାୟକ, ବୁଦ୍ଧିମାନ୍ ରାଜା, ସେ ହିଁ ଏହି ଦଣ୍ଡକୁ ଧାରଣକରି ଚଳାଇପାରେ ॥ ୩୩ ॥

ଯେଉଁରାଜା ଅନପରାଧିମାନଙ୍କୁ ଦଣ୍ଡ ଦିଏ ଏବଂ ଅପରାଧି-ମାନଙ୍କୁ ଦଣ୍ଡ ଦିଏ ନାହିଁ, ସେ ଏହି ଜନ୍ମରେ ମହା ଅପକୀର୍ତ୍ତି ଲାଭକରେ ଏବଂ ମୃତ୍ୟୁପରେ ନର୍କ ବା ମହାଦୁଃଖରେ ସନ୍ତାପିତ ହୁଏ ॥ ୩୪ ॥

ମୃଗୟାକ୍ଷା ଦିବାସ୍ୱପ୍ନଃ ପରିବାଦଃ ସ୍ତ୍ରିୟୋ ମଦଃ ।
ତୌର୍ଯ୍ୟତ୍ରିକଂ ବୃଥାଟ୍ୟା ଚ କାମଜୋ ଦଶକୋ
ଗଣଃ ॥୩୫॥

ପୈଶୁନ୍ୟଂ ସାହସଂ ଦ୍ରୋହ ଈର୍ଷ୍ୟାଽସୂୟାର୍ଥଦୂ-
ଷଣମ୍ ।
ବାଗ୍‌ଦଣ୍ଡଜଂ ଚ ପାରୁଷ୍ୟଂ କ୍ରୋଧଜୋଽପି
ଗଣୋଽଷ୍ଟକଃ ॥୩୬॥

ଦ୍ୱୟୋରପ୍ୟେତୟୋର୍ମୂଲଂ ଯଂ ସର୍ବେ କବୟୋ ବିଦୁଃ ।
ତଂ ଯତ୍ନେନ ଜୟେଲ୍ଲୋଭଂ ତଜ୍ଜାବେତାବୁଭୌ ଗଣୌ ॥୩୭

( ମନୁ. ଅ. ୭ । ଶ୍ଳୋ. ୪୭, ୪୮, ୪୯ )

**ଅର୍ଥ:**-- ମୃଗୟା ଅର୍ଥାତ୍ ଶିକାର କରିବା, ଦ୍ୟୂତ (ଜୁଆ) ଏବଂ ପ୍ରସନ୍ନତା ନିମନ୍ତେ ଚୌପଡ଼ (ପଶା) ପ୍ରଭୃତି ଖେଳିବା, ଦିନରେ ଶୋଇବା, ଅଚ୍ଛା ପରିହାସ ମିଥ୍ୟାବାଦ କରିବା, ସ୍ତ୍ରୀ ମାନଙ୍କ ସହିତ ସବୁବେଳେ ଅଧିକ ନିବାସକରି ମୋହିତ ହେବା, ମଦ୍ୟପାନ ପ୍ରଭୃତି ନିଶାଦ୍ରବ୍ୟ ସେବନ କରିବା, ଗାଇବା, ବଜାଇବା, ନାଚିବା କିମ୍ବା ଏ ସବୁ ଦେଖିବା ଏବଂ ବୃଥା ବିଭିନ୍ନ ଆଡ଼େ ଘୂରିବୁଲିବା ଏହି ଦଶ ଦୁର୍ଗୁଣ କାମରୁ ଉତ୍ପନ୍ନ ହୁଏ ॥ ୩୫ ॥

ଚୁଗୁଲି କରିବା, ବିନାବିଚାରରେ କାମକରିଦିବା, ଯାହାତାହା ସହିତ ବୃଥା ଶତ୍ରୁତା କରିବା, ଅନ୍ୟର ପ୍ରଶଂସା ହେବାର ଦେଖିବା କିମ୍ବା ଉନ୍ନତି ଦେଖି ଅନ୍ତର୍ଦାହଗ୍ରସ୍ତ ହେବା, ଅନ୍ୟର ଦୋଷରେ ଗୁଣ ଓ ଗୁଣରେ ଦୋଷ ଆରୋପ କରିବା, ଖରାପ କାମରେ ଧନ ବିନିଯୋଗ କରିବା, କଠୋର ବାଣୀ କହିବା, ବିଚାରନକରି ପକ୍ଷପାତମାତ୍ରରେ କାହାକୁ ଦଣ୍ଡିତ କରିବା, ଏ ଆଠଟି ଦୋଷ କ୍ରୋଧୀ ପୁରୁଷଠାରେ ଉତ୍ପନ୍ନ ହୁଏ । ଏହି ଅଠର ଦୁର୍ଗୁଣକୁ ରାଜା ନିଶ୍ଚିତଭାବରେ ତ୍ୟାଗ କରିବା ଉଚିତ ॥ ୩୬ ॥



ଏହି କାମଜ ଏବଂ କ୍ରୋଧଜ ଅଠର ଦୋଷର ମୂଳ ଯେଉଁ ଲୋଭକୁ ବିଦ୍ୱାନ୍ ଲୋକ ଜାଣନ୍ତି, ସେଗୁଡିକୁ ଅତ୍ୟନ୍ତ ପ୍ରଯତ୍ନର ସହିତ ରାଜା ଜୟ କରିବା ଉଚିତ; କାରଣ ଏହି ଲୋଭରୁହିଁ ପୂର୍ବୋକ୍ତ ୧୮ଟି ଦୋଷ ଏବଂ ଅନ୍ୟ କେତେକ ଦୁର୍ଗୁଣ ଉତ୍ପନ୍ନ ହୁଏ । ଅତଏବ ହେ ଗୃହସ୍ଥଗଣ, ରାଜାର ଜ୍ୟେଷ୍ଠପୁତ୍ର ହୋଇ ମଧ୍ୟ, ଯଦି ତାଠାରେ ଏହିପରି ଦୋଷ-ଦୁର୍ଗୁଣ ଥିବ ତେବେ ତାକୁ କଦାପି ରାଜା କରିବ ନାହିଁ । ଯଦି ଭୁଲ ବଶତଃ ହୋଇଥିବ, ତେବେ ତାହାକୁ ରାଜଗାଦିଚ୍ୟୁତ କରି କୌଣସି ଯୋଗ୍ୟ ପୁରୁଷ, ଯେ ରାଜବଂଶୀୟ ହୋଇଥିବ, ତାହାକୁ ରାଜ୍ୟାଧିକାରୀ କରିବ । ଯାହାଦ୍ୱାରା ପ୍ରଜାମାନଙ୍କ ମଧ୍ୟରେ ଆନନ୍ଦ, ମଙ୍ଗଳ ବୃଦ୍ଧି ଲାଭ କରିବ ॥ ୩୭ ॥

ସୈନାପତ୍ୟଂ ଚ ରାଜ୍ୟଂ ଚ ଦଣ୍ଡନେତୃତ୍ୱମେବ ଚ ।
ସର୍ବଲୋକାଧିପତ୍ୟଂ ଚ ବେଦଶାସ୍ତ୍ରବିଦର୍ହତି ॥୩୮॥

( ମନୁ. ଅ. ୧୨ । ଶ୍ଳୋ. ୧୦୦ )

ମୌଲାନ୍ ଶାସ୍ତ୍ରବିଦଃ ଶୂରାନ୍ ଲବ୍ଧଲକ୍ଷାନ୍କୁଲୋ-ଦ୍‌ଗତାନ୍ ।
ସଚିବାନ୍ ସପ୍ତ ଚାଷ୍ଟୌ ବା ପ୍ରକୁର୍ବୀତ ପରୀକ୍ଷିତାନ୍ ॥ ॥୩୯॥

ଅନ୍ୟାନପି ପ୍ରକୁର୍ବୀତ ଶୁଚୀନ୍ପ୍ରାଜ୍ଞାନବସ୍ଥିତାନ୍ ।
ସମ୍ୟଗର୍ଥସମାହର୍ତ୍ତୄନମାତ୍ୟାନ୍ ସୁପରୀକ୍ଷିତାନ୍ ॥ ॥୪୦॥

( ମନୁ. ଅ. ୭ । ଶ୍ଳୋ. ୫୪, ୬୦ )

ଅର୍ଥ:— ଯେ ବେଦଶାସ୍ତ୍ରଜ୍ଞ, ଧର୍ମାତ୍ମା, ଜିତେନ୍ଦ୍ରିୟ, ନ୍ୟାୟକାରୀ ଏବଂ ଆତ୍ମବଳଯୁକ୍ତ ପୁରୁଷ ଅଟେ, ତାହାକୁ ସେନା, ରାଜ୍ୟ, ଦଣ୍ଡନୀତି ଏବଂ ପ୍ରଧାନ ପଦର ଅଧିକାର ଦିଆଯିବା ଉଚିତ, ଅନ୍ୟ କ୍ଷୁଦ୍ରବୁଦ୍ଧିକୁ ଦିଆଯିବା ଉଚିତ ନୁହେଁ ।। ୩୮ ।।

ଯେ ନିଜର ରାଜ୍ୟରେ ଜନ୍ମ ଗ୍ରହଣକରିଥିବେ, ଶାସ୍ତ୍ର, ଶୂରବୀର, ଯାହାର ବିଚାର କେବେ ନିଷ୍ଫଳ ହୁଏ ନାହିଁ, କୁଳୀନ, ଧର୍ମାତ୍ମା ଏବଂ ସ୍ୱରାଜ୍ୟ ଭକ୍ତ ହୋଇଥିବେ ସେହିପରି ସାତ ଆଠଜଣ ପୁରୁଷଙ୍କୁ ପରୀକ୍ଷା କରି ମନ୍ତ୍ରୀ କରିବେ ଏବଂ ଏହି ସଭାରେ ଅଷ୍ଟମ ବା ନବମ ବ୍ୟକ୍ତି ରାଜା ହେବେ । ଏମାନେ ସମସ୍ତେ ମିଳିତଭାବରେ କର୍ତ୍ତବ୍ୟାକର୍ତ୍ତବ୍ୟ କର୍ମର ବିଚାର କରିବେ ।। ୩୯ ।।

ଏହିପରି ଭାବରେ ଅନ୍ୟ ରାଜ୍ୟ ଏବଂ ସେନାଧିକାରୀ ଯେତେ ଲୋକଙ୍କ ଦ୍ୱାରା ରାଜ୍ୟକାର୍ଯ୍ୟ ନିର୍ବାହ ହୋଇପାରିବ, ସେତେ ଜଣ ପବିତ୍ର, ଧାର୍ମିକ, ବିଦ୍ୱାନ୍, ଚତୁର ଏବଂ ସ୍ଥିର ବୁଦ୍ଧି ପୁରୁଷମାନଙ୍କୁ ରାଜ୍ୟସାମଗ୍ରୀର ବୃଦ୍ଧି କରିବାରେ ନିଯୁକ୍ତ କରିବେ ।।୪୦।।

ଦୂତଂ ଚୈବ ପ୍ରକୁର୍ବୀତ ସର୍ବଶାସ୍ତ୍ରବିଶାରଦମ୍ ।
ଇଙ୍ଗିତାକାରଚେଷ୍ଟଜ୍ଞଂ ଶୁଚିଂ ଦକ୍ଷଂ କୁଲୋଦଗତମ୍ ।।
।।୪୧।।

ଅଲବ୍ଧମିଚ୍ଛେଦ୍ଦଣ୍ଡେନ ଲବ୍ଧଂ ରକ୍ଷେଦବେକ୍ଷୟା ।

ରକ୍ଷିତଂ ବର୍ଦ୍ଧୟେଦ୍‌ବୃଦ୍ଧ୍ୟା ବୃଦ୍ଧଂ ପାତ୍ରେଷୁ ନିଃକ୍ଷିପେତ୍ ॥୪୨॥
( ମନୁ. ଅ. ୭ । ଶ୍ଳୋ. ୬୩, ୧୦୧ )

ଅର୍ଥ: — ଯେଉଁ ବ୍ୟକ୍ତି ସର୍ବଶାସ୍ତ୍ର ନିପୁଣ, ନେତ୍ରାଦିର ସଂକେତ ସ୍ୱରୂପ ଓ ଚେଷ୍ଟାରୁ ଅନ୍ୟର ହୃଦସ୍ଥ କଥା ଜାଣିବାରେ ସମର୍ଥ, ଶୁଦ୍ଧ, ବିଶେଷ ସ୍ମୃତିଯୁକ୍ତ, ଦେଶକାଳ ବିଷୟରେ ଯଥାର୍ଥ ଜ୍ଞାନୀ, ସୁନ୍ଦର ରୂପଯୁକ୍ତ, ପ୍ରସିଦ୍ଧ ବ୍ୟକ୍ତି ଏବଂ ଯେ ନିଜର କୁଳର ମୁଖ୍ୟ ଅଟେ, ତାହାକୁ ମୁଖ୍ୟ ଦୂତ ଏବଂ ସ୍ୱରାଜ୍ୟ ତଥା ପରରାଜ୍ୟର ସମାଚାର ସଂଗ୍ରହପାଇଁ ଅନ୍ୟଦୂତମାନଙ୍କୁ ମଧ୍ୟ ନିଯୁକ୍ତ କରିବେ ॥୪୧॥

ତଥା ରାଜାପ୍ରଭୃତି ରାଜପୁରୁଷ ଅଲବ୍ଧ ରାଜ୍ୟର ଇଚ୍ଛା ଦଣ୍ଡଦ୍ୱାରା, ପ୍ରାପ୍ତ ରାଜ୍ୟକୁ ରକ୍ଷାଦ୍ୱାରା, ରକ୍ଷିତ ରାଜ୍ୟ ଏବଂ ଧନକୁ ବ୍ୟାପାର ଏବଂ ସୁଧ ଦ୍ୱାରା ବଢ଼ାଇବେ, ସୁପାତ୍ର-ଦ୍ୱାରା ସତ୍ୟବିଦ୍ୟା ଏବଂ ସତ୍ୟଧର୍ମର ପ୍ରଚାର ପ୍ରଭୃତି ଉତ୍ତମ ବ୍ୟବହାର ନିମିତ୍ତ ବର୍ଦ୍ଧିତ ଧନ ପ୍ରଭୃତି ପଦାର୍ଥକୁ ବ୍ୟୟକରି ସର୍ବଦା ସମସ୍ତଙ୍କର ଉନ୍ନତିରେ ବ୍ରତୀ ହେବେ ॥ ୪୨ ॥

ବିଧି:— ସବୁବେଳେ ସ୍ତ୍ରୀ ପୁରୁଷ ୧୦ଘଣ୍ଟା ରାତିରେ ଶୟନ ଏବଂ ରାତିର ଶେଷପ୍ରହର ବା ୪ଘଣ୍ଟାରେ ଶଯ୍ୟାତ୍ୟାଗକରି ପ୍ରଥମେ ହୃଦୟରେ ପରମେଶ୍ୱରଙ୍କୁ ଚିନ୍ତନକରି ଧର୍ମ ଏବଂ ଅର୍ଥର ବିଚାର କରିବେ ଏବଂ ଧର୍ମ ଓ ଅର୍ଥର ଅନୁଷ୍ଠାନ ବା ଉଦ୍ୟୋଗ କରିବାରେ ଯଦି କୌଣସି କଷ୍ଟହେବ ତଥାପି ଧର୍ମଯୁକ୍ତ ପୁରୁଷାର୍ଥକୁ କଦାପି ତ୍ୟାଗକରିବେ ନାହିଁ କିନ୍ତୁ ସବୁବେଳେ ଶରୀର ଓ ଆତ୍ମାର ରକ୍ଷା ନିମନ୍ତେ ଯୁକ୍ତାହାର, ବିହାର, ଔଷଧ ସେବନ, ସୁପଥ୍ୟ ପ୍ରଭୃତି ଦ୍ୱାରା ନିରନ୍ତର ଉଦ୍ୟୋଗକରି ବ୍ୟାବହାରିକ ଏବଂ ପାରମାର୍ଥିକ କର୍ତ୍ତବ୍ୟ

କର୍ମର ସିଦ୍ଧି ନିମନ୍ତେ ଈଶ୍ୱରଙ୍କର ସ୍ତୁତି ପ୍ରାର୍ଥନା ଓ ଉପାସନା କରିବେ, କାରଣ ପରମେଶ୍ୱରଙ୍କର କୃପା ଓ ସହାୟତାରେ ମହା କଠିନ କାର୍ଯ୍ୟ ମଧ୍ୟ ସୁଗମତାରେ ସିଦ୍ଧହୁଏ । ଏଥିପାଇଁ ନିମ୍ନଲିଖିତ ମନ୍ତ୍ର ପାଠ କରି ପରମେଶ୍ୱରଙ୍କୁ ପ୍ରାର୍ଥନା ଉପାସନା କରିବେ –

* ଓମ୍ ପ୍ରାତରଗ୍ନିଂ ପ୍ରାତରିନ୍ଦ୍ରଂ ହବାମହେ ପ୍ରାତର୍ମିତ୍ରାବରୁଣା ପ୍ରାତରଶ୍ୱିନା । ପ୍ରାତର୍ଭଗଂ ପୂଷଣଂ ବ୍ରହ୍ମଣସ୍ପତିଂ ପ୍ରାତସ୍‌ସୋମମୁତ ରୁଦ୍ରଂ ହୁବେମ ॥୧॥

---

* ହେ ସ୍ତ୍ରୀ ପୁରୁଷଗଣ ! ଯେପରି ଆମେ ବିଦ୍ୱାନ୍ ଏବଂ ଉପଦେଶକ ଗଣ (ପ୍ରାତଃ) ପ୍ରଭାତ ସମୟରେ (ଅଗ୍ନିମ୍) ସ୍ୱପ୍ରକାଶ ସ୍ୱରୂପ ପ୍ରଭୁଙ୍କୁ (ପ୍ରାତଃ) (ଇନ୍ଦ୍ରମ୍) ପରମୈଶ୍ୱର୍ଯ୍ୟ ପ୍ରଦାନକାରୀ ପରମୈଶ୍ୱର୍ଯ୍ୟଯୁକ୍ତ (ପ୍ରାତଃ) (ମିତ୍ରାବରୁଣା) ପ୍ରାଣ ଓ ଉଦାନ ସଦୃଶ ପ୍ରିୟ ଏବଂ ସର୍ବଶକ୍ତିମାନ୍ (ପ୍ରାତଃ) (ଅଶ୍ୱିନା) ସୂର୍ଯ୍ୟ-ଚନ୍ଦ୍ରର ଉତ୍ପତ୍ତି କର୍ତ୍ତା ପରମାତ୍ମାଙ୍କୁ (ହବାମହେ) ସ୍ତୁତି କରୁଛୁଁ ଏବଂ (ପ୍ରାତଃ) (ଭଗମ୍) ଭଜନୀୟ ସେବନୀୟ ଐଶ୍ୱର୍ଯ୍ୟଯୁକ୍ତ (ପୂଷଣମ୍) ପୁଷ୍ଟିକର୍ତ୍ତା (ବ୍ରହ୍ମଣସ୍ପତିମ୍) ନିଜର ଉପାସକ ଓ ବେଦ ତଥା ବ୍ରହ୍ମାଣ୍ଡର ପାଳନକର୍ତ୍ତା (ପ୍ରାତଃ) (ସୋମମ୍) ଅନ୍ତର୍ଯ୍ୟାମୀ ପ୍ରେରକ (ଉତ) ଏବଂ (ରୁଦ୍ରମ୍) ପାପିଗଣଙ୍କୁ ପୀଡା ପ୍ରଦାନକାରୀ, ସର୍ବରୋଗନାଶକ ଜଗଦୀଶ୍ୱରଙ୍କର (ହୁବେମ) ସ୍ତୁତି ପ୍ରାର୍ଥନା କରୁଛୁଁ, ସେହିପରି ତୁମେମାନେ ମଧ୍ୟ ପ୍ରଭାତ ବେଳାରେ ପ୍ରଭୁଙ୍କର ଉପାସନା କର ॥୧॥

※ ପ୍ରାତର୍ଜିତଂ ଭଗମୁଗ୍ରଂ ହୁବେମ ବୟଂ ପୁତ୍ରମଦ୍ଦି-ତେର୍ଯୋ ବିଧର୍ତା । ଆଧ୍ରଶ୍ଚିଦ୍ୟଂ ମନ୍ୟମାନସ୍ତୁର-ଶ୍ଚିଦ୍ରାଜା ଚିଦ୍ୟଂ ଭଗଂ ଭକ୍ଷୀତ୍ୟାହ ॥୨॥

---

※ (ପ୍ରାତଃ) ରାତ୍ରିର ଅନ୍ତିମ ପାଞ୍ଚଘଡ଼ି ମଧ୍ୟରେ [ବ୍ରାହ୍ମମୁହୂର୍ତ୍ତରେ] (ଜିତମ୍) ଜୟଶୀଳ, (ଭଗମ୍) ଐଶ୍ୱର୍ଯ୍ୟପ୍ରଦ, (ଉଗ୍ରମ୍) ତେଜସ୍ୱୀ (ଅଦିତେଃ ପୁତ୍ରମ୍) ଅନ୍ତରିକ୍ଷର ପୁତ୍ର ସ୍ୱରୂପ ସୂର୍ଯ୍ୟଙ୍କର ଉତ୍ପତ୍ତି କର୍ତ୍ତା ଏବଂ (ଯଃ) ଯେ ସୂର୍ଯ୍ୟାଦି ଲୋକ-ଲୋକାନ୍ତରର (ବିଧର୍ତ୍ତା) ଧାରଣକର୍ତ୍ତା (ଆଧ୍ରଃ) ଚତୁର୍ଦ୍ଦିଗରୁ ସମସ୍ତଙ୍କର ଧାରଣକର୍ତ୍ତା (ଯଂ ଚିତ୍ ମନ୍ୟମାନଃ) ଯେ କୌଣସି ପଦାର୍ଥର ପୂର୍ଣ୍ଣଜ୍ଞାତା (ତୁରଶ୍ଚିତ୍) ଦୁଷ୍ଟଙ୍କର ଦଣ୍ଡଦାତା (ରାଜା) ସମସ୍ତଙ୍କର ପ୍ରକାଶକ ଅଟନ୍ତି (ଚିତ୍) ଏବଂ (ଯଂ) ଯେଉଁ (ଭଗମ୍) ଭଜନୀୟ ସ୍ୱରୂପଙ୍କୁ (ଭକ୍ଷୀତି) ଏହି ସ୍ୱରୂପରେ ସେବନ କରୁଛି, ସେହି ପରମପିତା ପରମାତ୍ମା ଏହିପରି (ଆହ) ଉପଦେଶ କରୁଛ-ନ୍ତି କି, ହେ ମନୁଷ୍ୟଗଣ ! ତୁମେମାନେ, ସୂର୍ଯ୍ୟାଦିଲୋକ (ଜଗତ୍)ର ଉତ୍ପାଦନ ଓ ଧାରଣକର୍ତ୍ତା ମୋତେ ଉପାସନା କର ଏବଂ ମୋର ଆଜ୍ଞା (ଉପଦେଶ) ଅନୁଯାୟୀ ପରିଚାଳିତ ହୁଅ, ଯାହାଦ୍ୱାରା ତୁମେମାନେ ସର୍ବଦା ଉନ୍ନତିଶୀଳ ହେବ । ଏଣୁ (ବୟଂ) ଆମ୍ଭେମାନେ ସେହି ସତ୍ୟୋପଦେଶକ ପ୍ରଭୁଙ୍କର (ହୁବେମ) ସ୍ତୁତି କରୁଅଛୁଁ ॥୨॥

* ଭଗ ପ୍ରଣେତର୍ଭଗ ସତ୍ୟରାଧୋ ଭଗେମାଂ ଧିୟମୁଦବା ଦଦନ୍ନଃ । ଭଗ ପ୍ର ଣୋ ଜନୟ ଗୋଭି-ରଶ୍ୱୈର୍ଭଗ ପ୍ର ନୃଭିର୍ନୃବନ୍ତଃ ସ୍ୟାମ ॥୩॥

† ଉତେଦାନୀଂ ଭଗବନ୍ତଃ ସ୍ୟାମୋତ ପ୍ରପିତ୍ୱ ଉତ ମଧ୍ୟେ ଅହ୍ନାମ୍ । ଉତୋଦିତା ମଘବନ୍ତ୍ ସୂର୍ଯ୍ୟସ୍ୟ ବୟଂ ଦେବାନାଂ ସୁମତୌ ସ୍ୟାମ ॥୪॥

---

* ହେ (ଭଗ) ଭଜନୀୟ ସ୍ୱରୂପ (ପ୍ରଣେତଃ) ସମସ୍ତଙ୍କର ଉତ୍ପତ୍ତି କର୍ତ୍ତା, ସତ୍ୟାଚାରରେ ପ୍ରେରକ (ଭଗ) ଐଶ୍ୱର୍ଯ୍ୟପ୍ରଦ (ସତ୍ୟ-ରାଧଂ) ସତ୍ୟଧନର ଦାତା (ଭଗ) ସତ୍ୟକର୍ମ-ଆଚରଣକାରୀଙ୍କୁ ଐଶ୍ୱର୍ଯ୍ୟଦାତା ପରମେଶ୍ୱର ! (ନଃ) ଆମ୍ଭମାନଙ୍କୁ ( ଇମାମ୍ ) ଏହି ( ଧିୟମ୍ ) ପ୍ରଜ୍ଞା (ଦଦତ୍) ପ୍ରଦାନ କରନ୍ତୁ ଏବଂ "ଧୀ" ଦାନଦ୍ୱାରା ଆମ୍ଭମାନଙ୍କର (ଉଦବ) ରକ୍ଷାକରନ୍ତୁ । ହେ (ଭଗ) ଐଶ୍ୱର୍ଯ୍ୟପ୍ରଦ ! ଆପଣ (ଗୋଭିଃ) ଗୋଧନ-ଆଦି ଏବଂ (ଅଶ୍ୱୈଃ) ଅଶ୍ୱ-ଆଦି ଉତ୍ତମ ପଶୁମାନଙ୍କର ସଂଯୋଗରେ [ପ୍ରଦାନକରି] (ନଃ) ଆମ୍ଭମାନଙ୍କ ନିମିତ୍ତ ରାଜ୍ୟଶ୍ରୀକୁ (ପ୍ରଜନୟ) ପ୍ରକଟ [ପ୍ରଦାନ] କରନ୍ତୁ । (ଭଗ) ଆପଣଙ୍କ କୃପାବଳରେ ଆମ୍ଭେମାନେ (ପ୍ର) ପ୍ରକୃଷ୍ଟ ରୂପରେ (ନୃଭିଃ) ଉତ୍ତମ ମନୁଷ୍ୟମାନଙ୍କ ଦ୍ୱାରା (ନୃବନ୍ତଃ) ବହୁ ବୀରପୁରୁଷଯୁକ୍ତ (ସ୍ୟାମ) ହେବୁ ॥୩॥

† ହେ ଭଗବାନ୍ ! ଆପଣଙ୍କର କୃପା (ଉତ) ଏବଂ ନିଜର ପୁରୁଷାର୍ଥ ବଳରେ ଆମେମାନେ ( ଇଦାନୀମ୍ ) ବର୍ତ୍ତମାନ ସମୟରେ (ପ୍ରପିତ୍ୱେ) ପ୍ରକର୍ଷତା ଓ ଉତ୍ତମତାର ପ୍ରାପ୍ତିରେ

* ଭଗ ଏବ ଭଗବାଁ ଅସ୍ତୁ ଦେବାସ୍ତେନ ବୟଂ ଭଗବନ୍ତଃ ସ୍ୟାମ । ତଂ ତ୍ୱା ଭଗ ସର୍ବ ଇଜ୍ଜୋହବୀତି ସ ନୋ ଭଗ ପୁରଏତା ଭବେହ ॥୪॥

(ଉତ) ଏବଂ (ଅହ୍ନାମ୍ ମଧ୍ୟେ) ଏହି ଦିନ ମାନଙ୍କ ମଧ୍ୟରେ (ଭଗବନ୍ତଃ) ଐଶ୍ୱର୍ଯ୍ୟଯୁକ୍ତ ଏବଂ ଶକ୍ତିଶାଳୀ (ସ୍ୟାମ) ହେବୁ । (ଉତ) ଏବଂ ହେ (ମଘବନ୍) ପରମପୂଜିତ, ଅସଂଖ୍ୟ ଧନ-ଦାତା ! (ସୂର୍ଯ୍ୟସ୍ୟ) ସୂର୍ଯ୍ୟଲୋକର (ଉଦିତା) ଉଦୟରେ (ଦେବାନାମ୍) ପୂର୍ଣ୍ଣବିଦ୍ୱାନ୍ ଓ ଧାର୍ମିକ ଆପଣମାନଙ୍କର (ସୁମତୌ) ଉତ୍ତମ ପ୍ରଜ୍ଞାରେ (ଉତ) ଏବଂ ସୁମତରେ (ବୟଂ) ଆମ୍ଭେମାନେ (ସ୍ୟାମ) ସଦା ପ୍ରବୃତ୍ତ ହେଉଁ ॥୦॥

* ହେ (ଭଗ) ସକଳ ଐଶ୍ୱର୍ଯ୍ୟ ସମ୍ପନ୍ନ ଜଗଦୀଶ୍ୱର ! ଯେହେତୁ (ତମ୍, ତ୍ୱା) ସେହି ଆପଣଙ୍କର (ସର୍ବଃ) ସମସ୍ତ ସଜ୍ଜନ (ଇଜ୍ଜୋହବୀତି) ନିଶ୍ଚିତରୂପେ ପ୍ରଶଂସା କରନ୍ତି, (ସଃ, ଭଗ) ତେଣୁ ହେ ଐଶ୍ୱର୍ଯ୍ୟପ୍ରଦ ! ଆପଣ (ଇହ) ଏହି ସଂସାରରେ ଏବଂ (ନଃ) ଆମ୍ଭମାନଙ୍କର ଗୃହାଶ୍ରମରେ (ପୁରଏତା) ଅଗ୍ରଗାମୀ ହୋଇ ଏବଂ ସମ୍ମୁଖରେ ରହି ସତ୍ୟକର୍ମରେ ଆମ୍ଭମାନଙ୍କର (ଭବ) ବୃଦ୍ଧି କରନ୍ତୁ । [ପ୍ରେରଣକାରୀ] ହୁଅନ୍ତୁ । ଯେଣୁ ଆପଣ ହିଁ [ଭଗଏବ] ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟଯୁକ୍ତ ଏବଂ ସମଗ୍ର ଐଶ୍ୱର୍ଯ୍ୟର ଦାତାହେତୁ ଆମ୍ଭମାନଙ୍କର [ଭଗବାନ୍] ପୂଜନୀୟ ଦେବ [ଅସ୍ତୁ] ଅଟନ୍ତି, [ତେନ] ତେଣୁ [ଦେବାଃ, ବୟମ୍] ଆମେ ବିଦ୍ୱାନ୍‌ମାନେ [ଭଗବନ୍ତଃ] ସକଳ ଐଶ୍ୱର୍ଯ୍ୟ ସମ୍ପନ୍ନହୋଇ ସେହିର ମନ, ଧନଆଦି ସହିତ ସମସ୍ତ ସଂସାରର ଉପକାରରେ [ସ୍ୟାମ] ପ୍ରବୃତ୍ତ ହେବୁ ॥୫॥

ତତ୍ପଶ୍ଚାତ୍ ଶୌଚ, ଦନ୍ତଧାବନ, ମୁଖ ପ୍ରକ୍ଷାଳନ, କରସାରିବାପରେ, ସ୍ନାନ କରିବେ । ତତ୍ପରେ ଏକକୋଶ ବା ଦେଢକୋଶ ଦୂରରେଥିବା ଜଙ୍ଗଲକୁ ଯାଇଁ, ସେଠାରେ ଏକାନ୍ତରେ ଯୋଗାଭ୍ୟାସର ରୀତିଅନୁସାରେ ପରମେଶ୍ବରଙ୍କ ଉପାସନା କରିବାର ସୂର୍ଯ୍ୟୋଦୟ ବା ସକାଳ ହେବାର ଅଧଘଣ୍ଟା ବା ଏକଘଣ୍ଟା ଠାରୁ ଘରକୁଫେରି ସନ୍ଧ୍ୟୋପାସନା ପ୍ରଭୃତି ନିମ୍ନଲିଖିତ ନିତ୍ୟକର୍ମାନୁସାରେ ଯଥାବିଧି ଉଚିତ ସମୟରେ କରିବେ । ଏ ସମସ୍ତ ନିତ୍ୟକରଣୀୟ କର୍ମରେ ଲିଖିତ ମନ୍ତ୍ର ଗୁଡ଼ିକର ଅର୍ଥ ଓ ପ୍ରମାଣ ପଞ୍ଚ ମହାଯଜ୍ଞ ବିଧିରୁ ଦେଖିନେବେ ।

ଓମ୍ ଅମୃତୋପସ୍ତରଣମସି ସ୍ବାହା ॥୧॥
ଓମ୍ ଅମୃତାପିଧାନମସି ସ୍ବାହା ॥୨॥
ଓମ ସତ୍ୟଂ ଯଶଃ ଶ୍ରୀର୍ମୟି ଶ୍ରୀଃ ଶ୍ରୟତାଂ ସ୍ବାହା ॥୩॥

( ଆଶ୍ବଲାୟନ ଗୃ. ସୂ. ଅ. ୧ । କଂ ୨୪ । ୧୨, ୨୧, ୨୨ )

ପ୍ରଥମେ ଶରୀର ଶୁଦ୍ଧି ଅର୍ଥାତ୍ ସ୍ନାନ ପର୍ଯ୍ୟନ୍ତ କର୍ମ କରିସାରିବାପରେ ସଂଧ୍ୟୋପାସନା ଆରମ୍ଭ କରିବେ । ଆରମ୍ଭରେ ଦକ୍ଷିଣ ହସ୍ତରେ ଜଳନେଇ ଏହି ତିନିମନ୍ତ୍ର ମଧ୍ୟରୁ ପ୍ରତ୍ୟେକ ମନ୍ତ୍ରରେ ଥରେ ଥରେ ଆଚମନ କରି, ଦୁଇହାତ ଧୋଇ କାନ, ଆଖି, ନାସିକା ପ୍ରଭୃତିକୁ ଶୁଦ୍ଧ ଜଳରେ ସ୍ପର୍ଶକରି, ଶୁଦ୍ଧ ସ୍ଥାନ, ପବିତ୍ର ଆସନଉପରେ, ଯେଉଁଦିଗକୁ ବାୟୁ ପ୍ରବାହିତ ହେଉଥିବ, ସେହିଦିଗକୁ ମୁହଁକରି ନାଭିର ନିମ୍ନସ୍ଥ

ମୂଳେନ୍ଦ୍ରିୟକୁ ଉପରଆଡକୁ ସଂକୋଚକରି, ହୃଦୟସ୍ଥ ବାୟୁକୁ ବଳପୂର୍ବକ ବାହାରକରି ଅଟକାଇ ରଖିବେ, ପରେ ଧୀରେ ଧୀରେ ଭିତରକୁ ନେଇ ଭିତରେ କିଛୁସମୟ ଅଟକାଇବେ । ଏହା ଗୋଟିଏ ପ୍ରାଣାୟାମ ହେଲା ଏହିପରି ଭାବରେ ନ୍ୟୂନାତି ନ୍ୟୂନରେ ତିନିଥର ପ୍ରାଣାୟାମ କରିବେ । ନାକକୁ ହାତରେ ଧରି କରିବେ ନାହିଁ । ଏହି ସମୟରେ ପରମେଶ୍ୱରଙ୍କର ସ୍ତୁତି-ପ୍ରାର୍ଥନା ଉପାସନା ହୃଦୟରେ କରି—

ଓମ୍ ଶନ୍ନୋ ଦେବୀରଭିଷ୍ଟୟ ଆପୋ ଭବନ୍ତୁ ପୀତୟେ । ଶଂୟୋରଭି ସ୍ରବନ୍ତୁ ନଃ ॥

( ଯଜୁ: ଅ. ୩୬ । ମଂ. ୧୨ ॥ )

ଏହି ମନ୍ତ୍ରକୁ ଥରେଥରେ ପଢି ତିନିଥର ଆଚମନ କରିବେ । ପରେ ପାତ୍ରରେଥିବା ଜଳକୁ ମଧ୍ୟମା ଓ ଅନାମିକା ଅଙ୍ଗୁଳିଦ୍ୱୟରେ ସ୍ପର୍ଶକରି ପ୍ରଥମେ ଦକ୍ଷିଣ ଓ ପରେ ବାମପାର୍ଶ୍ୱ ନିମ୍ନଲିଖିତ ମନ୍ତ୍ରରେ ସ୍ପର୍ଶକରିବେ –

ଓମ୍ ବାକ୍ ବାକ୍ ॥

ଏହି ମନ୍ତ୍ରରେ ମୁଖର ଦକ୍ଷିଣ ଓ ବାମ ପାର୍ଶ୍ୱ ।

ଓମ୍ ପ୍ରାଣଃ ପ୍ରାଣଃ ॥

ଏହି ମନ୍ତ୍ରରେ ଦକ୍ଷିଣ ଓ ବାମ ନାସିକା ଛିଦ୍ର ।

ଓମ୍ ଚକ୍ଷୁଶ୍ଚକ୍ଷୁଃ ॥

ଏହି ମନ୍ତ୍ରରେ ଦକ୍ଷିଣ ଓ ବାମନେତ୍ର ।

ଓମ୍ ଶ୍ରୋତ୍ରଂ ଶ୍ରୋତ୍ରମ୍ ॥
ଏହି ମନ୍ତ୍ରରେ ଦକ୍ଷିଣ ଓ ବାମକର୍ଣ୍ଣ ।
ଓମ୍ ନାଭିଃ ॥ ଏହାଦ୍ୱାରା ନାଭି ।
ଓମ୍ ହୃଦୟମ୍ ॥ ଏହାଦ୍ୱାରା ହୃଦୟ ।
ଓମ୍ କଣ୍ଠଃ ॥ ଏହାଦ୍ୱାରା କଣ୍ଠ ।
ଓମ୍ ଶିରଃ ॥ ଏହାଦ୍ୱାରା ମସ୍ତକ ।
ଓମ୍ ବାହୁଭ୍ୟାଂ ଯଶୋବଲମ୍ ॥
ଏହି ମନ୍ତ୍ରରେ ବାହୁଦ୍ୱୟର ମୂଳସ୍କନ୍ଧ ଏବଂ
ଓମ୍ କରତଳକରପୃଷ୍ଠେ ॥
ଏହାଦ୍ୱାରା ଦୁଇହାତ ଉପର ଓ ତଳସ୍ପର୍ଶ କରି-ସାରି ମାର୍ଜନା ଆରମ୍ଭ କରିବେ ।
ଓମ୍ ଭୂଃ ପୁନାତୁ ଶିରସି ॥
ଏହି ମନ୍ତ୍ରରେ ଶିର ଉପରେ ।
ଓମ୍ ଭୁବଃ ପୁନାତୁ ନେତ୍ରୟୋଃ ॥
ଏହି ମନ୍ତ୍ରରେ ଦୁଇ ଚକ୍ଷୁ ଉପରେ ।
ଓମ ସ୍ୱଃ ପୁନାତୁ କଣ୍ଠେ ॥
ଏହି ମନ୍ତ୍ରରେ କଣ୍ଠ ଉପରେ ।
ଓମ୍ ମହଃ ପୁନାତୁ ହୃଦୟେ ॥
ଏହି ମନ୍ତ୍ରରେ ହୃଦୟ ଉପରେ ।
ଓମ୍ ଜନଃ ପୁନାତୁ ନାଭ୍ୟାମ୍ ॥
ଏହି ମନ୍ତ୍ରରେ ନାଭି ଉପରେ ।

ଓମ୍ ତପଃ ପୁନାତୁ ପାଦୟୋଃ ॥

ଏହି ମନ୍ତ୍ରରେ ଦୁଇ ପାଦ ଉପରେ ।

ଓମ୍ ସତ୍ୟଂ ପୁନାତୁ ପୁନଃଶିରସି ॥

ଏହି ମନ୍ତ୍ରରେ ମସ୍ତକ ଉପରେ ।

ଓମ୍ ଖଂ ବ୍ରହ୍ମ ପୁନାତୁ ସର୍ବତ୍ର

ଏହି ମନ୍ତ୍ରରେ ସମସ୍ତ ଅଂଗ ପ୍ରତ୍ୟଂଗ ଉପରେ ଜଳ ସିଞ୍ଚନ କରିବେ ।

ପୁନର୍ବାର ପୂର୍ବୋକ୍ତ ନିୟମ ଅନୁସାରେ ପ୍ରାଣାୟାମକ୍ରିୟା କରିବେ ଏବଂ ତାହା ସଂଗେସଂଗେ ନିମ୍ନଲିଖିତ ମନ୍ତ୍ରପାଠ କରିବେ ।

ଓମ୍ ଭୂଃ ; ଓମ ଭୁବଃ ; ଓମ୍ ସ୍ୱଃ ; ଓମ୍ ମହଃ ; ଓମ୍ ଜନଃ ; ଓମ୍ ତପଃ ; ଓମ ସତ୍ୟମ୍ ॥

( ତୈତ୍ତିରିୟାରଣ୍ୟକ ପ୍ର. ୧୦ । ଅନୁ· ୨୭ )

ଏହି ରୀତିରେ ନ୍ୟୂନପକ୍ଷେ ୩ ଥର ବା ଅଧିକରୁ ଅଧିକ ୨୧ ଥର ପ୍ରାଣାୟାମ କରିବେ । ତତ୍‌ପଶ୍ଚାତ୍ ସୃଷ୍ଟିକର୍ତ୍ତା ପରମାତ୍ମା ଏବଂ ସୃଷ୍ଟିକ୍ରମ ବିଷୟରେ ବିଚାର ନିମ୍ନଲିଖିତ ମନ୍ତ୍ରପାଠ ସହିତ କରିବେ । ଜଗଦୀଶ୍ୱରଙ୍କୁ ସର୍ବବ୍ୟାପକ, ନ୍ୟାୟ-କାରୀ, ସର୍ବତ୍ର, ସର୍ବଦା ଜୀବଗଣଙ୍କର କର୍ମର ଦ୍ରଷ୍ଟା ବୋଲି ନିଶ୍ଚିତରୂପେ ମାନି ନିଜର ମନ ଓ ଆତ୍ମାକୁ ପାପପଥକୁ କଦାପି ଯିବାକୁ ଦେବେନାହିଁ, କିନ୍ତୁ ସର୍ବଦା ଧର୍ମଯୁକ୍ତ କର୍ମରେ ନିଯୁକ୍ତ ରଖିବେ ।

ଓମ୍ ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ତପସୋଽଧ୍ୟ-
ଜାୟତ । ତତୋ ରାତ୍ର୍ୟଜାୟତ ତତଃ ସମୁଦ୍ରୋ
ଅର୍ଣବଃ ॥୧॥

ସମୁଦ୍ରାଦର୍ଣବାଦଧି ସଂବତ୍ସରୋ ଅଜାୟତ ।
ଅହୋରାତ୍ରାଣି ବିଦଧଦ୍ୱିଶ୍ୱସ୍ୟ ମିଷତୋ ବଶୀ ॥୨॥
ସୂର୍ଯାଚନ୍ଦ୍ରମସୌ ଧାତା ଯଥାପୂର୍ବମକଳ୍ପୟତ୍ ।
ଦିବଂ ଚ ପୃଥିବୀଂ ଚାନ୍ତରିକ୍ଷମଥୋ ସ୍ୱଃ ॥୩॥
ଋ. ମଂ. ୧୦ । ସୂ. ୧୯୦ (ମଂ. ୧-୩)

ଏହି ମନ୍ତ୍ର ଗୁଡ଼ିକ ପାଠ କରି ସାରି, ପୁନଶ୍ଚ 'ଶନ୍ନୋ ଦେବୀ' ଏହି ଆଚମନ ମନ୍ତ୍ର ପାଠକରି ତିନିବାର ଆଚମନ କରିବେ । ତତ୍ପରେ ନିମ୍ନଲିଖିତ ମନ୍ତ୍ରରେ ସର୍ବବ୍ୟାପକ ପରମାତ୍ମାଙ୍କର ସ୍ତୁତି ପ୍ରାର୍ଥନା କରିବେ ।

ଓମ୍ ପ୍ରାଚୀଦିଗଗ୍ନିରଧିପତିରସିତୋ ରକ୍ଷିତାଦିତ୍ୟା
ଇଷବଃ । ତେଭ୍ୟୋ ନମୋଽଧିପତିଭ୍ୟୋ ନମୋ
ରକ୍ଷିତୃଭ୍ୟୋ ନମ ଇଷୁଭ୍ୟୋ ନମ ଏଭ୍ୟୋ ଅସ୍ତୁ ।
ଯୋଽସ୍ମାନ୍ ଦ୍ୱେଷ୍ଟି ଯଂ ବୟଂ ଦ୍ୱିଷ୍ମସ୍ତଂ ବୋ
ଜମ୍ଭେ ଦଧ୍ମଃ ॥୧॥
ଓମ୍ ଦକ୍ଷିଣା ଦିଗିନ୍ଦ୍ରୋଽଧିପତିସ୍ତିରଶ୍ଚିରାଜୀ ରକ୍ଷିତା
ପିତର ଇଷବଃ । ତେଭ୍ୟୋ··· ॥୨॥

ଓମ୍ ପ୍ରତୀଚୀ ଦିଗ୍‌ବରୁଣୋଽଧିପତିଃ ପୃଦାକୂ ରକ୍ଷିତା-ନ୍ନମିଷବଃ । ତେଭ୍ୟୋ... ॥୩॥

ଓମ ଉଦୀଚୀ ଦିକ୍‌ସୋମୋଽଧିପତିଃ ସ୍ୱଜୋ ରକ୍ଷିତା-ଶନିରିଷବଃ । ତେଭ୍ୟୋ... ॥୪॥

ଓମ୍ ଧ୍ରୁବା ଦିଗ୍‌ବିଷ୍ଣୁରଧିପତିଃ କଲ୍ମାଷଗ୍ରୀବୋ ରକ୍ଷିତା ବୀରୁଧ ଇଷବଃ । ତେଭ୍ୟୋ... ॥୫॥

ଓମ୍ ଊର୍ଦ୍ଧ୍ୱା ଦିଗ୍‌ବୃହସ୍ପତିରଧିପତିଃ ଶ୍ୱିତ୍ରୋ ରକ୍ଷିତା ବର୍ଷମିଷବଃ । ତେଭ୍ୟୋ... ॥୬॥

( ଅଥର୍ବ. କାଂ. ୩ । ସୂ. ୨୭ । ମଂ. ୧-୬ )

ଏହି ମନ୍ତ୍ର ଗୁଡ଼ିକ ପାଠକରିବା ସଂଗେସଂଗେ ଚତୁର୍ଦ୍ଦିଗରେ, ଉପରେ ଓ ବାହାରେ ପରମାତ୍ମା ପରିପୂର୍ଣ୍ଣ ଅଛନ୍ତି ବୋଲି ଜ୍ଞାନ କରି ନିର୍ଭୟ, ନିଶଙ୍କ, ଉତ୍ସାହୀ, ଆନନ୍ଦିତ ଓ ପୁରୁଷାର୍ଥୀ ହେବ ।

ତତ୍ପରେ ପରମାତ୍ମା ଙ୍କର ଉପସ୍ଥାନ-ଅର୍ଥାତ୍ ପରମାତ୍ମାଙ୍କର ଅତିନିକଟରେ ମୁଁ ଏବଂ ମୋର ଅତିନିକଟରେ ପରମାତ୍ମା ଅଛନ୍ତି ଏହି ବିଚାର ସହିତ ନିମ୍ନଲିଖିତ ଉପ-ସ୍ଥାନ ମଂତ୍ରଗୁଡ଼ିକୁ ପାଠ କରିବେ ।

ଜାତବେଦସେ ସୁନବାମ ସୋମମରାତୀୟତୋ ନି ଦହାତି ବେଦଃ । ସ ନଃ ପର୍ଷଦତି ଦୁର୍ଗାଣି ବିଶ୍ୱା ନାବେବ ସିନ୍ଧୁଂ ଦୁରିତାତ୍ୟଗ୍ନିଃ ॥୧॥

( ଋ. ମଂ. ୧ । ସୂ. ୯୯ । ମଂ. ୧ ॥ )

ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ
ବରୁଣସ୍ୟାଗ୍ନେଃ । ଆ ପ୍ରା ଦ୍ୟାବାପୃଥିବୀ ଅନ୍ତରିକ୍ଷ
ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥୧॥
( ଯଜୁ. ଅ. ୧୩ । ମଂ. ୪୬ ॥ )

ଉଦୁ ତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ ।
ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ ॥୨॥ (ଯଜୁ. ଅ. ୩୩।ମଂ. ୩୧ ॥ )
ଉଦ୍‌ବୟଂ ତମସସ୍ପରି ସ୍ୱଃ ପଶ୍ୟନ୍ତ ଉତ୍ତରମ୍ ।
ଦେବଂ ଦେବତ୍ରା ସୂର୍ଯ୍ୟମଗନ୍ମ ଜ୍ୟୋତିରୁତ୍ତମମ୍ ॥୩॥
( ଯଜୁ. ଅ. ୩୫। ମଂ. ୧୪ )

ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ । ପଶ୍ୟେମ
ଶରଦଃ ଶତଂ ଜୀବେମ ଶରଦଃ ଶତଂ ଶୃଣୁୟାମ
ଶରଦଃ ଶତଂ ପ୍ର ବ୍ରବାମ ଶରଦଃ ଶତମଦୀନାଃ
ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ॥୪॥
( ଯଜୁ. ଅ. ୩୬ । ମଂ. ୨୪ ॥ )

ଏହି ମନ୍ତ୍ରରେ ପରମାତ୍ମାଙ୍କର ଉପସ୍ଥାନକରି ପୁନଶ୍ଚ
'ଶନ୍ନୋଦେବୀଃ' ମନ୍ତ୍ରରେ ତିନିବାର ଆଚମନ କରିବେ ।
ତତ୍ପରେ ଗାୟତ୍ରୀ ମନ୍ତ୍ରର ଅର୍ଥ ବିଚାରି ପୂର୍ବକ ପରମାତ୍ମାଙ୍କର
ସ୍ତୁତି ପ୍ରାର୍ଥନୋପାସନା କରିବେ । ପୁନଃ :—

ହେ ପରମେଶ୍ୱର ଦୟାନିଧେ ! ଆପଣଙ୍କର କୃପାରୁ ଜପ, ଉପାସନାଦିକର୍ମ କରି ଆମ୍ଭେମାନେ ଧର୍ମ, ଅର୍ଥ, କାମ ଏବଂ ମୋକ୍ଷର ସିଦ୍ଧି ପ୍ରାପ୍ତ ହେଉଁ ।

ତତ୍ପରେ —

ଓମ୍ ନମଃ ଶମ୍ଭବାୟ ଚ ମୟୋଭବାୟ ଚ ନମଃ ଶଂକରାୟ ଚ ମୟସ୍କରାୟଚ ନମଃ ଶିବାୟ ଚ ଶିବତରାୟ ଚ ॥୫॥ ( ଯଜୁ ଅ. ୧୬ । ମଂ. ୪୧ ॥ )

ଏହି ମନ୍ତ୍ରରେ ପରମାତ୍ମାଙ୍କୁ ନମସ୍କାର କରି, (ଶନ୍ନୋଦେବୀଂ) ଏହି ମନ୍ତ୍ରରେ ତିନଥର ଆଚମନ ପୂର୍ବକ ଅଗ୍ନିହୋତ୍ର ଆରମ୍ଭ କରିବେ ।

ଇତି ସଂକ୍ଷେପତଃ ସଂଧ୍ୟୋପାସନବିଧିଃ ସମାପ୍ତଃ ॥୧॥

# ଅଥାଗ୍ନିହୋତ୍ରମ୍

ଯେପରି ସାୟଂପ୍ରାତଃ ଦୁଇ ସନ୍ଧି ସମୟରେ ସଂଧ୍ୟୋପାସନା କରିବେ ଠିକ୍ ସେହିପରି ଉଭୟ ସ୍ତ୍ରୀ ଏବଂ ପୁରୁଷ ନିତ୍ୟ ପ୍ରତି ଦୁଇବେଳା ଅଗ୍ନିହୋତ୍ର କରିବେ* ।

* କୌଣସି ବିଶେଷ କାରଣରୁ ସ୍ତ୍ରୀ କିଂବା ପୁରୁଷ ଯଦି ଅଗ୍ନିହୋତ୍ର ସମୟରେ ଏକତ୍ର ହୋଇ ପାରିବେନାହିଁ ତେବେ ଏକା ସ୍ତ୍ରୀ କିଂବା ପୁରୁଷ ଉଭୟଙ୍କ ତରଫରୁ ପ୍ରତି ମନ୍ତ୍ର ଦୁଇଥର ଲେଖାଏଁ ପାଠକରି ଦୁଇଟି କରି ଆହୁତି ଦେବେ ।

ପୃଷ୍ଠା ୨୭-୩୦ ଲିଖିତପ୍ରମାଣେ ଅଗ୍ନ୍ୟାଧାନ, ସମିଧା-ଚୟନ ଏବଂ ପୃଷ୍ଠା ୩୦ ଲିଖିତ 'ଓମ୍ ଅଦିତେଽନୁମନ୍ୟସ୍ୱ' ଇତ୍ୟାଦି ୪ ଟି ମନ୍ତ୍ରରେ ଯଥାବିଧି କୁଣ୍ଡର ଚତୁଷ୍ପାର୍ଶ୍ୱରେ ଜଳ ପ୍ରୋକ୍ଷଣକରି, ଶୁଦ୍ଧ କରାଯାଇଥିବା ସୁଗନ୍ଧାଦିଯୁକ୍ତ ଘିଅକୁ ଗରମକରି, ପାତ୍ରରେନେଇ କୁଣ୍ଡର ପଶ୍ଚିମଭାଗରେ ପୂର୍ବାଭିମୁଖ ବସି, ପୃଷ୍ଠା ୩୧-୩୨ ରେ ଲିଖିତ ଆଘାରାବାଜ୍ୟ-ଭାଗାହୁତି (ଘୃତ) ଦେଇ ନିମ୍ନଲିଖିତ ମନ୍ତ୍ରରେ ପ୍ରାତଃକାଳ ଅଗ୍ନିହୋତ୍ର କରିବେ –

ଓମ୍ ସୂର୍ଯ୍ୟୋ ଜ୍ୟୋତିର୍ଜ୍ୟୋତିଃ ସୂର୍ଯ୍ୟଃ ସ୍ୱାହା ॥୧॥
ଓମ୍ ସୂର୍ଯ୍ୟୋ ବର୍ଚ୍ଚୋ ଜ୍ୟୋତିର୍ବର୍ଚ୍ଚଃ ସ୍ୱାହା ॥୨॥
ଓମ୍ ଜ୍ୟୋତିଃ ସୂର୍ଯ୍ୟଃ ସୂର୍ଯ୍ୟୋ ଜ୍ୟୋତିଃ ସ୍ୱାହା ॥୩॥
ଓମ୍ ସଜୂର୍ଦ୍ଦେବେନ ସବିତ୍ରା ସଜୂରୁଷସେନ୍ଦ୍ରବତ୍ୟା ।
ଜୁଷାଣଃ ସୂର୍ଯ୍ୟୋ ବେତୁ ସ୍ୱାହା ॥୪॥

ନିମ୍ନଲିଖିତ ମନ୍ତ୍ର ସାୟଂକାଳୀନ ଆହୁତି ପାଇଁ ଉଦ୍ଦିଷ୍ଟ ।

ଓମ୍ ଅଗ୍ନିର୍ଜ୍ୟୋତିର୍ଜ୍ୟୋତିରଗ୍ନିଃ ସ୍ୱାହା ॥୧॥
ଓମ୍ ଅଗ୍ନିର୍ବର୍ଚ୍ଚୋ ଜ୍ୟୋତିର୍ବର୍ଚ୍ଚଃ ସ୍ୱାହା ॥୨॥
ଓମ୍ ଅଗ୍ନିର୍ଜ୍ୟୋତିର୍ଜ୍ୟୋତିରଗ୍ନିଃ ସ୍ୱାହା ॥୩॥



ଏହି ତୃଷ୍ଣୀସ୍ତମନ୍ତ୍ରଂ ମୌନ ଭାବରେ ଉଚ୍ଚାରଣକରି ତୃଷ୍ଣୀସ୍ତ ଆହୁତି ଦେବ ।

ଓମ୍ ସଜୂର୍ଦେବେନ ସବିତ୍ରା ସଜୂରାତ୍ର୍ୟେନ୍ଦ୍ରବତ୍ୟା । ଜୁଷାଣୋ ଅଗ୍ନିର୍ବେତୁ ସ୍ୱାହା ॥୪॥

( ଶୁ.-ଯଜୁ. ଅ. ୩।ମଂ. ୯, ୧୦ )

ବର୍ତ୍ତମାନ ନିମ୍ନଲିଖିତ ମନ୍ତ୍ରମାନଙ୍କରେ ପ୍ରାତଃସାୟଂ ଆହୁତି ଦେବାକୁ ହେବ ।

ଓମ୍ ଭୂରଗ୍ନୟେ ପ୍ରାଣାୟ ସ୍ୱାହା ॥ ଇଦମଗ୍ନୟେ ପ୍ରାଣାୟ—ଇଦନ୍ନ ମମ ॥୧॥

ଓମ୍ ଭୁବର୍ବାୟବେଽପାନାୟ ସ୍ୱାହା ॥ ଇଦଂ ବାୟବେଽପାନାୟ—ଇଦନ୍ନ ମମ ॥୨॥

ଓମ୍ ସ୍ୱରାଦିତ୍ୟାୟ ବ୍ୟାନାୟ ସ୍ୱାହା ॥ ଇଦମାଦିତ୍ୟାୟ ବ୍ୟାନାୟ —ଇଦନ୍ନ ମମ ॥୩॥

ଓମ୍ ଭୂର୍ଭୁବଃ ସ୍ୱରଗ୍ନିବାୟ୍ୱାଦିତ୍ୟେଭ୍ୟଃ ପ୍ରାଣାପାନବ୍ୟାନେଭ୍ୟଃ ସ୍ୱାହା॥ ଇଦମଗ୍ନିବାୟ୍ୱାଦିତ୍ୟେଭ୍ୟଃ ପ୍ରାଣାପାନବ୍ୟାନେଭ୍ୟଃ—ଇଦନ୍ନ ମମ ॥୪॥

ଓମ୍ ଆପୋ ଜ୍ୟୋତି ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ
ସ୍ୱରୋଂ ସ୍ୱାହା ॥୫॥

ଓମ୍ ଯାଂ ମେଧାଂ ଦେବଗଣାଃ ପିତରଶ୍ଚୋପାସତେ ।
ତୟା ମାମଦ୍ୟ ମେଧୟାଽଗ୍ନେ ମେଧାବିନଂ କୁରୁ
ସ୍ୱାହା ॥୬॥

( ଯଜୁ. ଅ. ୩୨।ମଂ. ୧୪ ॥ )

ଓମ୍ ବିଶ୍ୱାନି ଦେବ ସବିତର୍ଦୁରିତାନି ପରା ସୁବ ।
ଯଦ୍ଭଦ୍ରଂ ତନ୍ନ ଆସୁବ ସ୍ୱାହା ॥୭॥

( ଯଜୁ. ଅ. ୩୦।ମଂ. ୩ ॥ )

ଓମ୍ ଅଗ୍ନେ ନୟ ସୁପଥା ରାୟେ ଅସ୍ମାନ୍ ବିଶ୍ୱାନି
ଦେବ ବୟୁନାନି ବିଦ୍ୱାନ୍ । ଯୁୟୋଧ୍ୟସ୍ମଜ୍ଜୁହୁରା-
ଣମେନୋ ଭୂୟିଷ୍ଠାଂ ତେ ନମ ଉକ୍ତିଂ ବିଧେମ
ସ୍ୱାହା ॥୮॥

( ଯଜୁ. ଅ. ୪୦।ମଂ. ୧୬ ॥ )

ଏହି ଆଠ ମନ୍ତ୍ରରେ ଆଠଟି ଆହୁତି ଦେଇ ସାରି

ଓମ୍ ସର୍ବଂ ବୈ ପୂର୍ଣ୍ଣଂ ସ୍ୱାହା ॥

ଏହି ମନ୍ତ୍ରକୁ ତିନିଥର ପଢ଼ି ତିନି ପୂର୍ଣ୍ଣାହୁତି ଦେବେ ॥

ଇତ୍ୟଗ୍ନିହୋତ୍ରବିଧିଃ ସଂକ୍ଷେପତଃ ସମାପ୍ତଃ ॥୨॥



# ଅଥ ପିତୃଯଜ୍ଞଃ

ଅଗ୍ନିହୋତ୍ରବିଧି ପୂର୍ବ୍ବକର ପିତୃଯଜ୍ଞ କରିବେ ଅର୍ଥାତ୍ ଜୀବିତ ପିତାମାତା ପ୍ରଭୃତିଙ୍କର ଯଥାବତ୍ ସେବା କରିବାକୁ ପିତୃଯଜ୍ଞ କୁହାଯାଏ ॥ ୩ ॥

# ଅଥ ବଳିବୈଶ୍ୱଦେବବିଧିଃ

ଓମ୍ ଅଗ୍ନୟେ ସ୍ୱାହା ॥୧॥ ଓମ୍ ସୋମାୟ ସ୍ୱାହା ॥୨॥ ଓମ ଅଗ୍ନୀଷୋମାଭ୍ୟାଂ ସ୍ୱାହା ॥୩॥ ଓମ୍ ବିଶ୍ୱେଭ୍ୟୋ ଦେବେଭ୍ୟଃ ସ୍ୱାହା ॥୪॥ ଓମ୍ ଧନ୍ୱନ୍ତରୟେ ସ୍ୱାହା ॥୫॥ ଓମ୍ କୁହ୍ୱୈ ସ୍ୱାହା ॥୬॥ ଓମ୍ ଅନୁମତ୍ୟୈ ସ୍ୱାହା ॥୭॥ ଓମ୍ ପ୍ରଜାପତୟେ ସ୍ୱାହା ॥୮॥ ଓମ୍ ଦ୍ୟାବାପୃଥିବୀଭ୍ୟାଂ ସ୍ୱାହା ॥୯॥ ଓମ୍ ସ୍ୱିଷ୍ଟକୃତେ ସ୍ୱାହା ॥୧୦॥

ଏହି ଦଶମନ୍ତ୍ରରେ ଘୃତମିଶ୍ରିତ ଭାତ କିମ୍ବା ଯଦି ଭାତ ନହୁଏ ତେବେ ଲୁଣ, କ୍ଷାରଯୁକ୍ତ ଅନ୍ନ ଗୁଡ଼ ଅନ୍ୟ ଯାହାକିଛି ରନ୍ଧା ଯାଇଥିବ ତାହାକୁ ନେଇ ଦଶ ଆହୁତି ଦେବେ ।

ତତ୍ପରେ ନିମ୍ନଲିଖିତ ମନ୍ତ୍ରରେ ବଳିଦାନ କରିବେ —

ଓମ୍ ସାନୁଗାୟେନ୍ଦ୍ରାୟ ନମଃ ।। ଏଥିରେ ପୂର୍ବ ।
ଓମ୍ ସାନୁଗାୟ ଯମାୟ ନମଃ ।। ଏଥିରେ ଦକ୍ଷିଣ ।
ଓମ୍ ସାନୁଗାୟ ବରୁଣାୟ ନମଃ ।। ଏଥିରେ ପଶ୍ଚିମ ।
ଓମ୍ ସାନୁଗାୟ ସୋମାୟ ନମଃ ।। ଏଥିରେ ଉତ୍ତର ।
ଓମ୍ ମରୁଦ୍‌ଭ୍ୟୋ ନମଃ ।। ଏଥିରେ ଦ୍ୱାର ।
ଓମ୍ ଅଦ୍‌ଭ୍ୟୋ ନମଃ ।। ଏଥିରେ ଜଳ ।
ଓମ ବନସ୍ପତିଭ୍ୟୋ ନମଃ ।। ଏଥିରେ ମୂସଳ ଏବଂ ଉଖଳ* ।
ଓମ୍ ଶ୍ରିୟୈ ନମଃ ।। ଏଥିରେ ଈଶାନ ।
ଓମ୍ ଭଦ୍ରକାଲ୍ୟୈ ନମଃ ।। ଏଥିରେ ନୈର୍‌ଋତ୍ୟ ।
ଓମ୍ ବ୍ରହ୍ମପତୟେ ନମଃ । ଓମ୍ ବାସ୍ତୁପତୟେ ନମଃ ।
ଏଥିରେ ମଧ୍ୟ ।

ଓମ୍ ବିଶ୍ୱେଭ୍ୟୋ ଦେବେଭ୍ୟୋ ନମଃ ।।
( ଓମ୍ ଦିବାଚରେଭ୍ୟୋ ଭୂତେଭ୍ୟୋ ନମଃ ।। )
ଓମ୍ ନକ୍ତଂଚରେଭ୍ୟୋ ଭୂତେଭ୍ୟୋ ନମଃ ।।
ଏଥିରେ ଉପର ।

ଓମ୍ ସର୍ବାତ୍ମଭୂତୟେ ନମଃ ।। ଏଥିରେ ପୃଷ୍ଠ ।

---

* ଯଜ୍ଞ ସାମଗ୍ରୀ ଓ ବନୌଷଧି ଆଦି କୁଟିବାପାଇଁ କାଠର ତିଆରି ଯନ୍ତ୍ର

ଓମ୍ ପିତୃଭ୍ୟଃ ସ୍ୱଧାୟିଭ୍ୟଃ ସ୍ୱଧା ନମଃ ॥

ଏଥିରେ ଦକ୍ଷିଣ ।

ଏହି ମଂତ୍ରମାନଙ୍କରେ ଏକ ପତ୍ର ବା ଥାଳରେ ଯଥୋକ୍ତ ଦିଗରେ ଭାଗଭାଗ କରି ଅନ୍ନ ରଖିବେ । ଏହି କ୍ରିୟା ସମୟରେ ଯଦି କୌଣସି ଅତିଥି ଆସି ପହଞ୍ଚିବେ ତେବେ ତାଙ୍କୁ ଦେଇଦେବେ, ନ ହେଲେ ଅଗ୍ନିରେ ଦେବେ । ତତ୍ପଶ୍ଚାତ୍ ଘୃତସହିତ ଲବଣାନ୍ନ ନେଇ -

ଶୁନାଂ ଚ ପତିତାନାଂ ଚ ଶ୍ୱପଚାଂ ପାପରୋଗିଣାମ୍ ।
ବାୟସାନାଂ କୃମୀଣାଂ ଚ ଶନକୈର୍ନିର୍ବପେଦ୍ ଭୁବି ॥
( ମନୁ. ଅ. ୩ । ଶ୍ଳୋ. ୯୨ )

**ଅର୍ଥ:**– କୁକୁର, ପତିତ, ଚଣ୍ଡାଳ, ପାପରୋଗୀ, କାକ ଏବଂ କୃମୀ ଏହି ଛଅ ନାମରେ ଛଅଭାଗ ପୃଥିବୀରେ ରଖିବେ ଏବଂ ଏହି ଛଅଭାଗ ଯେଉଁମାନଙ୍କ ନାମରେ ଦିଆଯାଇଥିବ, ସେମାନଙ୍କୁ ଯେହି ସେହି ଭାଗ ଦେଇଦେବା ଦରକାର ॥ ୪ ॥

## ଅତିଥି ଯଜ୍ଞ

ଧାର୍ମିକ, ପରୋପକାରୀ, ସତ୍ୟୋପଦେଶକ, ପକ୍ଷପାତ-ରହିତ, ଶାନ୍ତ, ସର୍ବହିତକାରକ ବିଦ୍ୱାନ୍‌ମାନଙ୍କର ଅନ୍ନାଦି ଦ୍ୱାରା

ସେବାକରିବା ଏବଂ ସେମାନଙ୍କ ସହିତ ପ୍ରଶ୍ନୋତ୍ତରଆଦିକରି ବିଦ୍ୟା ପ୍ରାପ୍ତ ହେବାକୁ 'ଅତିଥି ଯଜ୍ଞ' କୁହାଯାଏ । ନିତ୍ୟପ୍ରତି ଏହା କରିବା ଉଚିତ । ଏହିପରି ପଞ୍ଚମହାଯଜ୍ଞକୁ ସ୍ତ୍ରୀ ପୁରୁଷ ପ୍ରତିଦିନ କରିବେ ॥ ୫ ॥

# ଅଥ ପକ୍ଷେଷ୍ଟିଃ

ଏହାପରେ ପକ୍ଷଯଜ୍ଞ ଅର୍ଥାତ୍ ପୌର୍ଣ୍ଣମାସୀ ଏବଂ ଅମାବାସ୍ୟା ଦିନ ନୈତ୍ୟିକ ଅଗ୍ନିହୋତ୍ର ର ଆହୁତି ଦେବାପରେ, ପୂର୍ବୋକ୍ତ ପ୍ରକାରେ ପୃଷ୍ଠା ୨୧-୨୨ ଲିଖିତ ବିଧି ଅନୁସାରେ ସ୍ଥାଳୀପାକ ପ୍ରସ୍ତୁତକରି ନିମ୍ନଲିଖିତ ମନ୍ତ୍ରରେ ବିଶେଷ ଆହୁତି ଦେବେ —

**ଓମ୍ ଅଗ୍ନୟେ ସ୍ୱାହା ॥୧॥ ଓମ୍ ଅଗ୍ନୀଷୋମାଭ୍ୟାଂ ସ୍ୱାହା ॥୨॥ ଓମ୍ ବିଷ୍ଣବେ ସ୍ୱାହା ॥୩॥**

ଏହି ତିନି ମନ୍ତ୍ରରେ ସ୍ଥାଳୀପାକର ତିନି ଆହୁତି ଦେବେ । ତତ୍ପଶ୍ଚାତ୍ ପୃଷ୍ଠା ୩୨ ରେ ଲିଖିତ ପ୍ରମାଣାନୁସାରେ ବ୍ୟାହୃତି ଆଜ୍ୟାହୁତି ୪ (ଚାରି) ଦେବେ । ପରନ୍ତୁ ଅମାବାସ୍ୟା-ରେ **ଓମ ଅଗ୍ନୀଷୋମାଭ୍ୟାଂ ସ୍ୱାହା ॥** ଏହି ମନ୍ତ୍ର ପରିବର୍ତ୍ତେ **ଓମ୍ ଇନ୍ଦ୍ରାଗ୍ନିଭ୍ୟାଂ ସ୍ୱାହା ॥** ମନ୍ତ୍ରରେ ସ୍ଥାଳୀପାକ ଆହୁତି ଦେବେ ।

ଏହିପରି ଘରରେ ପକ୍ଷଯଜ୍ଞ, ଅର୍ଥାତ୍ ଯାହା ଘରେ ଅସାମର୍ଥ୍ୟରୁ ଅଗ୍ନିହୋତ୍ର* ହୋଇପାରେନାହିଁ ସେମାନେ ପକ୍ଷଯଜ୍ଞାଦିରେ ପୃଷ୍ଠା ୧୮-୨୧ ରେ ଲିଖିତ ପ୍ରମାଣେ ଯଜ୍ଞକୁଣ୍ଡ,

*ପ୍ରତିଦିନ ଅଗ୍ନିହୋତ୍ର । ( ସମ୍ପାଦକ )

ଯଜ୍ଞ ସାମଗ୍ରୀ, ଯଜ୍ଞମଣ୍ଡପ, ପୃଷ୍ଠା ୨୭-୨୯ ଲିଖିତ ପ୍ରମାଣେ ଅଗ୍ନ୍ୟାଧାନ, ସମିଧାଚୟନ, ପୃଷ୍ଠା ୩ -୩୨ ଲିଖିତ ପ୍ରମାଣେ ଆଘାରବାଜ୍ୟଭାଗାହୁତ ଏବଂ ପୃଷ୍ଠା ୩୦ ରେ ଲିଖିତ ପ୍ରମାଣେ ବେଦୀର ଚାରି ଦିଗରେ ଜଳ ସିଞ୍ଚନ କରି ପୃଷ୍ଠା ୨-୧୭ ରେ ଲିଖିତ ପ୍ରମାଣେ ଈଶ୍ୱରୋପାସନା, ସ୍ୱସ୍ତିବାଚନ ଶାନ୍ତି-କରଣ ମଧ୍ୟ ଯଥାବିଧି କରିବେ* ।

## (ଅଥ ନବଶସ୍ୟେଷ୍ଟିଃ ସଂବତ୍ସରେଷ୍ଟିଶ୍ଚ)

ଯେତେବେଳେ ନବାନ୍ନର ସମୟ ଆସିବ, ସେତେ-ବେଳେ ନବଶସ୍ୟେଷ୍ଟି ଏବଂ ସଂବତ୍ସରର ଆରମ୍ଭ ସମୟରେ ନିମ୍ନଲିଖିତ ବିଧି କରିବେ, ଅର୍ଥାତ୍ ଯେତେବେଳେ ନବୀନ ଅନ୍ନ ଆସିବ, ( ଅମଳ ହେବ ) ସେତେବେଳେ ନବଶସ୍ୟେଷ୍ଟି କରି ନବୀନ ଅନ୍ନ ଭୋଜନ ଆରମ୍ଭ କରିବେ—

ନବଶସ୍ୟେଷ୍ଟି ଏବଂ ସଂବତ୍ସରେଷ୍ଟି କରିବାକୁ ହେଲେ ଯେଉଁଦିନ ପ୍ରସନ୍ନତା ହେବ, ସେହିଦିନ କରିବା ଶୁଭ ବୋଲି ଜାଣିବେ । ଗ୍ରାମ ଓ ସହର ବାହାରେ କୌଣସି ଶୁଦ୍ଧ କ୍ଷେତରେ ଯଜ୍ଞମଣ୍ଡପ କରି, ପୃଷ୍ଠା ୨-୩୮ ଲିଖିତ ପ୍ରମାଣେ ଈଶ୍ୱରସ୍ତୁତି ପ୍ରାର୍ଥନୋପାସନା, ସ୍ୱସ୍ତିବାଚନ, ଶାନ୍ତିକରଣ, ସାମାନ୍ୟପ୍ରକରଣୀୟ ସମସ୍ତ ବିଧି କରି ପ୍ରଥମେ ଆଘାରବାଜ୍ୟ ଭାଗାହୁତି ଚାରି ଏବଂ ବ୍ୟାହୃତି ଆହୁତି ଚାରି ତଥା ଅଷ୍ଟାଜ୍ୟାହୁତି ଆଠ ଏହିପରି ଷୋଳ ଆଜ୍ୟାହୁତି କରି କାର୍ଯ୍ୟକର୍ତ୍ତା –

* ଏଠାରେ ପୂର୍ବାପର କାଳ ଅଭିପ୍ରେତ ନୁହେଁ । କାରଣ ଈଶ୍ୱରୋପାସନା, ସ୍ୱସ୍ତିବାଚନ, ଶାନ୍ତିକରଣ ହୋମ ପୂର୍ବର ବିହିତ କର୍ମ । ବସ୍ତୁତଃ ଏଠାରେ କ୍ରିୟମାଣ ପଦାର୍ଥ ମାନଙ୍କର ନିର୍ଦ୍ଦେଶ ରହିଛି । ଏହାକୁ କାଳକ୍ରମ ମନେ କରିବା ଉଚିତ ନୁହେଁ । ( ସଂପାଦକ )

ଓମ୍ ପୃଥିବୀ ଦେବୀଃ ପ୍ରଦିଶୋଦିଶୋ ଯସ୍ମୈ ଦ୍ୟୁଭିରାବୃତାଃ । ତମିହେନ୍ଦ୍ରମୁପହ୍ୱୟେ ଶିବା ନଃ ସନ୍ତୁ ହେତୟଃ ସ୍ୱାହା ॥୧॥

ଓମ୍ ଯୁନ୍ନେ କାଞ୍ଚିଦୁପେପ୍ସିତମସ୍ମିନ୍ କର୍ମଣି ବୃତ୍ରହନ୍ । ତନ୍ନେ ସର୍ବଂ ସମୃଧ୍ୟତାଂ ଜୀବତଃ ଶରଦଃ ଶତଂ ସ୍ୱାହା ॥୨॥

ଓମ୍ ସମ୍ପତ୍ତିର୍ଭୂତିର୍ଭୂମିର୍ବୃଷ୍ଟିର୍ଜ୍ୟୈଷ୍ଠ୍ୟଂ ଶ୍ରୈଷ୍ଠ୍ୟଂ ଶ୍ରୀଃ ପ୍ରଜାମିହାବତୁ ସ୍ୱାହା ॥ ଇଦମିନ୍ଦ୍ରାୟ - ଇଦନ୍ନ ମମ ॥୩॥

ଓମ୍ ଯସ୍ୟାଭାବେ ବୈଦିକଲୌକିକାନାଂ ଭୂତିର୍ଭବତି କର୍ମଣାମ୍ । ଇନ୍ଦ୍ରପତ୍ନୀମୁପହ୍ୱୟେ ସୀତାଂ ସା ମେ ତ୍ୱନପାୟିନୀ ଭୂୟାତ୍କର୍ମଣି କର୍ମଣି ସ୍ୱାହା ॥ ଇଦମିନ୍ଦ୍ରପତ୍ନ୍ୟୈ—ଇଦନ୍ନ ମମ ॥୪॥

ଓମ୍ ଅଶ୍ୱାବତୀ ଗୋମତୀ ସୂନୃତାବତୀ ବିଭର୍ତ୍ତି ଯା ପ୍ରାଣଭୃତୋ ଅତନ୍ଦ୍ରିତା । ଖଲାମାଲିନୀମୁର୍ବରାମସ୍ମିନ୍ କର୍ମଣ୍ୟୁପହ୍ୱୟେ ଧ୍ରୁବାଂ ସା ମେ

ଭ୍ୱନପାୟିନୀ ଭୂୟାତ୍ ସ୍ୱାହା ॥ ଇଦଂ ସୀତାୟୈ ଇଦନ୍ନ ମମ ॥୫॥

[ ପାର. କାଂ. ୨ । କଂ. ୧୭ । ୯ ]

ଏହି ମଂତ୍ରମାନଙ୍କରେ ପ୍ରଧାନ ହୋମର ପାଞ୍ଚ ଆଜ୍ୟାହୁତି କର—

ଓମ୍ ସୀତାୟୈ ସ୍ୱାହା ॥୧॥ ଓମ୍ ପ୍ରଜାୟୈ ସ୍ୱାହା ॥୨॥ ଓମ୍ ଶମାୟୈ ସ୍ୱାହା ॥୩॥ ଓମ୍ ଭୂତ୍ୟୈ ସ୍ୱାହା ॥୪॥

( ଭୂ--ପାର. କା. ୨। କଂ. ୧୭ । ୧୦ )

ଏହା ପରି ମଂତ୍ରରେ ଘୃତ ଏବଂ ପୃଷ୍ଠା ୩୨ ଲିଖିତ ପ୍ରମାଣେ **(ଯଦସ୍ୟ କର୍ମଣୋ॰)** ମଂତ୍ରରେ ସ୍ୱିଷ୍ଟକୃତ୍ ହୋମ ହୁତି ଗୋଟିଏ ଏହିପରି ମୋଟ ପାଞ୍ଚ ସ୍ଥାଳୀପାକର ଆହୁତିଦେଇ, ତତ୍‌ପରେ ପୃଷ୍ଠା ୩୪—୩୬ ରେ ଲିଖିତ ପ୍ରମାଣେ ଅଷ୍ଟ ଆଜ୍ୟା-ହୁତି, ବ୍ୟାହୃତି ଆହୁତ ଘୃରି, ଏହିପରି ବାର ଆଜ୍ୟାହୁତି ଦେବେ । ପୃଷ୍ଠା୩୭-୩୮ ଲିଖିତ ପ୍ରମାଣେ ବାମଦେବ୍ୟଗାନ, ଈଶ୍ୱରୋପାସନା, ସ୍ୱସ୍ତିବାଚନ ଏବଂ ଶାନ୍ତିକରଣକରି ଯଜ୍ଞ ସମାପ୍ତ କରିବେ ।



# ଅଥ ଶାଳାକର୍ମବିଧିଂ ବକ୍ଷ୍ୟାମଃ

ମନୁଷ୍ୟ ପଶୁ ଆଦି ରହିବା ଗୃହ ବା ଜନପଦପ୍ରଭୃତି ରଖିବାର ଗୃହକୁ 'ଶାଳା' କୁହାଯାଏ । ଏହାର ୨ ଟି ବିଷୟ ରହିଛି । (୧) ପ୍ରମାଣ (୨) ବିଧି ॥ ପ୍ରଥମତଃ ପ୍ରମାଣ ଏବଂ ପଶ୍ଚାତ୍ ବିଧିବିଷୟ ଲେଖାଯିବ ।

ଅଥ ପ୍ରମାଣାନି--

ଉପମିତାଂ ପ୍ରତିମିତାମଥୋ ପରିମିତାମୁତ ।
ଶାଳାୟା ବିଶ୍ୱବାରାୟା ନଦ୍ଧାନି ବିଚୃତାମସି ॥୧॥

ହବିର୍ଧାନମଗ୍ନିଶାଳଂ ପତ୍ନୀନାଂ ସଦନଂ ସଦଃ ।
ସଦୋ ଦେବାନାମସି ଦେବି ଶାଳେ ॥୨॥

( ଅଥର୍ବ. କ: ୯ । ସୂ. ୩ ମଂ. ୧,୭ )

ଅର୍ଥ-- ପ୍ରତ୍ୟେକ ମନୁଷ୍ୟ ଯଦି କୌଣସିପ୍ରକାର ଗୃହ ନିର୍ମାଣ କରିବେ ତେବେ ସେ ( ଉପମିତାମ୍ ) ଗୃହକୁ ସମସ୍ତ ପ୍ରକାର ଉତ୍ତମ ଉପମାଯୁକ୍ତ କରିବେ, ଯାହା ଦେଖି ବିଦ୍ୱାନ୍‌ଲୋକ ପ୍ରଶଂସା କରିବେ, ( ପ୍ରତିମିତାମ୍ ) ପ୍ରତିମାନ ଅର୍ଥାତ୍ ଏକ ଦ୍ୱାର ସମ୍ମୁଖରେ ଅନ୍ୟ ଏକଦ୍ୱାର, କୋଣ, କକ୍ଷା ମଧ୍ୟ ସମ୍ମୁଖ ହୋଇ ରହିବ, (ଅଥୋ) ଏହାପରେ (ପରିମିତାମ୍) ଏହି ଶାଳା ଗୃହରିଦିଗରୁ ସମ ଚତୁଷ୍କୋଣ ହେବ, (ଉତ) ଏବଂ (ଶାଳାୟାଃ) ଶାଳା (ବିଶ୍ୱବାରାୟାଃ) ଅର୍ଥାତ୍

ଯେଉଁ ଗୃହର ଦ୍ୱାର ଚତୁର୍ଦ୍ଦିଗରୁ ବାୟୁ ପ୍ରବେଶପାଇଁ ଉପଯୁକ୍ତ ହୋଇଥିବ, ( ନଦ୍ଧାନ ) ଏଦ୍ୱାର ବନ୍ଧନ ଓ ଖୋଲିବାରେ ଦୃଢ ହେବ, ହେ ମନୁଷ୍ୟଗଣ ! ଏହି ଶାଳାକୁ ଯେପରି ଆମେ ଶିଳ୍ପୀଲୋକ ( ନିଚୃତାମସି ) ଉତ୍ତମରୂପେ ଗ୍ରନ୍ଥିତ ଏବଂ ବନ୍ଧନଯୁକ୍ତ କରୁଅଛୁ, ସେହିପରି ତୁମ୍ଭେମାନେ କର ॥୧॥

ସେହି ଗୃହରେ ଗୋଟିଏ (ହବିର୍ଧାନମ୍) ହୋମକାର୍ଯ୍ୟରେ ଲାଗୁଥିବା ପଦାର୍ଥ ରଖିବାର ସ୍ଥାନ, ( ଅଗ୍ନିଶାଳମ୍ ) ଅଗ୍ନି-ହୋତ୍ରର ସ୍ଥାନ, ( ପତ୍ନୀନାମ ) ସ୍ତ୍ରୀଲୋକମାନଙ୍କର, (ସଦନମ୍) ରହିବା ନିମନ୍ତେ ( ସଦଃ ) ସ୍ଥାନ ଏବଂ ( ଦେବାନାମ୍ ) ବିଦ୍ୱାନ୍ ପୁରୁଷ ମାନଙ୍କ ରହିବା, ଆଳାପ ଆଲୋଚନା ବା ସତ୍ସଂଗ ସଭା ଇତ୍ୟାଦି କରିବା ନିମନ୍ତେ ( ସଦଃ ) ସ୍ଥାନ ତଥା ସ୍ନାନ, ଭୋଜନ, ଧ୍ୟାନଆଦି ନିମନ୍ତେ ପୃଥକ୍ ପୃଥକ୍ ଗୋଟିଏ ଗୋଟିଏ ଘର ତିଆରିକରିବାକୁହେବ । ଏହିପରି ଭାବରେ ( ଦେବି ) ଦିବ୍ୟ ଜନମାସ୍ଥ ( ଶାଳେ ) ନିର୍ମିତ ଶାଳା ( ଅସି ) ସୁଖଦାୟକ ହୁଏ ॥ ୨ ॥

**ଅନ୍ତରା ଦ୍ୟାଂ ଚ ପୃଥିବୀଂ ଚ ଯଦ୍‌ବ୍ୟଚସ୍ତେନ ଶାଳାଂ ପ୍ରତିଗୃହ୍‌ଣାମି ତ ଇମାମ୍ । ଯଦନ୍ତରିକ୍ଷଂ ରଜସୋ ବିମାନଂ ତତ୍ କୃଣ୍ୱେଽହମୁଦରଂ ଶେବ-ଧିଭ୍ୟଃ । ତେନ ଶାଳାଂ ପ୍ରତି ଗୃହ୍‌ଣାମି ତସ୍ମୈ ॥**

**॥୩॥**

ଊର୍ଜସ୍ୱତୀ ପୟସ୍ୱତୀ ପୃଥିବ୍ୟାଂ ନିମିତା ମିତା ।
ବିଶ୍ୱାନ୍ନଂ ବିଭ୍ରତୀ ଶାଲେ ମା ହିଂସୀଃ ପ୍ରତିଗୃହ୍ଣତଃ
॥୪॥

( ଅଥର୍ବ. କା. ୯ । ସୂ. ୩ । ମଂ. ୧୫, ୧୬ )

ଅର୍ଥ – ସେହି ପକ୍ଷଶାଳାରେ ( ଅନ୍ତର ) ଭିନ୍ନଭିନ୍ନ ( ପୃଥିବ୍ୟାମ୍ ) ଶୁଦ୍ଧଭୂମି ଅର୍ଥାତ୍ ଚତୁର୍ଦ୍ଦିଗଭୂମି ଶୁଦ୍ଧହେବା ଉଚିତ, ( ଚ ) ଏବଂ ( ଦ୍ୟାମ୍ ) ଯଦ୍ୱାରା ସୂର୍ଯ୍ୟର ଆଲୋକ ଆସିପାରିବ ସେହି ରୂ ପ୍ରକାଶସ୍ୱରୂପ ଭୂମ ସଦୃଶ ଦୃଢ ଶାଳା ତିଆରି କରିବ, (ଚ) ଏବଂ ( ଯଜ୍ଞ ବ୍ୟଚଃ ) ତାହାର ଯେଉଁ ବିସ୍ତୃତ ରହିଛି ହେ ସ୍ତ୍ରୀ ! ( ତେନ ) ତାହାସହିତ ( ଇମାମ୍ ) ଏହି ( ଶାଳାମ୍ ) ଘରକୁ ( ତେ ) ତୁମ୍ଭ ନିମନ୍ତେ ନିର୍ମାଣ କରୁଅଛୁ, ତୁମେ ଏହି ଗୃହରେ ନିବାସ କର ଏବଂ ମୁଁ ମଧ ନିବାସ ନିମନ୍ତେ ଏହାକୁ ( ପ୍ରତିଗୃହ୍ଣାମି ) ଗ୍ରହଣ କରୁଅଛୁ । ଏହିଗୃହର ମଧ୍ୟ ଭାଗରେ ( ଯତ୍ ) ଯେଉଁ ( ଅନ୍ତରକ୍ଷମ୍ ) ପ୍ରଚୁର ଶୂନ୍ୟସ୍ଥାନ ଏବଂ ( ଉଜସଃ ) ଏହି ଗୃହର ( ବିମାନମ୍ ) ବିଶେଷ ପରିମାଣଯୁକ୍ତ ଲମ୍ବା ଓ ଯୁଉଚ୍ଚ ନୀଚ ଏବଂ (ଉଦରମ୍) ଭିତରର ପ୍ରସାର ବିସ୍ତାରହେବ (ତତ୍) ତାହାକୁ ( ଅହମ୍ ) ମୁଁ ( ଶେବଧିଭ୍ୟଃ ) ସୁଖର ଆଧାର ରୂପ ଅନେକ କକ୍ଷାରେ ସୁଶୋଭିତ ( କୃଣ୍ୱେ ) କରୁଅଛୁ, ( ତେନ ) ସେହି ପୂର୍ବୋକ୍ତ ଲକ୍ଷଣରେ ଯୁକ୍ତ ( ଶାଳାମ୍ ) ଶାଳାକୁ ( ତସ୍ମୈ ) ସେହି ଗୃହାଶ୍ରମର ସମସ୍ତ ପ୍ରକାର ବ୍ୟବହାର ନିମନ୍ତେ ( ପ୍ରତିଗୃହ୍ଣାମି ) ଗ୍ରହଣ କରୁଅଛୁ ॥ ୩ ॥

ଯେଉଁ ( ଶାଳେ ) ଶାଳା ( ଊର୍ଜସ୍ୱତି ) ବହୁତ ବଳ, ଆରୋଗ୍ୟ, ପରାକ୍ରମ ବଢ଼ାଇ ପାରିବ, ଧନଧାନ୍ୟରେ ପରିପୂର୍ଣ୍ଣ ରହିଥିବ, (ପୟସ୍ୱତି) ଜଳ, ଦୁଗ୍ଧ ରସାଦିରେ ପରିପୂର୍ଣ୍ଣ (ପୃଥିବ୍ୟାମ୍) ପୃଥିବୀରେ (ମିତା) ପରିମାଣଯୁକ୍ତ ହୋଇ, ( ନିମିତା ) ନିର୍ମିତ ହୋଇଥିବ, ( ବିଶ୍ୱାନ୍ନମ୍ ) ସଂପୂର୍ଣ୍ଣ ଅନ୍ନାଦି ଐଶ୍ୱର୍ଯ୍ୟକୁ (ବିଭ୍ରତି) ଧାରଣ କରି, ( ପ୍ରତିଗୃହ୍ଣତଃ) ଗ୍ରହଣକାରୀ, ବାସକରିବା ବ୍ୟକ୍ତି ମାନଙ୍କୁ ରୋଗରେ (ମା ହିଂସୀଃ) ପୀଡିତ କରୁନଥିବ, ସେହିପରି ଗୃହ ନିର୍ମାଣକରିବା ଉଚିତ ॥ ୪ ॥

ବ୍ରହ୍ମଣା ଶାଳାଂ ନିମିତାଂ କବିଭିର୍ନିମିତାଂ ମିତାମ୍ ।
ଇନ୍ଦ୍ରାଗ୍ନୀ ରକ୍ଷତାଂ ଶାଳାମମୃତୌ ସୌମ୍ୟଂ ସଦଃ ॥

( ଅଥର୍ବ. କାଂ. ୯ । ସୂ. ୯ । ମଂ. ୧୯ ॥ ) ॥୫॥

ଅର୍ଥ:-( ଅମୃତୌ ) ସ୍ୱରୂପ ଦୃଷ୍ଟିରୁ ନାଶରହିତ (ଇନ୍ଦ୍ରାଗ୍ନୀ) ବାୟୁ ଏବଂ ପାବକ (କବିଭିଃ) ଉତ୍ତମ ବିଦ୍ୱାନ୍ ଏବଂ ଶିଳ୍ପୀ-ଗଣଙ୍କ ଦ୍ୱାରା (ମିତାମ୍ ) ପ୍ରମାଣଯୁକ୍ତ ଅର୍ଥାତ୍ ମାପରେ ଠିକ୍ ଯେପରି ହେବାଉଚିତ ସେହିପରି ( ନିମିତାମ୍ ) ନିର୍ମିତ (ଶାଳାମ୍ )ଗୃହକୁ ଏବଂ (ବ୍ରହ୍ମଣା) ଚତୁର୍ବେଦର ଜ୍ଞାତା ବିଦ୍ୱାନ୍-ଗଣ ସବୁ ଋତୁରେ ସୁଖଦାୟକ (ନିମିତାମ୍) ନିର୍ମିତ (ଶାଳାମ୍) ଶାଳାକୁ ପ୍ରାପ୍ତ ହୋଇ ରହିଥିବା ଲୋକମାନଙ୍କୁ ( ରକ୍ଷତାମ୍ ) ରକ୍ଷା କରନ୍ତୁ । ଅର୍ଥାତ୍ ଚତୁର୍ଦ୍ଦିଗରୁ ଶୁଦ୍ଧବାୟୁ ଗୃହ ଭିତରକୁ ପ୍ରବାହିତହୋଇ ଅଶୁଦ୍ଧ ବାୟୁକୁ ବାହାର କରିଦେଉ ଏବଂ ଗୃହ ମଧ୍ୟରେ ଘୃତାଦି ସୁଗନ୍ଧିତ ଦ୍ରବ୍ୟ ଦ୍ୱାରା ହୁତ ହୋମାଗ୍ନି

ଦୁର୍ଗନ୍ଧକୁ ନଷ୍ଟକରି ସୁଗନ୍ଧ ସ୍ଥାପନ କରୁ । ସେହି ( ସୌମ୍ୟମ ) ଐଶ୍ୱର୍ଯ୍ୟ, ଆରୋଗ୍ୟ ସର୍ବଦା ସୁଖଦାୟକ (ସଦଃ) ନିବାସ ନିମନ୍ତେ ଉତ୍ତମ ଗୃହ ଅଟେ । ତାହାକୁ ହିଁ ନିବାସ ନିମନ୍ତେ ଗ୍ରହଣକରିବା ଉଚିତ ॥ ୫ ॥

ଯା ଦ୍ୱିପକ୍ଷା ଚତୁଷ୍ପକ୍ଷା ଷଟ୍ପକ୍ଷା ଯା ନିମୀୟତେ ।
ଅଷ୍ଟାପକ୍ଷାଂ ଦଶପକ୍ଷାଂ ଶାଲାଂ ମାନସ୍ୟ ପତ୍ନୀମଗ୍ନିର୍ଗ-
ର୍ଭଇବା ଶୟେ ॥୬॥ ( ଅଥର୍ବ. କାଂ. ୯।୩ସୂ. ।ମଂ. ୨୧ ॥ )

ଅର୍ଥ:—ହେ ମନୁଷ୍ୟଗଣ ! ( ଯା ) ଯେଉଁ (ଦ୍ୱିପକ୍ଷା) ଦୁଇପକ୍ଷ ଅର୍ଥାତ୍ ମଧ୍ୟରେ ଏକ ଏବଂ ପୂର୍ବ-ପଶ୍ଚିମରେ ଏକ ଏକ ଶାଳାଯୁକ୍ତ ଗୃହ ଅଥବା (ଚତୁଷ୍ପକ୍ଷା) ଯାହାର ପୂର୍ବ, ପଶ୍ଚିମ, ଦକ୍ଷିଣ ଏବଂ ଉତ୍ତରରେ ଗୋଟିଏ ଗୋଟିଏ ଶାଳା ଏବଂ ଏହାର ମଧ୍ୟରେ ବୃହତ୍ ପଞ୍ଚମ ଶାଳା ବା (ଷଟ୍ପକ୍ଷା) ମଧ୍ୟରେ ଗୋଟିଏ ବଡଶାଳା ଏବଂ ଦୁଇଟି ଲେଖାଏଁ ପୂର୍ବ-ପଶ୍ଚିମ ଏବଂ ଗୋଟିଏ ଗୋଟିଏ ଉତ୍ତର-ଦକ୍ଷିଣ ହୋଇ ଶାଳା ରହିଛି ( ଯା ) ଏହିପରି ଯେଉଁ ଶାଳା (ନିମୀୟତେ) ନିର୍ମାଣ କରାଯାଏ, ତାହା ଉତ୍ତମ ଅଟେ ଏବଂ ଏହାଠାରୁ ମଧ୍ୟ ( ଅଷ୍ଟାପକ୍ଷାମ୍ ) ଚତୁର୍ଦ୍ଦିଗରେ ଦୁଇ-ଦୁଇଟି ଶାଳା ଏବଂ ମଧ୍ୟରେ ଏକ ନବମ ଶାଳା ଯେଉଁଠିଥାଏ ଅଥବା ( ଦଶ ପକ୍ଷାମ୍ ) ଯାହାର ମଧ୍ୟରେ ଦୁଇଟି ଶାଳା ଏବଂ ଚତୁର୍ଦ୍ଦିଗରେ ଦୁଇ ଦୁଇଟି ଶାଳାଥାଏ; ସେହି ( ମାନସ୍ୟ ) ପରିମାଣର ଯୋଗରେ ନିର୍ମିତ ( ଶାଳାମ୍ ) ଶାଳାକୁ,

ଯେପରି (ପତ୍ନୀ) ପତିଙ୍କୁ ପ୍ରାପ୍ତ ହୋଇ (ଅଗ୍ନିଃ) ଅଗ୍ନି ମଧ୍ୟ ଆର୍ଦ୍ରବ ଓ ସାର୍ପିଷ (ଗର୍ଭ ଇବ) ଗର୍ଭରୂପ ହୋଇ (ଆଶୟେ) ଚତୁର୍ଦ୍ଦିଗରେ ରହେ, ସେହିପରି ସମସ୍ତ ଶାଳା ଗୁଡ଼ିକର ଦ୍ୱାର ଦୁଇ-ଦୁଇ ହାତ ବ୍ୟବଧାନରେ ସିଧା ଭାବରେ ରହିବ ।

ଯାହାର ଚାରିପଟେ ଥିବା ଶାଳା ଗୁଡ଼ିକର ପରିମାଣ ତିନ ତିନ ଗଜ ଏବଂ ମଧ୍ୟବର୍ତ୍ତି ଶାଳାର ପରିମାଣ ଛ' ଛ' ଗଜରୁ ନ୍ୟୂନ ନୁହେଁ, ଏବଂ ଯେଉଁ ଗୃହର ଚାରି-ଚାରି ଗଜ ଚାରି ଦିଗକୁ, ଆଠ ଆଠ ଗଜ ମଧ୍ୟବର୍ତ୍ତି ଶାଳାର ପରିମାଣ ଅଟେ, ଅଥବା-ମଧ୍ୟବର୍ତ୍ତି ଶାଳାଗୁଡ଼ିକର ପରିମାଣ ଦଶ-ଦଶ ଗଜ ଅର୍ଥାତ୍ କୋଡ଼ିଏ କୋଡ଼ିଏ ହାତରୁ ଅଧିକ ବିସ୍ତାର ନୁହେଁ । ଏହିପରି ଗୃହ ନିର୍ମାଣକରି ଗୃହସ୍ଥମାନେ ରହିବା ଉଚିତ । ଯଦି ଏହା ସମ୍ଭସ୍ଥାନ ହୋଇଥାଏ, ତେବେ ବାହାର ଆଡ଼କୁ ଦ୍ୱାରରେ ଚତୁର୍ଦ୍ଦିଗରେ କବାଟ ଏବଂ ମଧ୍ୟରେ ଗୋଲ-ଗୋଲ ସ୍ତମ୍ଭ ନିର୍ମାଣ କରି ଚତୁର୍ଦ୍ଦିଗ ଖୋଲା ରଖିବା ଉଚିତ ଯଦ୍ୱାରା କବାଟ ଖୋଲିବା କ୍ଷଣି ଚତୁର୍ଦ୍ଦିଗରୁ ବାୟୁ ସେଠାକୁ ଆସିପାରିବ ଏବଂ ସବୁ ଘରକୁ ଚତୁର୍ଦ୍ଦିଗରୁ ବାୟୁ ଆସିବା ନିମନ୍ତେ ବାହାରେ ମୁକ୍ତସ୍ଥାନ ରହିବା ସଂଗେ-ସଂଗେ ବୃକ୍ଷ, ପୁଷ୍ପ, ପୁଷ୍କରିଣୀ ଏବଂ କୁଣ୍ଡଦ୍ୱାରା ଗୃହ ପରିବେଷ୍ଟିତ ହେବା ଉଚିତ । ଏହିପରି ଗୃହରେ ସମସ୍ତଲୋକ ବାସକରିବା ଉଚିତ ।

**ପ୍ରତୀଚୀଂ ତ୍ୱା ପ୍ରତୀଚୀନଃ ଶାଲେ ପ୍ରେମ୍ୟ-ହିଂସତୀମ୍ । ଅଗ୍ନିର୍ହ୍ୟନ୍ତରାପଶ୍ଚ ଋତସ୍ୟ ପ୍ରଥମା ଦ୍ୱାଃ ॥୭॥**

ଅର୍ଥ:– ଯେଉଁ ( ଶାଳେ ) ଶାଳାଗୃହ (ପ୍ରଜ୍ଞାଚୀନଃ) ପୂର୍ବାଭିମୁଖ ତଥା ଯେଉଁ ଗୃହ ( ପ୍ରତ୍ୟଚୀମ୍ ) ପଶ୍ଚିମ ଦ୍ୱାର-ଯୁକ୍ତ [ଅହିଂସନ୍ତୀମ୍] ହିଂସାଦ ଦୋଷ ରହିତ ଅର୍ଥାତ୍ ପଶ୍ଚିମଦ୍ୱାର ସମ୍ମୁଖରେ ପୂର୍ବଦ୍ୱାର, ଯେଉଁଥିରେ [ହି] ନିଶ୍ଚିତରୂପେ [ଅନ୍ତଃ] ମଧ୍ୟଭାଗରେ [ଅଗ୍ନିଃ] ଅଗ୍ନି ନିମନ୍ତେ ଘର [ଚ] ଏବଂ [ଆପଃ] ଜଳ ନିମନ୍ତେ ସ୍ଥାନ [ଋତସ୍ୟ] ଏବଂ ସତ୍ୟର ଧ୍ୟାନ ନିମନ୍ତେ ଗୋଟିଏ ସ୍ଥାନ ଏବଂ [ ପ୍ରଥମା ] ପ୍ରଥମ [ଦ୍ୱାଃ] ଦ୍ୱାର ରହିଛି, ମୁଁ [ତ୍ୱା] ସେହି ଶାଳାକୁ [ପ୍ରୈମି] ପ୍ରକର୍ଷତା ଦ୍ୱାରା ପ୍ରାପ୍ତ ହେଉଅଛି ॥୭॥

ମା ନଃ ପାଶଂ ପ୍ରତିମୁଚୋ ଗୁରୁର୍ଭାରୋ ଲଘୁର୍ଭବ ।
ବଧୂମିବ ତ୍ୱା ଶାଲେ ଯତ୍ରକାମଂ ଭରାମସି ॥୮॥
( ଅଥର୍ବ. କାଂ. ୯ । ସୂ. ୩।ମଂ. ୨୪ ॥ )

ଅର୍ଥ:– ହେ ଶିଳ୍ପୀଲୋକମାନେ ! ଯେପରି [ନଃ] ଆମ୍ଭମାନଙ୍କର [ଶାଳେ] ଶାଳ ଅର୍ଥାତ୍ ଗୃହ [ପାଶମ୍] ବନ୍ଧନକୁ [ମା ପ୍ରତିମୁଚଃ] କଦାପି ମୋଚନ କରିବନାହିଁ, ଯେଉଁଥିରେ [ଗୁରୁର୍ଭାରଃ] ଅଧିକ ଓଜନଯୁକ୍ତ ଭାର [ଲଘୁର୍ଭବ] ଲଘୁ ହେବ, ସେହିପରି ନିର୍ମାଣ କର । [ତ୍ୱା] ସେହି ଶାଳାକୁ [ଯତ୍ରକାମମ୍ ] ଯେଉଁଠି ଯେପରି କାମନା ହେବ, ସେଠାରେ ସେହିରୂପରେ ଆମ୍ଭେମାନେ [ ବଧୂମିବ ] ବଧୂ ସଦୃଶ [ଭରାମସି] ସ୍ୱୀକାର କରୁଅଛୁ, ସେହିପରି ତୁମ୍ଭେମାନେ ମଧ୍ୟ ଗ୍ରହଣ କର । ॥୮॥

ଏହି ପ୍ରକାର ପ୍ରମାଣ ଅନୁସାରେ ଯେତେବେଳେ ଗୃହ ନିର୍ମାଣ ଶେଷହେବ ସେତେବେଳେ ପ୍ରବେଶ କରିବା ସମୟରେ କି କି ପ୍ରକାର ବିଧି କରାଯିବ, ତାହା ନିମ୍ନରେ ପ୍ରଦତ୍ତହେଲା ।

**ଅଥ ବିଧିଃ** —ଗୃହନିର୍ମାଣ ପରେ ଭଲଭାବରେ ଏହାକୁ ଶୁଦ୍ଧ ପବିତ୍ର କରାଇ ଚତୁଃଦିଗରେ ଥିବା ଦ୍ୱାରମାନଙ୍କରେ ବାହାରପଟେ ଚତୁରୋଟି ବେଦୀ ଏବଂ ଗୃହ ମଧ୍ୟ ଭାଗରେ ଗୋଟିଏ ବେଦୀ ତିଆରି କରିବେ କିମ୍ବା ତମ୍ବାରେ ତିଆରି ବେଦୀପରି କୁଣ୍ଡ ତିଆରି କରାଇବେ, ଯେଉଁଥିରେ ସବୁ ସ୍ଥାନରେ ଗୋଟିଏ କୁଣ୍ଡରେ କାମ ଚଳାଯାଇପାରିବ । ସମସ୍ତ ପ୍ରକାର ସାମଗ୍ରୀ ଅର୍ଥାତ୍ ପୃଷ୍ଠା ୨୦-୨୨ ଲିଖିତ ପ୍ରମାଣେ ସମିଧା, ଘୃତ ଚୃଉଳ, ମିଷ୍ଟପଦାର୍ଥ, ସୁଗନ୍ଧ ଓ ପୁଷ୍ଟିକାରକ ଦ୍ରବ୍ୟାଦି ନେଇ ଶୋଧନକରି ପ୍ରଥମଦିନ ରଖିନେବେ ଏବଂ ଯେଉଁଦିନ ଗୃହପତିଙ୍କର ମନ ପ୍ରସନ୍ନଥିବ, ସେହିଦିନ ଶୁଭଦିନରେ ଗୃହ ପ୍ରତିଷ୍ଠା କରିବେ ।

ସେଠାରେ ସେ ପ୍ରଥମେ ଧର୍ମାତ୍ମା-ବିଦ୍ୱାନ୍‌ମାନଙ୍କୁ ଋତ୍ୱିକ୍ ହୋତା, ଅଧ୍ୱର୍ଯ୍ୟୁ ଏବଂ ବ୍ରହ୍ମାରୂପେ ବରଣ କରିବେ । ସେମାନେ ସମସ୍ତେ ବେଦୀର ପଶ୍ଚିମ ଦିଗରେ ବସିବେ । ସେମାନଙ୍କ ମଧ୍ୟରୁ ହୋତାଙ୍କର ଆସନ ପଶ୍ଚିମରେ ରହିବ ଏବଂ ସେ ପୂର୍ବାଭିମୁଖେ ବସିବେ । ଅଧ୍ୱର୍ଯ୍ୟୁଙ୍କର ଆସନ ଉତ୍ତରରେ ତାହାଉପରେ ସେ ଦକ୍ଷିଣାଭିମୁଖେ ବସିବେ । ଉଦ୍‌ଗାତାଙ୍କର ଆସନ ପୂର୍ବରେ, ସେ ପଶ୍ଚିମାଭିମୁଖେ ବସିବେ ଏବଂ ବ୍ରହ୍ମାଙ୍କର

ଆସନ ( ଅନ୍ୟମାନଙ୍କ ଆସନ ଅପେକ୍ଷା ଉତ୍କୃଷ୍ଟ ) ଦକ୍ଷିଣରେ ତାହାଉପରେ ସେ ଉତ୍ତରାଭିମୁଖେ ବସିବେ । ଏହାପରେ ସଭରେ ସ୍ଥିରୋଟି ଆସନ ଉପରେ ଗୃହଜନ ବିଦ୍ୱାନଙ୍କୁ ବସାଇବେ ଏବଂ ଗୃହପତି ସବଂଶ ପଶ୍ଚିମରେ ପୂର୍ବାଭିମୁଖେ ବସିବେ । ଏହାପରେ ଘରମଧ୍ୟରେଥିବା ବେଦୀର ଚତୁର୍ଦ୍ଦିଗରେ ଅନ୍ୟ ଆସନ ମଧ୍ୟ ବିଛାଇ ରଖିବେ ।

ତତ୍ପରେ ନିଷ୍କ୍ରମଦ୍ୱାର ବା ଗୃହର ମୁଖ୍ୟଦ୍ୱାର ନିକଟରେ ବ୍ରହ୍ମାଙ୍କ ସହିତ ବାହାରେ ରହି—

ଓମ୍ ଅଚ୍ୟୁତାୟ ଭୌମାୟ ସ୍ୱାହା ॥ ( ପାର. ୩।୪।୩ )

ଏହି ମନ୍ତ୍ରରେ ଗୋଟିଏ ଆହୁତିଦେଇ ଧ୍ୱଜାର ସ୍ତମ୍ଭ ଯେଉଁଥିରେ ଧ୍ୱଜା ଲଗାଯାଇଥିବ ତାହା କ୦.ଇ ସ୍ଥାପନ କରିବେ ଏବଂ ଘରଉପରେ ସ୍ଥିର କୋଣରେ ଗୋଟିଏ ଧ୍ୱଜା ସ୍ଥାପନ କରିବେ ତଥା କାର୍ଯ୍ୟକର୍ତ୍ତା ଗୃହପତି ସ୍ତମ୍ଭ ସ୍ଥାପନ କରିବାପରେ ତାହାର ମୂଳରେ ଜଳ ସିଞ୍ଚନ କରିବେ ଯଦ୍ଵାରା ତାହା ଦୃଢ ରହିବ ।

ପୂର୍ବଦ୍ୱାର ଦ୍ୱାର ସମ୍ମୁଖସ୍ଥ ବାହାର ସ୍ଥାନକୁଯାଇ ନିମ୍ନଲିଖିତ ଗୋଟିଏ ମନ୍ତ୍ରରେ ଜଳ ସିଞ୍ଚନ କରିବେ ।

ଓମ୍ ଇମାମୁଚ୍ଛ୍ରୟାମି ଭୁବନସ୍ୟ ନାଭିଂ ବସୋର୍ଦ୍ଧାରାଂ ପ୍ରତରଣୀଂ ବସୂନାମ୍ । ଇହୈବ ଧ୍ରୁବାଂ ନିମିନୋମି ଶାଳାଂ କ୍ଷେମେ ତିଷ୍ଠତୁ ଘୃତମୁକ୍ଷମାଣା ॥୧॥ ( ପାର. ୩ । ୪ । ୪ )

ଏହି ମନ୍ତ୍ରରେ ପୂର୍ବଦ୍ୱାର ସମ୍ମୁଖରେ ଜଳ ସିଞ୍ଚନ କରିବେ ।

ଅଶ୍ୱାବତୀ ଗୋମତୀ ସୂନୃତାବତ୍ୟୁଚ୍ଛ୍ରୟସ୍ୱ ମହତେ ସୌଭଗାୟ । ଆ ତ୍ୱା ଶିଶୁରାକ୍ରନ୍ଦତ୍ୱା ଗାବୋ ଧେନବୋ ବାଶ୍ୟମାନାଃ ॥୨॥ [ ପାର. ୩।୪।୦ ]

ଏହି ମନ୍ତ୍ରରେ ଦକ୍ଷିଣ ଦ୍ୱାର ।

ଆ ତ୍ୱା କୁମାରସ୍ତରୁଣ-ଆ ବତ୍ସୋ ଜଗଦୈଃ ସହ । ଆ ତ୍ୱା ପରିସ୍ରୁତଃ କୁମ୍ଭ ଆ ଦଧ୍ନଃ କଳଶୈରୁପ । କ୍ଷେମସ୍ୟ ପତ୍ନୀ ବୃହତୀ ସୁବାସା ରୟିଂ ନୋ ଧେହି ସୁଭଗେ ସୁବୀର୍ୟ୍ୟମ୍ ॥୩॥ [ ପର. ୩।୪।୦ ]

ଏହି ମନ୍ତ୍ରରେ ପଶ୍ଚିମ ଦ୍ୱାର ।

ଅଶ୍ୱାବଦ୍ ଗୋମଦୂର୍ଜ୍ଜସ୍ୱତ୍ପର୍ଣ୍ଣଂ ବନସ୍ପତେରିବ । ଅଭି ନଃ ପୂର୍ୟ୍ୟତାଂ ରୟିରିଦମନୁଶ୍ରେୟୋ ବସାନଃ ॥ [ ପାର. ୩।୪।୪ ] ॥୪॥

ଏହି ମନ୍ତ୍ରରେ ଉତ୍ତର ଦ୍ୱାର ସମ୍ମୁଖରେ ଜଳ ସିଞ୍ଚନ କରିବେ । ତତ୍ପରେ ଦ୍ୱାରକୁ ଶୋଭିତ କରିବା ନିମନ୍ତେ ସବୁଦ୍ୱାର ଦେଶରେ ପୁଷ୍ପ, ପତ୍ର ଏବଂ କଦଳୀ ଗଛ ବା କଦଳୀ ପତ୍ର ସଜାଇବେ । ତତ୍ପରେ ଗୃହପତି—

ହେ ବ୍ରହ୍ମନ୍ ! ପ୍ରବିଶାମୀତି ॥ ( ପାର. ୩।୪।୫ )

ଏହିବାକ୍ୟ କହିବେ । ଏବଂ ବ୍ରହ୍ମା :—

ବରଂ ଭବାନ୍ ପ୍ରବଶତୁ ॥

ଏହାପରେ ପ୍ରତ୍ୟୁତ୍ତର ଦେବେ ଏବଂ ବ୍ରହ୍ମାଙ୍କର ଅନୁମନ୍ତ୍ରଣକ୍ରମେ :-

ଓମ୍ ଋତଂ ପ୍ରପଦ୍ୟେ ଶିବଂ ପ୍ରପଦ୍ୟେ ॥

( ପାର. ୩।୪।୬ )

ଏହି ବାକ୍ୟ କହିବା ପରେ ଭିତରକୁ ପ୍ରବେଶ କରିବେ ଏବଂ ଯେଉଁ ଘୃତ ଗରମକରି, ଛାଣି, ସୁଗନ୍ଧ ମିଶାଇ ରଖାଯାଇଥିବ ତାହାକୁ ପାତ୍ରରେନେଇ, ଯେଉଁ ଦ୍ୱାରରେ ପ୍ରଥମେ ପ୍ରବେଶ କରିବାକୁହେବ. ସେହି ଦ୍ୱାରବାଟେ ପ୍ରବେଶକରି ପୃଷ୍ଠା ୨୬-୩୦ ଲିଖିତ ପ୍ରମାଣେ ଅଗ୍ନ୍ୟାଧାନ, ସମିଧାଚୟନ, ଜଳପ୍ରୋକ୍ଷଣ, ଆଚମନ* କରି ପୃଷ୍ଠା ୩୧-୩୩ ରେ ଲିଖିତ ପ୍ରମାଣେ ଘୃତର ଆଘାରବାଜ୍ୟଭାଗାହୁତି କରି ଏବଂ ବ୍ୟାହୃତି ଆହୁତି କରି, ନବମରେ ଗୋଟିଏ ସ୍ୱିଷ୍ଟକୃତ୍ ଆଜ୍ୟାହୁତି ଅର୍ଥାତ୍ ବିଭିନ୍ନ ବିଭାଗମାନଙ୍କରେ ଥିବା ଦ୍ୱାରସ୍ଥିତ ବେଦୀମାନଙ୍କରେ ଅଗ୍ନ୍ୟାଧାନଠାରୁ ଆରମ୍ଭ କରି ସ୍ୱିଷ୍ଟକୃତ୍ ଆହୁତି ପର୍ଯ୍ୟନ୍ତ ବିଧି କରିସାରି, ତତ୍ପରେ ପୂର୍ବଦିଗରେ ଥିବା ଦ୍ୱାରସ୍ଥିତ କୁଣ୍ଡରେ—

ଓମ୍ ପ୍ରାଚ୍ୟା ଦିଶଃ ଶାଲାୟା ନମୋ ମହିମ୍ନେ ସ୍ୱାହା ॥୧॥

ଓମ୍ ଦେବେଭ୍ୟଃ ସ୍ୱାହେୟଭ୍ୟଃ ସ୍ୱାହା ॥୨॥

ଏହିମନ୍ତ୍ରରେ ଘୃତ ଆହୁତି ଦେବେ । ସେହିପରି—

*ଏଠାରେ କ୍ରମ ଅଭିପ୍ରେତ ନୁହେଁ । କେବଳ କାର୍ଯ୍ୟ ନିର୍ଦ୍ଦେଶ ଅଭିପ୍ରେତ ହୋଇଛି । ଅର୍ଥାତ୍ ପ୍ରଥମେ ଆଚମନ ଓ ପରେ ଅଗ୍ନ୍ୟାଧାନ ଆଦି କରିବା ଉଚିତ ।



ଓମ୍ ଦକ୍ଷିଣାୟୈ ଦିଶଃ ଶାଳାୟୈ ନମୋ ମହିମ୍ନେ ସ୍ୱାହା ॥୧॥ ଓମ୍ ଦେବେଭ୍ୟଃ ସ୍ୱାହେୟଭ୍ୟଃ ସ୍ୱାହା ॥୨॥

ଏହି ମନ୍ତ୍ରଦ୍ୱୟରେ ଦକ୍ଷିଣ ଦ୍ୱାରସ୍ଥ ବେଦୀରେ ଦୁଇଟି ଆଜ୍ୟାହୁତି ଏବଂ –

ଓମ୍ ପ୍ରତୀଚ୍ୟୈ ଦିଶଃ ଶାଳାୟୈ ନମୋ ମହିମ୍ନେ ସ୍ୱାହା ॥୧॥

ଓମ୍ ଦେବେଭ୍ୟଃ ସ୍ୱାହେୟଭ୍ୟଃ ସ୍ୱାହା ॥୨॥

ଏହି ଦୁଇ ମନ୍ତ୍ରରେ ଦୁଇଟି ଆଜ୍ୟାହୁତି ପଶ୍ଚିମଦ୍ୱାରସ୍ଥିତ କୁଣ୍ଡରେ ଦେବେ ।

ଓମ୍ ଉଦୀଚ୍ୟୈ ଦିଶଃ ଶାଳାୟୈ ନମୋ ମହିମ୍ନେ ସ୍ୱାହା ॥୧॥

ଓମ୍ ଦେବେଭ୍ୟଃ ସ୍ୱାହେୟଭ୍ୟଃ ସ୍ୱାହା ॥୨॥

ଏହି ମନ୍ତ୍ରରେ ଉତ୍ତରଦିଗସ୍ଥିତ ବେଦୀରେ ଦୁଇଟି ଆଜ୍ୟାହୁତି ଦେବେ । ପୁନଃ ମଧ୍ୟଶାଳାସ୍ଥ ବେଦୀ ସମୀପକୁ ଯାଇ ନିଜ-ନିଜ ଦିଗରେ ବସି —

ଓମ୍ ଧ୍ରୁବାୟୈ ଦିଶଃ ଶାଳାୟୈ ନମୋ ମହିମ୍ନେ ସ୍ୱାହା ॥୧॥

ଓମ୍ ଦେବେଭ୍ୟଃ ସ୍ୱାହେୟଭ୍ୟଃ ସ୍ୱାହା ॥୨॥

ଏଥିରେ ମଧ୍ୟବେଦୀରେ ଦୁଇଟି ଆଜ୍ୟାହୁତି ।

ଓମ୍ ଊର୍ଦ୍ଧ୍ୱାୟୈ ଦଶଃ ଶାଳାୟୈ ନମୋ ମହ୍ୟମ୍ନେ
ସ୍ୱାହା ॥୧॥

ଓମ୍ ଦେବେଭ୍ୟଃ ସ୍ୱାହେୟଭ୍ୟଃ ସ୍ୱାହା ॥୨॥

ମଧ୍ୟ ବେଦୀରେ ଏହିପରି ଦୁଇଟି ଆଜ୍ୟାହୁତି । ଏବଂ

ଓମ୍ ଧ୍ରୁବଶୋର୍ଦ୍ଧଶଃ ଶାଳାୟୈ ନମୋ ମହ୍ୟମ୍ନେ
ସ୍ୱାହା ॥୧॥

ଓମ୍ ଦେବେଭ୍ୟଃ ସ୍ୱାହେୟଭ୍ୟଃ ସ୍ୱାହା ॥୨॥

ଏଥିରେ ମଧ୍ୟ ଦୁଇଟି ଆଜ୍ୟାହୁତି ମଧ୍ୟସ୍ଥ ବେଦୀରେ ଦେଇ ପୁନଃ ପୂର୍ବଦ୍ୱାରରେ ଥିବା ଦାରସ୍ଥିତ ବେଦୀରେ ଅଗ୍ନି ପ୍ରଜ୍ୱଳିତ କରି, ବେଦୀର ଦକ୍ଷିଣ ଭାଗରେ ବ୍ରହ୍ମାସନ ତଥା ହୋତା ଆଦିଙ୍କର ପୂର୍ବୋକ୍ତ ଢଙ୍ଗରେ ଆସନ ବଛାଇ, ସେହି ବେଦୀର ଉତ୍ତରଭାଗରେ ଏକ କଳସ ସ୍ଥାପନ କରି, ପୃଷ୍ଠା ୨୧-୨୨ ରେ ଲିଖିତ ପ୍ରମାଣେ ସ୍ଥାଳୀପାକ ତିଆରିକରି ପୃଥକ୍ ବସ୍ତ୍ରାଦିଦ୍ୱାରା ଢାକଦେଇ ସେଠାରୁ ବ୍ରହ୍ମା ପ୍ରଭୃତିଙ୍କ ସହିତ ମଧ୍ୟଶାଳା ଭିତରକୁ ପ୍ରବେଶକରି, ବ୍ରହ୍ମା ପ୍ରଭୃତିଙ୍କୁ ଉଭୟ ଦିଗରେ ନିର୍ଦ୍ଦିଷ୍ଟ ଆସନରେ ବସାଇ ସ୍ୱୟଂ ପୂର୍ବାଭିମୁଖେ ବସି, ଉତ୍ତମ ରୂପେ ଶୁଦ୍ଧ କରଯାଇଥିବା ଘିଅ ଅର୍ଥାତ୍ ସେହି ଘିଅ ଗରମ କରାଇ ଛଣା-ଯିବାପରେ କସ୍ତୁରୀ ପ୍ରଭୃତି ସୁଗଂଧଦ୍ରବ୍ୟ ମିଶାଯାଇଥିବ, ତାହା ପାତ୍ରରେ ନେଇ ସମସ୍ତଙ୍କ ସମ୍ମୁଖରେ ପାତ୍ର ଭରି ରଖିବେ ଏବଂ ହାତରେ ନେଇ-

ଓମ୍ ବାସ୍ତୋଷ୍ପତେ ପ୍ରତି ଜାନୀହ୍ୟସ୍ମାନ୍ତସ୍ୱାବେଶୋ ଅନମୀବୋ ଭବା ନଃ । ଯତ୍ତ୍ୱେମହେ ପ୍ରତି ତନ୍ନୋ ଜୁଷସ୍ୱ ଶନ୍ନୋ ଭବ ଦ୍ୱିପଦେ ଶଂ ଚତୁଷ୍ପଦେ ସ୍ୱାହା ॥୧॥

ଓମ୍ ବାସ୍ତୋଷ୍ପତେ ପ୍ରତରଣୋ ନ ଏଧି ଗୟସ୍ଫାନୋ ଗୋଭିରଶ୍ୱେଭିରିନ୍ଦୋ । ଅଜରାସସ୍ତେ ସଖ୍ୟେ ସ୍ୟାମ ପିତେବ ପୁତ୍ରାନ୍ ପ୍ରତି ନୋ ଜୁଷସ୍ୱ ସ୍ୱାହା ॥୨॥

ଓମ୍ ବାସ୍ତୋଷ୍ପତେ ଶଗ୍ମୟା ସଂସଦା ତେ ସକ୍ଷୀମହି ରଣ୍ୱୟା ଗାତୁମତ୍ୟା । ପାହି କ୍ଷେମ ଉତ ଯୋଗେ ବରଂ ନୋ ଯୂୟଂ ପାତ ସ୍ୱସ୍ତିଭିଃ ସଦା ନଃ ସ୍ୱାହା

ଋ· ମ. ୭ । ସୂ· ୫୪ । ( ମ. ୧-୩ ) ॥୩॥

ଓମ୍ ଅମୀବହା ବାସ୍ତୋଷ୍ପତେ ବିଶ୍ୱା ରୂପାଣ୍ୟାବିଶନ୍ । ସଖା ସୁଶେବ ଏଧି ନଃ ସ୍ୱାହା ॥୪॥

( ଋ· ମଂ. ୭ । ସୂ. ୫୫ । ମଂ. ୧ ॥ )

ଏହି ଚାରୋଟି ମନ୍ତ୍ରରେ ଆଜ୍ୟାହୁତି ଦେଇ ଯେଉଁ ସ୍ଥାଳୀପାକ ଅର୍ଥାତ୍ ଭାତ ତିଆରି କରାଯାଇଥିବ ତାହାକୁ ଏକ କଂସା ପାତ୍ରରେ ନେଇ, ତା ଉପରେ ଆବଶ୍ୟକ ପରିମାଣରେ ଘୃତ ସିଞ୍ଚନ କରି ଯଜମାନର ସମ୍ମୁଖରେ ରଖିବେ ଏବଂ ପୃଥକ୍ ପୃଥକ୍ କଣ୍ଠି କଣ୍ଠି ନେଇ :—

ଓମ୍ ଅଗ୍ନିମିନ୍ଦ୍ରଂ ବୃହସ୍ପତିଂ ବିଶ୍ୱାଁଶ୍ଚ ଦେବାନୁପହ୍ୱୟେ । ସରସ୍ୱତୀଞ୍ଚ ବାର୍ଜାଞ୍ଚ ବାସ୍ତୁ ମେ ଦତ୍ତ
ବାଜିନଃ ସ୍ୱାହା ॥୧॥

ସର୍ପଦେବଜନାନ୍ତ୍ ସର୍ବାନ୍ ହିମବନ୍ତଂ ସୁଦର୍ଶନମ୍ ।
ବସୂଂଶ୍ଚ ରୁଦ୍ରାନାଦିତ୍ୟାନୀଶାନଂ ଜଗଦୈଃ ସହ ।
ଏତାନ୍ତ୍ ସର୍ବାନ୍ ପ୍ରପଦ୍ୟେଽହଂ ବାସ୍ତୁ ମେ ଦତ୍ତ
ବାଜିନଃ ସ୍ୱାହା ॥୨॥

ପୂର୍ବାହ୍ଣମପରାହ୍ଣଂ ଚୋଭୌ ମଧ୍ୟନ୍ଦିନା ସହ । ପ୍ରଦୋଷମର୍ଧରାତ୍ରଂ ଚ ବ୍ୟୁଷ୍ଟାଂ ଦେବୀଂ ମହାପଥାମ୍ । ଏତାନ୍ତ୍ ସର୍ବାନ୍ ପ୍ରପଦ୍ୟେଽହଂ ବାସ୍ତୁ ମେ ଦତ୍ତ ବାଜିନଃ ସ୍ୱାହା ॥୩॥

ଓମ୍ କର୍ତ୍ତାରଂଞ୍ଚ ବିକର୍ତ୍ତାରଂ ବିଶ୍ୱକର୍ମାଣମୋଷଧୀଂଶ୍ଚ ବନସ୍ପତୀନ୍ । ଏତାନ୍ତ୍ ସର୍ବାନ୍ ପ୍ରପଦ୍ୟେଽହଂ ବାସ୍ତୁ ମେ ଦତ୍ତ ବାଜିନଃ ସ୍ୱାହା ॥୪॥

ଓମ୍ ଧାତାରଂ ଚ ବିଧାତାରଂ ନିଧୀନାଂ ଚ ପତିଂ ସହ । ଏତାନ୍ତ୍ ସର୍ବାନ୍ ପ୍ରପଦ୍ୟେଽହଂ ବାସ୍ତୁ ମେ ଦତ୍ତ ବାଜିନଃ ସ୍ୱାହା ॥୫॥

ସେୟାନଂ ଶିବମିଦଂ ବାସ୍ତୁ ଦତ୍ତଂ ବ୍ରହ୍ମପ୍ରଜାପତୀ ।
ସର୍ବାଶ୍ଚ ଦେବତାଶ୍ଚ ସ୍ୱାହା ॥ ୭ ॥

( ପାର. ୩।୪।୮ )

ସ୍ଥାଳୀପାକ ଅର୍ଥାତ୍ ଘୃତଯୁକ୍ତ ଭାତରେ ଏହି ଛ' ମନ୍ତ୍ରରେ ଛ' ଆହୁତି ଦେଇ, କାଂସ୍ୟପାତ୍ରରେ ଉଦୁମ୍ବର, (ଗୂଲର) ଓ ପଳାଶ ପତ୍ର,ଶାଡ୍ୱଳ (ତୃଣବିଶେଷ), ଗୋମୟ, ଦଧି, ମଧୁ, ଘୃତ, କୁଶ ଏବଂ ଯବ ଏକତ୍ର ମିଳାଇ –

ଓମ୍ ଶ୍ରୀଶ୍ଚ ତ୍ୱା ଯଶଶ୍ଚ ପୂର୍ବେ ସନ୍ଧୌ ଗୋପାୟେତାମ୍ ।
ଏହି ମନ୍ତ୍ରରେ ପୂର୍ବଦ୍ୱାର

ଓମ୍ ଯଜ୍ଞଶ୍ଚ ତ୍ୱା ଦକ୍ଷିଣା ଚ ଦକ୍ଷେଣେ ସନ୍ଧୌ ଗୋପା-ୟେତାମ୍ ॥ ଏହି ମନ୍ତ୍ରରେ ଦକ୍ଷିଣଦ୍ୱାର ।

ଓମ୍ ଅନ୍ନଞ୍ଚ ତ୍ୱା ବ୍ରାହ୍ମଣଶ୍ଚ ପଶ୍ଚିମେ ସନ୍ଧୌ ଗୋପାୟେତାମ୍ ॥ ଏହି ମନ୍ତ୍ରରେ ପଶ୍ଚିମଦ୍ୱାର ।

ଓମ୍ ଊର୍କ୍ ଚ ତ୍ୱା ସୂନୃତା ଚୋତ୍ତରେ ସନ୍ଧୌ ଗୋପାୟେତାମ୍ ॥ ଏହି ମନ୍ତ୍ରରେ ଉତ୍ତରଦ୍ୱାର ।

( ପାର. ୩।୪।୧୦-୧୩ )

ନିକଟରେ ସେଥିରୁ କିଛି କିଛି ଦେଇ ବାଣ୍ଟିବେ ଏବଂ ଜଳପ୍ରୋକ୍ଷଣ ମଧ୍ୟ କରିବେ ।

**କେତା ଚ ମା ସୁକେତା ଚ ପୁରସ୍ତାଦ୍ ଗୋପା-ୟେତାମିତ୍ୟଗ୍ନିର୍ବୈ କେତାଽଽଦିତ୍ୟଃ ସୁକେତା ତୌ ପ୍ରପଦ୍ୟେ ତାଭ୍ୟାଂ ନମୋଽସ୍ତୁ ତୌ ମା ପୁରସ୍ତାଦ୍ ଗୋପାୟେତାମ୍ ॥୧॥**

ଏହି ମନ୍ତ୍ରରେ ପୂର୍ବଦ୍ୱାରରେ ପରମାତ୍ମାଙ୍କର ଉପସ୍ଥାନ କରି, ଦକ୍ଷିଣଦ୍ୱାର ସମ୍ମୁଖରେ ଦକ୍ଷିଣମୁଖ ହୋଇ—

**ଦକ୍ଷିଣତୋ ଗୋପାୟମାନଂ ଚ ମା ରକ୍ଷମାଣା ଚ ଦକ୍ଷିଣତୋ ଗୋପାୟେତାମିତ୍ୟହର୍ବୈ ଗୋପାୟ-ମାନଂ ରାତ୍ରୀ ରକ୍ଷମାଣା ତେ ପ୍ରପଦ୍ୟେ ତାଭ୍ୟାଂ ନମୋଽସ୍ତୁ ତେ ମା ଦକ୍ଷିଣତୋ ଗୋପାୟେତାମ୍ ॥୨॥**

ଏହିପରି ମନ୍ତ୍ରରେ ଜଗଦୀଶଙ୍କୁ ଉପସ୍ଥାନକରି ପଶ୍ଚିମ ଦ୍ୱାର ସମ୍ମୁଖରେ ପଶ୍ଚିମାଭିମୁଖ ହୋଇ—

**ଦୀଦିବଶ୍ଚ ମା ଜାଗୃବିଶ୍ଚ ପଶ୍ଚାଦ୍ ଗୋପାୟେତା-ମିତ୍ୟନ୍ନଂ ବୈ ଦୀଦିବଃ ପ୍ରାଣୋ ଜାଗୃବିସ୍ତୌ ପ୍ରପଦ୍ୟେ ତାଭ୍ୟାଂ ନମୋଽସ୍ତୁ ତୌ ମା ପଶ୍ଚାଦ୍ ଗୋପା ୟେତାମ୍ ॥୩॥**

ଏହାପରେ ପଶ୍ଚିମଦିଗରେ ସର୍ବବ୍ୟାପକ ପରମାତ୍ମାଙ୍କୁ ଉପସ୍ଥାନକରି ଉତ୍ତରଦ୍ୱାର ସମ୍ମୁଖରେ ଉତ୍ତରାଭିମୁଖେ ଠିଆ-ହୋଇ –

ଅସ୍ବପ୍ନଶ୍ଚ ମାଽନବଦ୍ରାଣଶ୍ଚୋତ୍ତରତୋ ଗୋପାୟେ-ତାମିତି ଚନ୍ଦ୍ରମା ବା ଅସ୍ବପ୍ନୋ ବାୟୁରନବଦ୍ରା-ଣସ୍ତୌ ପ୍ରପଦ୍ୟେ ତାଭ୍ୟାଂ ନମୋଽସ୍ତୁ ତୌ ମୋତ୍ତରତୋ ଗୋପାୟେତାମ୍ ॥୪॥

( ପାର. ୩।୪।୧୪-୧୭ )

ଧର୍ମସ୍ଥୂଣାରାଜଂ ଶ୍ରୀସ୍ତୂପମହୋରାତ୍ରେ ଦ୍ୱାରଫଲକେ । ଇନ୍ଦ୍ରସ୍ୟ ଗୃହା ବସୁମନ୍ତୋ ବରୂଥିନସ୍ତାନହଂ ପ୍ରପଦ୍ୟେ ସହ ପ୍ରଜୟା ପଶୁଭିଃସହ । ଯନ୍ମେ କିଞ୍ଚିଦସ୍ତ୍ୟୁ-ପହୂତଃ ସର୍ବଗଣଃ ସଖା ଯ୍ୟୂଃ ସାଧୁସଂମ୍ମତଃ* । ତାଂ ତ୍ୱା ଶାଲେ ଅରିଷ୍ଟବୀରା ଗୃହା ନଃ ସନ୍ତୁ ସର୍ବତଃ

( ପାର. ୩।୪।୧୮ ) ॥୫॥

ଏହାପରେ ଉତ୍ତର ଦିଗରେ ସର୍ବାଧିଷ୍ଠାତା ପରମାତ୍ମାଙ୍କର ଉପସ୍ଥାନକରି, ସୁପାତ୍ର; ଦେବଭକ୍ତ, ଧାର୍ମିକ, ହୋତାଆଦି

*ପାରସ୍କର ଗୃହ୍ୟ: ୩-୪-୧୮ ରେ "ସର୍ବଗଣ ସଖାୟଃ ସାଧୁ-ସଂବୃତଃ" ପାଠାନ୍ତର ଅଛି । ( ସଂପାଦକ )



ସପତ୍ନୀକ ବ୍ରାହ୍ମଣ ତଥା ଇଷ୍ଟମିତ୍ର ଏବଂ ସମ୍ବନ୍ଧିମାନଙ୍କୁ ଉତ୍ତମ ରୂପେ ଭୋଜନଦେଇ ଯଥାଯୋଗ୍ୟ ସତ୍କାରକରି ଦକ୍ଷିଣା ଦେବେ । ଶେଷରେ ପୁରୁଷ ମାନଙ୍କୁ ପୁରୁଷ ଏବଂ ସ୍ତ୍ରୀ ମାନଙ୍କୁ ସ୍ତ୍ରୀ ପ୍ରସନ୍ନତା ପୂର୍ବକ ବିଦାୟ ଦେବେ । ସେମାନେ ଯିବା ସମୟରେ ଗୃହପତି ଏବଂ ଗୃହପତ୍ନୀଙ୍କୁ --

**ସର୍ବେ ଭବନ୍ତୋଽତ୍ରାଽଽନନ୍ଦିତାଃ ସଦା ଭୂୟାସ୍ତୁଃ ॥**

ଏହି ପ୍ରକାର ଆଶୀର୍ବାଦ ଦେଇ ନିଜନିଜର ଗୃହକୁ ଯିବେ ।

ଏହିପରିଭାବରେ ଉଦ୍ୟାନ ପ୍ରଭୃତି ମଧ୍ୟ ପ୍ରତିଷ୍ଠା କରିବେ । ଏଥିରେ ଏତିକିମାତ୍ର ପାର୍ଥକ୍ୟ ରହିବ ଯେ, ଯେଉଁ ଦିଗରୁ ବାୟୁ ବଗିଚାଭିତରକୁ ଯାଉଥିବ, ସେହି ଦିଗରେ ହୋମ କରାଯିବ ଯେପରି ତାହାର ସୁଗନ୍ଧ ବୃକ୍ଷ ପ୍ରଭୃତିକୁ ସୁଗନ୍ଧିତ କରିବ । ଯଦି ଉଦ୍ୟାନ ମଝିରେ ଗୃହଥିବ ତେବେ ପୂର୍ବୋକ୍ତ ପ୍ରକାରେ ତାହା ପ୍ରତିଷ୍ଠା କରାଯିବ ।

## ଇତି ଶାଳାଦି ସଂସ୍କାର ବିଧିଃ

ଏହିପରି ଭବରେ ଗୃହାଦି ରଚନାକରି ଗୃହାଶ୍ରମରେ ସମସ୍ତେ ନିଜନିଜର ବର୍ଣ୍ଣର ଅନୁକୂଳ ଆଚରଣ, କର୍ତ୍ତବ୍ୟ କର୍ମ ଯଥାବିଧି କରିବେ ।

## ଅଥ ବ୍ରାହ୍ମଣସ୍ୱରୂପଲକ୍ଷଣମ୍

**ଅଧ୍ୟାପନମଧ୍ୟୟନଂ ଯଜନଂ ଯାଜନଂ ତଥା ।**
**ଦାନଂ ପ୍ରତିଗ୍ରହଶ୍ଚୈବ ବ୍ରାହ୍ମଣାନାମକଲ୍ପୟତ୍ ॥୧॥**

ମନୁ. ( ୧।୮୮ )

ଶମୋ ଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବମେବ ଚ ।
ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜମ୍ ॥୨॥
ଗୀତା. ( ୧୮।୪୨ )

ଅର୍ଥ:—୧-ନିଷ୍କପଟ ହୋଇ ପ୍ରୀତିପୂର୍ବକ ପୁରୁଷ-ପୁରୁଷମାନଙ୍କୁ ଏବଂ ସ୍ତ୍ରୀ, ସ୍ତ୍ରୀମାନଙ୍କୁ ପଢ଼ାଇବେ । ୨-ପୂର୍ଣ୍ଣବିଦ୍ୟା ଲାଭ କରିବେ ୩-ଅଗ୍ନିହୋତ୍ରାଦି ଯଜ୍ଞ କରିବେ । ୪-ଯଜ୍ଞ କରାଇବେ ୫-ବିଦ୍ୟା ବା ସୁବର୍ଣ୍ଣାଦି ସତ୍ପାତ୍ରରେ ଦାନକରିବେ । ୬ ନ୍ୟାୟରେ ଧନୋପାର୍ଜନକାରୀ ଗୃହସ୍ଥମାନଙ୍କଠାରୁ ମଧ୍ୟ ଦାନ ନେବେ । ଏମାନଙ୍କ ମଧ୍ୟରୁ ତିନୋଟି କର୍ମ ଯଥା—ପଢ଼ିବା, ଯଜ୍ଞ କରିବା ଓ ଦାନ ଦେବା ଧର୍ମାର୍ଥ, ଏବଂ ପଢ଼ାଇବା, ଯଜ୍ଞ କରାଇବା ଓ ଦାନ ନେବା ଜୀବିକା ଅଟେ ।

ପରନ୍ତୁ—

ପ୍ରତିଗ୍ରହଃ ପ୍ରତ୍ୟବରଃ ॥ ମନୁ. ( ୧୦।୧୦୯ )

ଦାନ ନେବା ନୀଚ କର୍ମ ଅଟେ । କିନ୍ତୁ ପଢ଼ାଇ ଓ ଯଜ୍ଞ କରାଇ ଜୀବିକା କରିବା ଉତ୍ତମ କର୍ମ ଅଟେ ॥ ୧ ॥

---

* ଧର୍ମ, ନ୍ୟାୟାଚରଣର ନାମ ଅଟେ । ନ୍ୟାୟର ଅର୍ଥ ପକ୍ଷପାତ ପରିତ୍ୟାଗ କରି ବ୍ୟବହାର କରିବା । ସଦା ଅହିଂସା, ଅନିହୁତା, ସତ୍ୟଭାଷଣାଦିରେ ଦୃଢ଼ବୃତ୍ତି ଏବଂ ହିଂସା, ଦ୍ୱେଷ, ମିଥ୍ୟାଭାଷଣାଦି ପରିତ୍ୟାଗ କରିବା ହେଉଛି ପକ୍ଷପାତ ରହିତ ବ୍ୟବହାର । ସମସ୍ତ ମାନବ ସମାଜର ଏହାହିଁ ଧର୍ମ । କିନ୍ତୁ ଯେଉଁ ଯେଉଁ ଧର୍ମ (କର୍ତ୍ତବ୍ୟ) ଲକ୍ଷଣ ବର୍ଣ୍ଣକର୍ମାନୁଯାୟୀ ପୃଥକ୍ ପୃଥକ୍ ଅଛି ସେମାନଙ୍କ ଦ୍ୱାରା ପୃଥକ୍ ପୃଥକ୍ ବର୍ଣ୍ଣ ବିଭାଗ ଗଣନା କରାଯାଇଛି । ( ଦ:ସ: )

(ଶମଃ) ମନକୁ ଅଧର୍ମ ବାଟକୁ ଯିବାକୁ ନଦେବା, ଏପରିକ ମନରେ ଅଧର୍ମ କରିବାର ଇଚ୍ଛାମଧ୍ୟ ଉଠିବାକୁ ନଦେବା, (ଦମଃ) ଶ୍ରୋତ୍ରାଦି ଇନ୍ଦ୍ରିୟମାନଙ୍କୁ ଅଧର୍ମାଚରଣରୁ ସର୍ବଦା ଦୂରରେ ରଖିବା, ଦୂରେଇରଖି କେବଳ ଧର୍ମ ପଥରେ ପ୍ରବୃତ୍ତ କରିବା, (ତପଃ) ବ୍ରହ୍ମଚର୍ଯ୍ୟ, ବିଦ୍ୟା, ଯୋଗାଭ୍ୟାସରେ ସିଦ୍ଧି ନିମନ୍ତେ ଶୀତ, ଉଷ୍ଣ, ନିନ୍ଦା, ସ୍ତୁତି, କ୍ଷୁଧା, ତୃଷା, ମାନାପମାନଆଦି ଦ୍ୱନ୍ଦ୍ୱକୁ ସହିବା, (ଶୌଚମ୍) ରାଗ, ଦ୍ୱେଷ, ମୋହ ପ୍ରଭୃତିରୁ ମନ ଏବଂ ଆତ୍ମାକୁ ତଥା ଜଳାଦିଦ୍ୱାରା ଶରୀରକୁ ସର୍ବଦା ପବିତ୍ର ରଖିବା (କ୍ଷାନ୍ତିଃ) କ୍ଷମା ଅର୍ଥାତ୍ କେହି ନିନ୍ଦାସ୍ତୁତି ଆଦିରେ କଷ୍ଟଦେଲେ ମଧ୍ୟ ତାହାପ୍ରତି କୃପାଳୁହୋଇ କ୍ରୋଧନକରିବା (ଆର୍ଜବମ୍) ନିରଭିମାନ ରହିବା, ଦମ୍ଭ, ସ୍ୱାତ୍ମଶ୍ଳାଘା ଅର୍ଥାତ୍ ନିଜର ମୁଖରେ ନିଜର ପ୍ରଶଂସା ନକରି ନମ୍ର ସରଳ, ଶୁଦ୍ଧ, ପବିତ୍ର ଭାବରଖିବା. (ଜ୍ଞାନମ୍) ସମସ୍ତ ଶାସ୍ତ୍ର ଅଧ୍ୟୟନକରି ଏବଂ ବିଚାରକରି ତାହାର ଶବ୍ଦ ଅର୍ଥ ସଂବନ୍ଧଗୁଡ଼ିକୁ ଠିକ୍ରୂପେ ଜାଣି ପଢ଼ାଇବାର ପୂର୍ଣ୍ଣସାମର୍ଥ୍ୟ ଲାଭକରିବା, (ବିଜ୍ଞାନମ୍) ପୃଥିବୀଠାରୁ ଆରମ୍ଭକରି ପରମେଶ୍ୱର ପର୍ଯ୍ୟନ୍ତ ସମସ୍ତ ପଦାର୍ଥକୁ ଜାଣି ଏବଂ କ୍ରିୟାକୁଶଳତା ତଥା ଯୋଗାଭ୍ୟାସ ଯୋଗେ ସାକ୍ଷାତକରି ଯଥାବତ୍ ଉପକାର ଗ୍ରହଣ କରିବା ଏବଂ ଅନ୍ୟର ଉପକାର କରିବା (ଆସ୍ତିକ୍ୟମ୍) ପରମେଶ୍ୱର ବେଦ, ଧର୍ମ, ପରଲୋକ, ପରଜନ୍ମ, ପୂର୍ବଜନ୍ମ, କର୍ମଫଳ ଏବଂ ମୁକ୍ତିରୁ କଦାପି ବିମୁଖ ନହେବା । ଏହି ନଅଟି କର୍ମ ଏବଂ ଗୁଣ ଧର୍ମରୂପେ* ଜାଣି, ସର୍ବୋତ୍ତମ ଗୁଣ, କର୍ମ,

* ବ୍ରାହ୍ମଣ ଧର୍ମ (ସମ୍ପାଦକ)

ସ୍ୱଭାବ ଧାରଣ କରିବା; ଏହିସବୁ ଗୁଣ କର୍ମ ଯେଉଁ ମନୁଷ୍ୟ ମାନଙ୍କ ମଧ୍ୟରେ ଥିବ ସେମାନଙ୍କୁ ବ୍ରାହ୍ମଣ ବା ବ୍ରାହ୍ମଣୀ ବୁଝାଯିବ । ବିବାହ ମଧ୍ୟ ଏହିମାନଙ୍କର ବର୍ଣ୍ଣ ମଧ୍ୟରେ ଗୁଣ, କର୍ମ ଓ ସ୍ୱଭାବକୁ ମିଳାଇବା ପରେ କରିବାକୁ ହେବ । ମନୁଷ୍ୟଜାତି ମଧ୍ୟରେ ଏହିମାନଙ୍କର ବ୍ରାହ୍ମଣ ବର୍ଣ୍ଣର ଅଧିକାର ଅଛି ॥୨॥

## ଅଥ କ୍ଷତ୍ରିୟସ୍ୱରୂପ ଲକ୍ଷଣମ୍

ପ୍ରଜାନାଂ ରକ୍ଷଣଂ ଦାନମିଜ୍ୟାଧ୍ୟୟନମେବ ଚ ।
ବିଷୟେଷ୍ୱପ୍ରସକ୍ତିଶ୍ଚ କ୍ଷତ୍ରିୟସ୍ୟ ସମାସତଃ ॥୧॥
ମନୁ. ( ୧।୮୯ )

ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟ-
ପଲାୟନମ୍ । ଦାନମୀଶ୍ୱରଭାବଶ୍ଚ କ୍ଷାତ୍ରକର୍ମ
ସ୍ୱଭାବଜମ୍ ॥୨॥ ଗୀତା. ( ୧୮।୪୩ )

ଅର୍ଥ:— ଦୀର୍ଘ ବ୍ରହ୍ମଚର୍ଯ୍ୟ ଦ୍ୱାରା ( ଅଧ୍ୟୟନମ୍ ) ସାଙ୍ଗୋପାଙ୍ଗ ବେଦାଦି ଶାସ୍ତ୍ରମାନଙ୍କୁ ଯଥାବତ୍ ପଢିବା, ( ଇଜ୍ୟା ) ଅଗ୍ନି-ହୋତ୍ରାଦି ଯଜ୍ଞକୁ କରିବା ( ଦାନମ୍ ) ସତ୍‌ପାତ୍ରରେ ବିଦ୍ୟା, ସୁବର୍ଣ୍ଣଆଦି ଦାନକରିବା ଏବଂ ପ୍ରଜାମାନଙ୍କୁ ଅଭୟଦାନ କରିବା, ( ପ୍ରଜାନାମ୍ ରକ୍ଷଣମ୍ ) ପ୍ରଜାମାନଙ୍କୁ ସମସ୍ତ ପ୍ରକାର

ସର୍ବଦା ଯଥାବତ୍ ପାଳନ କରିବା, ଏହି ଧର୍ମ କ୍ଷତ୍ରିୟ ମାନଙ୍କର ଧର୍ମ ଲକ୍ଷଣରେ ଏବଂ ଶସ୍ତ୍ରବିଦ୍ୟା ପଢ଼ାଇବା, ନ୍ୟାୟଘର ଏବଂ ସୈନ୍ୟ ବିଭାଗରେ ଜୀବିକା କରିବା କ୍ଷତ୍ରିୟ ମାନଙ୍କର ଜୀବିକା ଅଟେ । ( ବିଷୟେଷ୍ୱପ୍ରସକ୍ତିଃ ) ବିଷୟ-ବାସନାରେ ସର୍ବଦା 'ଅନାସକ୍ତରହି ଜିତେନ୍ଦ୍ରିୟ ରହିବା, ଲୋଭ, ବ୍ୟଭିଚାର, ମଦ୍ୟପାନାଦି ନିଶା ଓ ଦୁର୍ବ୍ୟସନଠାରୁ ପୃଥକ୍ ରହି ବିନୟ ସୁଶୀଳତାଦି ଶୁଭ କର୍ମରେ ସର୍ବଦା ପ୍ରବୃତ୍ତ ରହିବା କ୍ଷାତ୍ରଧର୍ମ ଅଟେ ॥୨॥

( ଶୌର୍ଯ୍ୟମ୍ ) ଶସ୍ତ୍ର, ସଂଗ୍ରାମ, ମୃତ୍ୟୁ ଏବଂ ଶସ୍ତ୍ର-ପ୍ରହାରାଦିରେ ଭୟ ନକରିବା, ( ତେଜଃ ) ପ୍ରଗଲ୍ଭତା, ଉତ୍ତମ ପ୍ରତାପଯୁକ୍ତ ହୋଇ କାହାର ଆଗରେ ଦୀନ ବା ଭୀରୁ ନହେବା, ( ଧୃତିଃ ) ଯେତେବଡ ବିପତ୍ତି ଦୁଃଖ, କ୍ଲେଶ ଆସିଲେ ମଧ୍ୟ ଧୈର୍ଯ୍ୟ ରଖିବା, ( ଦାକ୍ଷ୍ୟମ୍ ) ସଂଗ୍ରାମ, ବାକ୍‌ଯୁଦ୍ଧ, ଦୂତତ୍ୱ, ନ୍ୟାୟ, ବିଚାରଆଦି ପ୍ରତ୍ୟେକ କ୍ଷେତ୍ରରେ ଅତି ଚତୁର ବୁଦ୍ଧିମାନ୍ ହେବା, ( ଯୁଦ୍ଧେ ଚାପ୍ୟପଳାୟନମ୍ ) ଯୁଦ୍ଧରେ ସର୍ବଦା ଉଦ୍ୟତରହିବା, ଯୁଦ୍ଧରେ ଦୃଢବୁଦ୍ଧି ହୋଇ ( ଅପ୍ରଦାନଶଃ ) କଦାପି ଶତ୍ରୁର ବଶତା ସ୍ୱୀକାର ନକରିବା, ( ଦାନମ୍ ) ( ଏହାର ଅର୍ଥ ପ୍ରଥମ ଶ୍ଳୋକରେ ରହିଛି ) ( ଈଶ୍ୱରଭାବଃ ) ଯେପରି ପରମେଶ୍ୱର ସମସ୍ତଙ୍କ

ଉପରେ ଦୟାକରି ପିତାପରି ପାଳନ କରନ୍ତୁ, ପକ୍ଷପାତ ଛାଡ଼ି ଧର୍ମ-ଅଧର୍ମ ଆଚରଣକାରୀଙ୍କୁ ଯଥାଯୋଗ୍ୟ ସୁଖ ଦୁଃଖ ଫଳ-ଦିଅନ୍ତୁ, ନିଜର ବୁଦ୍ଧି ଆଦି ସାଧନ ଦ୍ୱାରା ସମସ୍ତଙ୍କର ଅନ୍ତର୍ଯ୍ୟାମୀ ହୋଇ ସେ ଭଲ ଓ ମନ୍ଦ କର୍ମକୁ ଯଥାରୂପ ଦର୍ଶନ କରନ୍ତୁ, ସେହିପରି ପ୍ରଜାମାନଙ୍କ ସହିତ ବ୍ୟବହାର କରି, ଗୁପ୍ତଦୂତ ପ୍ରଭୃତି ଦ୍ୱାରା ନିଜେ ସକଳ ରାଜାଜନ ଅମ୍ଳା ରାଜପୁରୁଷମାନଙ୍କର ଭଲମନ୍ଦ କର୍ମ ବିଷୟରେ ଜ୍ଞାନ ରଖିବା ଦିନରାତି ନ୍ୟାୟାଚରଣ କରିବା ତଥା ପ୍ରଜାମାନଙ୍କୁ ଯଥାବତ୍ ସୁଖଦେବା, ଶ୍ରେଷ୍ଠଲୋକମାନଙ୍କୁ ମାନ୍ୟ ଏବଂ ଦୁଷ୍ଟ ମାନଙ୍କୁ ଦଣ୍ଡଦାନରେ ସଦା ପ୍ରବୃତ୍ତ ରହିବା ଏବଂ ସର୍ବପ୍ରକାରେ ନିଜର ଶରୀରକୁ ରୋଗରହିତ, ବଳିଷ୍ଠ, ଦୃଢ଼, ତେଜସ୍ୱୀ ଏବଂ ଦୀର୍ଘାୟୁ ରଖି ଆତ୍ମାକୁ ନ୍ୟାୟଧର୍ମରେ ଚଳାଇ କୃତକୃତ୍ୟ କରିବା ପ୍ରଭୃତିଗୁଣ କର୍ମମାନଙ୍କର ସଂଯୋଗ ଯେଉଁ ବ୍ୟକ୍ତି-ଠାରେ ଥିବ, ସେ କ୍ଷତ୍ରିୟ ଏବଂ କ୍ଷତ୍ରିୟା ହେବେ। ସେମାନଙ୍କର ଏହିସବୁ ଗୁଣ କର୍ମ ପରୀକ୍ଷାକରି (ମିଳାଇ) ବିବାହ କରାଯିବ ଏବଂ ଯେପରି ବ୍ରାହ୍ମଣ ପୁରୁଷ ତଥା ବ୍ରାହ୍ମଣୀ ସ୍ତ୍ରୀ ଅଧ୍ୟାପନା କାର୍ଯ୍ୟ କରିବେ, ଠିକ୍ ସେହିପରି ରାଜା, ପୁରୁଷମାନଙ୍କର ଏବଂ ରାଣୀ, ସ୍ତ୍ରୀଲୋକମାନଙ୍କର ନ୍ୟାୟ ତଥା ଉନ୍ନତି ନିମନ୍ତେ ସର୍ବଦା କାର୍ଯ୍ୟକରିବେ। ଯେଉଁ କ୍ଷତ୍ରିୟମାନେ ରାଜାକୁହନ୍ତି ସେମାନେ ମଧ୍ୟ ରାଜକାର୍ଯ୍ୟରେ ଯଥାଯୁକ୍ତ ଗୃହକର୍ମ କରିବେ ॥୨॥



## ଅଥ ବୈଶ୍ୟସ୍ୱରୂପଲକ୍ଷଣମ୍

ପଶୂନାଂ ରକ୍ଷଣଂ ଦାନମିଜ୍ୟାଧ୍ୟୟନ ମେବ ଚ ।
ବଣିକ୍ପଥଂ କୁସୀଦଂ ଚ ବୈଶ୍ୟସ୍ୟ କୃଷିମେବ ଚ
ମନୁ.[ ୧ । ୭୦ ] ॥ ୧ ॥

ଅର୍ଥ: – ( ଅଧ୍ୟୟନମ୍ ) ବେଦାଦି ଶାସ୍ତ୍ର ପାଠକରିବା, ( ଇଜ୍ୟା ) ଅଗ୍ନିହୋତ୍ରାଦି ଯଜ୍ଞ କରିବା, ( ଦାନମ୍ ) ଅନ୍ନାଦି ଦାନକରିବା, ଏହି ତିନୋଟି ଧର୍ମର* ଲକ୍ଷଣ ଏବଂ ( ପଶୂନାଂ ରକ୍ଷଣମ୍ ) ଗାଈ ପ୍ରଭୃତି ପଶୁଙ୍କୁ ରକ୍ଷଣା-ବେକ୍ଷଣ କରିବା. ସେମାନଙ୍କଠାରୁ ଦୁଗ୍ଧ ନେଇ ବଢାଇବ କରିବା, ( ବଣିକପଥମ୍ ) ନାନା ଦେଶର ଭାଷା, ହିସାବ, ଭୂଗର୍ଭବିଦ୍ୟା, ଭୂମି, ବୀଜଆଦିର ଗୁଣ ଜାଣିବା ଏବଂ ସମସ୍ତ ପଦାର୍ଥର ଭାବ-ଅଭାବ ବୁଝିପାରିବା, ( କୁସୀଦମ୍ ) ବ୍ୟାଜ ଅର୍ଥାତ୍ ନ୍ୟାୟସଙ୍ଗତଭାବରେ ସୁଧନେବା†

* ବୈଶ୍ୟଧର୍ମର ( ସମ୍ପାଦକ )

† ଶତକଡା ଏକଟଙ୍କା ଚାରିଅଣାରୁ ଅଧିକ କିମ୍ବା ୪ ଅଣାରୁ କମ୍ ସୁଧ କଦାପି ଦେବେନାହିଁ କିମ୍ବା ଗ୍ରହଣ କରିବେ ନାହିଁ । ଯେତେବେଳେ ମୂଳ ଯେତିକି ( ସେତିକି ) ସୁଧ ମିଳିଯିବ ( ଦୁଇଗୁଣ ହୋଇଯିବ ) ତାପରେ ଏକ ପଇସା ମଧ୍ୟ ଅଧିକ ନେବେ ନାହିଁ ନା ଦେବେନାହିଁ । ଯେତେ କମ୍ ସୁଧ ନେବେ ସେତେ ତାଙ୍କ ଧନର ବୃଦ୍ଧି ହେବ ଏବଂ ତାହାର ଧନ ନଷ୍ଟହେବ ନାହିଁ କିମ୍ବା ତାହାର କୁଳରେ କୁସନ୍ତାନ ଜନ୍ମ ହେବେନାହିଁ । ( ଦ: ସ: )

( କୃଷିମେବଚ ) କ୍ଷେତବିଦ୍ୟା ବା କୃଷିବିଦ୍ୟା ଜାଣିବା, ଅନ୍ନ ଆଦି ରକ୍ଷା, କ୍ଷେତ ଏବଂ ଭୂମି ପରୀକ୍ଷା, ହଳଯୋଚିବା, ବୀଜ ବୁଣିବା ପ୍ରଭୃତି କର୍ମ ଜାଣିବା, ଏହି ଗୁରିକର୍ମ ବୈଶ୍ୟର ଜୀବିକା ଅଟେ । ଏହିପ୍ରକାର ଗୁଣ କର୍ମ ଯାହାଠାରେ ଥିବ ସେମାନେ ବୈଶ୍ୟ ଓ ବୈଶ୍ୟା ଅଟନ୍ତି ଏବଂ ସେମାନଙ୍କର ପରସ୍ପରର ପରୀକ୍ଷା ଓ ମେଳରେ ବିବାହ କରିଯିବା ଉଚିତ ॥୧॥

## ଅଥ ଶୂଦ୍ରସ୍ୱରୂପଲକ୍ଷଣମ୍

ଏକ ମେବ ତୁ ଶୂଦ୍ରସ୍ୟ ପ୍ରଭୁଃ କର୍ମ ସମାଦିଶତ୍ ।
ଏତେଷାମେବ ବର୍ଣ୍ଣାନାଂ ଶୁଶ୍ରୂଷାମନସୂୟୟା ॥୧॥
ମନୁ. ( ୧।୯୧ )

ଅର୍ଥ:—( ପ୍ରଭୁଃ ) ପରମେଶ୍ୱର ( ଶୂଦ୍ରସ୍ୟ ) ଯେ ବିଦ୍ୟାହୀନ, ଯେ ପଢ଼ିଲେ ମଧ୍ୟ ଯାହାର ବିଦ୍ୟା ହୁଏନାହିଁ, ଶରୀର ଦୃଷ୍ଟିରୁ ହୃଷ୍ଟପୁଷ୍ଟ, ସେବାରେ କୁଶଳ ହୋଇଥିବ, ସେହି ଶୂଦ୍ର ନିମନ୍ତେ ( ଏତେଷାମେବ ବର୍ଣ୍ଣାନାମ୍ ) ଏହି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ବର୍ଣ୍ଣତ୍ରୟର ( ଅନସୂୟୟା ) ନିନ୍ଦାରହିତ ପ୍ରୀତିଯୁକ୍ତ ସେବା, ( ଏକମେବ କର୍ମ ) ଏହି ଏକମାତ୍ର କର୍ମ କରିବା ନିମନ୍ତେ ( ସମାଦିଶତ୍ ) ଆଜ୍ଞା ଦେଇଛନ୍ତି । ଯେ ମୂର୍ଖତ୍ୱ ପ୍ରଭୃତି ଗୁଣ ଏବଂ ସେବାଆଦି କର୍ମଯୁକ୍ତ ଅଟେ, ତାହାକୁ ଶୂଦ୍ର ବା ଶୂଦ୍ରା କୁହାଯାଏ । ସେମାନଙ୍କ ପରୀକ୍ଷା

ପୂର୍ବକ ସମଗ୍ରୁଣରେ ଉପାଧି ଦିଆଯିବା ଉଚିତ ଏବଂ ସେମାନଙ୍କର କର୍ମ ବ୍ୟବହାର ମଧ୍ୟ ଶୂଦ୍ରୋଚିତ ହେବା ଦରକାର ।

ଯଦି ଏହିପରି ଗୁଣ କର୍ମ ଯୋଗରେ ବର୍ଣ୍ଣବ୍ୟବସ୍ଥା ହେବ, ତେବେ ସେହିକୁଳ, ଦେଶ ଏବଂ ମନୁଷ୍ୟ ସମୁଦାୟର ବିଶେଷ ଉନ୍ନତି ସମ୍ଭବ ହେବ ଏବଂ ଯେଉଁମାନଙ୍କର ଜନ୍ମ ଯେଉଁ- ବର୍ଣ୍ଣରେ ହୋଇଥିବ, ଯଦି ସେମାନଙ୍କର ଗୁଣ, କର୍ମ ଓ ସ୍ୱଭାବ ତଦନୁରୂପ ହେବ ତେବେ ତାହା ଅତ୍ୟୁତ୍ତମ ହେବ ॥୧॥

ବର୍ତ୍ତମାନ୍ ବ୍ରାହ୍ମଣାଦି ସମସ୍ତ ବର୍ଣ୍ଣ ନିଜନିଜର କାମରେ ନିମ୍ନଲିଖିତ ନିୟମ ପ୍ରକାରେ ବ୍ୟବହାର କରିବେ :—

ବେଦୋଦିତଂ ସ୍ୱକଂ କର୍ମ ନିତ୍ୟଂ କୁର୍ଯ୍ୟାଦତନ୍ଦ୍ରିତଃ ।
ତଦ୍ଧି କୁର୍ବନ୍ ଯଥାଶକ୍ତି ପ୍ରାପ୍ନୋତି ପରମାଂ ଗତିମ୍
॥ ୧ ॥

ନେହେତାର୍ଥାନ୍ ପ୍ରସଂଗେନ ନ ବିରୁଦ୍ଧେନକର୍ମଣା ।
ନ ବିଦ୍ୟମାନେ ଷ୍ୱର୍ଥେଷୁ ନାର୍ତ୍ତ୍ୟାମପି ଯତସ୍ତତଃ ॥୨॥
(ମନୁ· ଅ. ୪ । ଶ୍ଳୋ·୧୪,୧୫)

ଅର୍ଥ·— ବ୍ରାହ୍ମଣାଦି ଦ୍ୱିଜ ଆଳସ୍ୟ ତ୍ୟାଗକରି ନିଜ ନିଜର ବେଦୋକ୍ତ କର୍ମ ନିତ୍ୟପ୍ରତି ଆଚରଣ କରିବେ । ନିଜର ସାମର୍ଥ୍ୟାନୁସାରେ ଏହି କର୍ମାଚରଣ କରି ମୁକ୍ତି ପର୍ଯ୍ୟନ୍ତ ପଦାର୍ଥ ମାନଙ୍କୁ ପ୍ରାପ୍ତ ହେବେ । ॥ ୧ ॥

ଗୃହସ୍ଥ କଦାପି କୌଣସି ଦୂଷିତ ଉପାୟରେ କମ୍ବା ବିରୁଦ୍ଧ କର୍ମ କରି ଦ୍ରବ୍ୟ ସଂଚୟ କରିବେନାହିଁ କମ୍ବା ପଦାର୍ଥ ଥିବା ବେଳେ ତାହା ଗୁପ୍ତରଖି ଅନ୍ୟମାନଙ୍କୁ ନଥିବାର ଛଳନା କରିବ। ଏବଂ ଯେତେ ଦୁଃଖ ପଡିଲେ ମଧ୍ୟ ଅଧର୍ମରେ କଦାପି ଦ୍ରବ୍ୟ ସଂଚୟ କରିବେ ନାହିଁ । ॥ ୨ ॥

ଇନ୍ଦ୍ରିୟାର୍ଥେଷୁ ସର୍ବେଷୁ ନ ପ୍ରସଜ୍ୟେତ କାମତଃ ।
ଅତିପ୍ରସକ୍ତିଂ ଚୈତେଷାଂ ମନସା ସନ୍ନିବର୍ତ୍ତୟେତ୍ ॥
॥୩॥

ସର୍ବାନ୍ ପରିତ୍ୟଜେଦର୍ଥାନ୍ ସ୍ୱାଧ୍ୟାୟସ୍ୟ ବିରୋଧିନଃ ।
ଯଥା ତଥାଽଧ୍ୟାପୟଂସ୍ତୁ ସା ହ୍ୟସ୍ୟ କୃତକୃତ୍ୟତା ॥୪॥
( ମନୁ· ଅ. ୪ । ଶ୍ଳୋ ୧୬, ୧୭ )

ଅର୍ଥ:—ଇନ୍ଦ୍ରିୟମାନଙ୍କର ବିଷୟଗତ କର୍ମରେ କଦାପି ପଶିବନାହିଁ ଏବଂ ବିଷୟରେ ଅତି ପ୍ରସକ୍ତି ଏବଂ ମଗ୍ନଭାବକୁ ଭଲଭାବରେ ମନଠାରୁ ଦୂରରେ ରଖିବ । ॥ ୩ ॥

ଯାହା ସ୍ୱାଧ୍ୟାୟ ଏବଂ ଧର୍ମବିରୋଧି ବ୍ୟବହାର ବା ପଦାର୍ଥ ରହିଛି, ସେ ସମସ୍ତ ପରିତ୍ୟାଗ କରିବ । ଯେ କୌଣସି ପ୍ରକାରେ ବିଦ୍ୟା ପଢାଇବାରେ ମଗ୍ନ ରହିବା ହିଁ ଗୃହସ୍ଥର କୃତକୃତ୍ୟ ହେବାକୁ ବୁଝାଏ । ॥ ୪ ॥

ବୁଦ୍ଧିବୃଦ୍ଧିକରଣ୍ୟାଶୁ ଧନ୍ୟାନି ଚ ହିତାନି ଚ ।
ନିତ୍ୟଂ ଶାସ୍ତ୍ରାଣ୍ୟବେକ୍ଷେତ ନିଗମାଂଶ୍ଚୈବ ବୈଦି-
କାନ୍ ॥ ୫ ॥

ଯଥା ଯଥା ହି ପୁରୁଷଃ ଶାସ୍ତ୍ରଂ ସମଧିଗଚ୍ଛତି ।
ତଥା ତଥା ବିଜାନାତି ବିଜ୍ଞାନଂ ଚାସ୍ୟ ରୋଚତେ ।
॥ ୬ ॥

ନ ସଂବସେଚ୍ଚ ପତିତୈର୍ନ ଚାଣ୍ଡାଳୈର୍ନ ପୁଲ୍କଶୈଃ ।
ନ ମୂର୍ଖୈର୍ନାଵଲିପ୍ତୈଶ୍ଚ ନାନ୍ତ୍ୟୈର୍ନାନ୍ତ୍ୟାବସାୟିଭିଃ ॥୭॥

ନାତ୍ମାନମବମନ୍ୟେତ ପୂର୍ବାଭିରସମୃଦ୍ଧିଭିଃ ।
ଆମୃତ୍ୟୋଃ ଶ୍ରିୟମନ୍ୱିଚ୍ଛେନ୍ନୈନାଂ ମନ୍ୟେତ
ଦୁର୍ଲଭାମ୍ ॥୮॥

ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାନ୍ନ ବ୍ରୂୟାତ୍ ସତ୍ୟମ-
ପ୍ରିୟମ୍ । ପ୍ରିୟଂ ଚ ନାନୃତଂ ବ୍ରୂୟାଦେଷ ଧର୍ମଃ
ସନାତନଃ ॥୯॥

( ମନୁ. ଅ. ୪। ଶ୍ଳୋକ. ୧୯, ୨୦, ୭୯, ୧୩୭, ୧୩୮ )

**ଅର୍ଥ:**–ହେ ସ୍ତ୍ରୀ ପୁରୁଷ ! ତୁମ୍ଭେମାନେ ଧର୍ମ, ଧନ ଓ ବୁଦ୍ଧିକୁ ଅତିଶୀଘ୍ର ବୃଦ୍ଧି କରୁଥିବା ହିତକାରୀ ଶାସ୍ତ୍ରକୁ ଏବଂ ବେଦର ବିଭିନ୍ନ ବିଭାଗର ବିଦ୍ୟାକୁ ନିତ୍ୟ ସେବନ କର ॥୫॥

ମନୁଷ୍ୟ କ୍ରମଶଃ ଯେତେ ଅଧିକ ଶାସ୍ତ୍ରୀୟଜ୍ଞାନ ବିଚାର କରେ ତାହାର ଯଥାର୍ଥ ସ୍ୱାଦକୁ ପ୍ରାପ୍ତହୁଏ, ସେତେ ଅଧିକ ସେ ଜାଣିପାରେ ଏବଂ ବିଜ୍ଞାନ ଦିଗରେ ତାର ଶ୍ରଦ୍ଧା ଉତ୍ତରୋତ୍ତର ବଢ଼ିଚାଲେ ॥୬॥

ସଜ୍ଜନ ଗୃହସ୍ଥଲୋକ ପତିତ, ଦୁଷ୍ଟକର୍ମୀ, ଚଣ୍ଡାଳ; ଖଳ, ଷଣ୍ଡୁଆ, ମୂର୍ଖ, ମିଥ୍ୟାଭିମାନୀ, ମନ୍ଦ ସ୍ୱଭାବ ଓ ମନ୍ଦ ସଂକଳ୍ପ-ଯୁକ୍ତ ଲୋକମାନଙ୍କ ସହିତ କଦାପି ବାସକରିବା ଉଚିତ ନୁହେଁ ॥୭॥

ଗୃହସ୍ଥଲୋକ ଯଦି କେବେ ପ୍ରଥମେ ବିଶେଷ ଧନୀ ଥାଇ ପରେ ଧନହୀନ ହୋଇଯିବେ, ତେବେ ସେଥିପାଇଁ ନିଜ ଆତ୍ମାର ଅବମାନନା କରିବେନାହିଁ କିମ୍ବା ହାୟ— ମୁଁ ଦରିଦ୍ର ହୋଇଗଲି; ଇତ୍ୟାଦି ବିଳାପ କରିବେ ନାହିଁ। କିନ୍ତୁ ମୃତ୍ୟୁପର୍ଯ୍ୟନ୍ତ ଲକ୍ଷ୍ମୀ ବା ଧନର ଉନ୍ନତି ନିମନ୍ତେ ପୁରୁଷାର୍ଥ କରିବେ ଏବଂ ଲକ୍ଷ୍ମୀ ଦୁର୍ଲଭ ବୋଲି କେବେ ମଧ୍ୟ ଭାବିବେ ନାହିଁ ॥୮॥

ମନୁଷ୍ୟ ସର୍ବଦା ସତ୍ୟଂବଚନ କହିବା ଉଚିତ ଏବଂ ଅନ୍ୟମାନଙ୍କୁ କଲ୍ୟାଣକାରକ ଉପଦେଶ ଦେବା ତା'ର କର୍ତ୍ତବ୍ୟ। କଣାକୁ କଣା କିମ୍ବା ମୂର୍ଖକୁ ମୂର୍ଖ ପ୍ରଭୃତି ଅପ୍ରିୟ କଥା କଦାପି ସେମାନଙ୍କ ଆଗରେ କହିବା ଠିକ୍ ନୁହେଁ। ଯେପରି ମିଥ୍ୟାକଥା କହିଲେ ଅନ୍ୟ କେହି ପ୍ରସନ୍ନ ହେବ, ସେପରି କଥା ବି' କହିବା ଉଚିତ ନୁହେଁ। ଏହା ସନାତନ ଧର୍ମ ଅଟେ ॥୯॥



ଅଭିବାଦୟେଦ୍ ବୃଦ୍ଧାଂଶ୍ଚ ଦଦ୍ୟାଚ୍ଚୈବାସନଂ ସ୍ୱକମ୍ ।
କୃତାଞ୍ଜଳିରୁପାସୀତ ଗଚ୍ଛତଃ ପୃଷ୍ଠତୋଽନ୍ୱିୟାତ୍ ॥୧୦॥

ଶ୍ରୁତିସ୍ମୃତ୍ୟୁଦିତଂ ସମ୍ୟଙ୍ନିବଦ୍ଧଂ ସ୍ୱେଷୁ କର୍ମସୁ ।
ଧର୍ମମୂଳଂ ନିଷେବେତ ସଦାଚାରମତନ୍ଦ୍ରିତଃ ॥୧୧॥

ଆଚାରାଲ୍ଲଭତେ ହ୍ୟାୟୁରାଚାରାଦୀପ୍ସିତାଃ ପ୍ରଜାଃ ।
ଆଚାରାଦ୍ଧନମକ୍ଷୟ୍ୟମାଚାରୋ ହନ୍ତ୍ୟଲକ୍ଷଣମ ॥୧୨॥

ଦୁରାଚାରୋ ହି ପୁରୁଷୋ ଲୋକେଭବତି ନିନ୍ଦିତଃ ।
ଦୁଃଖଭାଗୀ ଚ ସତତଂ ବ୍ୟାଧିତୋଽଲ୍ପାୟୁରେବ ଚ
॥୧୩॥

ସର୍ବଲକ୍ଷଣହୀନୋଽପି ଯଃ ସଦାଚାରବାନ୍ନରଃ ।
ଶ୍ରଦ୍ଦଧାନୋଽନସୂୟଶ୍ଚ ଶତଂ ବର୍ଷାଣି ଜୀବତି ॥୧୪॥
( ମନୁ. ୪ । ୧୫୪-୧୫୮ )

ଅର୍ଥ: – ସର୍ବଦା ବିଦ୍ୟାବୃଦ୍ଧ ଏବଂ ବୟୋବୃଦ୍ଧଙ୍କୁ ନମସ୍ତେ ଅର୍ଥାତ୍ ସେମାନଙ୍କୁ ମାନ୍ୟ କରିବେ । ଯେତେବେଳେ ସେମାନେ ନିଜର ନିକଟକୁ ଆସିବେ ସେତେବେଳେ ଉଠି ସମ୍ମାନ ପୂର୍ବକ

ଆଦରରେ ପାଖେଡ଼ିନେଇ ନିଜର ଆସନରେ ବସାଇବ ଏବଂ ନିଜେ ହାତଯୋଡ଼ି ତାଙ୍କ ନିକଟରେ ବସି, ପ୍ରଶ୍ନୋତ୍ତର ଆଦି କରିବ । ଯେତେବେଳେ ସେ ଫେରିବେ ସେତେବେଳେ ତାଙ୍କ ପଛେ ପଛେ କିଛିବାଟଯାଇ ନମସ୍ତେ କରି ବିଦାୟ ଦେବେ । ବିଦ୍ୱାନ୍ ଓ ବୃଦ୍ଧବ୍ୟକ୍ତିଗଣ ମଧ୍ୟ ଅନେଥା ବାରମ୍ବାର ଯେଉଁଠି ଇଚ୍ଛା ସେଠାକୁ ଯିବା ଉଚିତ ନୁହେଁ ।।୧୦।।

ଗୃହସ୍ଥଲୋକ ସର୍ବଦା ଆଳସ୍ୟ ତ୍ୟାଗକରି ବେଦ ଏବଂ ମନୁସ୍ମୃତିରେ ବେଦାନୁକୂଳ କୁହାଯାଇଥିବା ନିଜର କର୍ମରେ ନିବଦ୍ଧ ଏବଂ ଯାହା ଧର୍ମର ମୂଳ ସଦାଚାର ଅର୍ଥାତ୍ ସତ୍ୟ ଓ ସତ୍ପୁରୁଷ ଏବଂ ଆପ୍ତ ( ଋଷିକୃତ ) ଧର୍ମାତ୍ମା-ମାନଙ୍କର ଆଚରଣ ରହିଛି, ସର୍ବଦା ତାହାକୁ ସେବନ କରିବେ ।।୧୧।।

ଧର୍ମାଚରଣ ଦ୍ୱାରାହିଁ ଦୀର୍ଘାୟୁ, ଉତ୍ତମ ପ୍ରଜା ଏବଂ ଅକ୍ଷୟ ଧନ ମନୁଷ୍ୟ ପ୍ରାପ୍ତହୁଏ ଏବଂ ଧର୍ମାଚରଣ ଅଧର୍ମଯୁକ୍ତ କଦର୍ଯ୍ୟ ଲକ୍ଷଣଗୁଡ଼ିକୁ ନଷ୍ଟ କରିଦିଏ ।।୧୨।।

ଦୁଷ୍ଟାଚାରୀ ପୁରୁଷ ସର୍ବତ୍ର ନିନ୍ଦିତ, ଦୁଃଖଭାଗୀ ଏବଂ ବ୍ୟାଧିଯୁକ୍ତ ହୋଇ ସବୁବେଳେ ଅଳ୍ପାୟୁ ହୋଇଯାଏ ।।୧୩।।

ଯେଉଁ ମନୁଷ୍ୟ ଅନ୍ୟାନ୍ୟ ଶୁଭଲକ୍ଷଣରହିତ ଥାଇ ସୁଦ୍ଧା ସଦାଚାରଯୁକ୍ତ, ସତ୍ୟପ୍ରତିସମ୍ପନ୍ନ ଏବଂ ନିନ୍ଦାକଥନାଦି ଦୋଷରହିତ ହୋଇଥାଏ, ସେ ସୁଖରେ ଏକଶହ ବର୍ଷ ପର୍ଯ୍ୟନ୍ତ ବଞ୍ଚିରହେ ।।୧୪।।

ଯଦ୍ୟତ୍ ପରବଶଂ କର୍ମ ତତ୍ତଦ୍‌ଯତ୍ନେନ ବର୍ଜୟେତ୍ ।
ଯଦ୍ୟଦାତ୍ମବଶଂ ତୁ ସ୍ୟାତ୍ତତ୍ତତ୍‌ସେବେତ ଯତ୍ନତଃ
॥୧୫॥

ସର୍ବଂ ପରବଶଂ ଦୁଃଖଂ ସର୍ବମାତ୍ମବଶଂ ସୁଖମ୍ ।
ଏତଦ୍ୱିଦ୍ୟାତ୍‌ସମାସେନ ଲକ୍ଷଣଂ ସୁଖଦୁଃଖୟୋଃ
॥୧୬॥

ଅଧାର୍ମିକୋ ନରୋ ଯୋ ହି ଯସ୍ୟ ଚାପ୍ୟନୃତଂ ଧନମ୍ ।
ହିଂସାରତଶ୍ଚ ଯୋ ନିତ୍ୟଂ ନେହାସୌ ସୁଖମେଧତେ
( ମନୁ· ଅ. ୪ । ଶ୍ଳୋ. ୧୫୯, ୧୬୦, ୧୭୦ ) ॥୧୭॥

**ଅର୍ଥ:**— ଯାହାକରୁ ପରାଧୀନ କର୍ମ ମନୁଷ୍ୟ ନେଉର ସବୁତ ତାହା ପରିତ୍ୟାଗ କରିବା ଉଚିତ ଏବଂ ଯାହାକରୁ ସ୍ୱାଧୀନ କର୍ମ ତାହା ସେବନ କରିବା ଉଚିତ ॥୧୫॥

କାରଣ ମନୁଷ୍ୟ ଯେତେ ବେଶୀ ପରାଧୀନ ରହିବ, ସେତେ ବେଶୀ ଦୁଃଖ ଭୋଗକରିବ ଏବଂ ଯେତେ ସ୍ୱାଧୀନ ରହିବ ସେତେବେଶୀ ସୁଖଭୋଗୀ ହେବ । ଏହାହିଁ ସଂକ୍ଷେପରେ ସୁଖ ଓ ଦୁଃଖର ଲକ୍ଷଣ ॥୧୬॥

ଯେ ଅଧାର୍ମିକ ମନୁଷ୍ୟ ଅର୍ଥାତ୍ ଯେଉଁ ମନୁଷ୍ୟ ଅଧର୍ମରେ ଧନ ସଂଚୟକରେ ଏବଂ ଯେ ସର୍ବଦା ହିଂସା ବା ଶତ୍ରୁତାରେ ବ୍ୟାପୃତ ରହେ, ସେ ଏହି ସଂସାରେ ଏବଂ ପରଲୋକରେ ଅର୍ଥାତ୍ ପରଜନ୍ମରେ କଦାପି ସୁଖଲାଭ କରିପାରେ ନାହିଁ ॥୧୭॥

ନାଧର୍ମଶ୍ଚରିତୋ ଲୋକେ ସଦ୍ୟଃ ଫଳତି ଗୌରିବ ।
ଶନୈରାବର୍ତ୍ତମାନସ୍ତୁ କର୍ତ୍ତୁର୍ମୂଲାନି କୃନ୍ତତି ॥୧୮॥
ଯଦି ନାତ୍ମନି ପୁତ୍ରେଷୁ ନ ଚେତ୍ ପୁତ୍ରେଷୁ ନପ୍ତୃଷୁ ।
ନ ତ୍ୱେବନ୍ତୁ କୃତୋଽଧର୍ମଃ କର୍ତ୍ତୁର୍ଭବତି ନିଷ୍ଫଳଃ ॥୧୯॥
ସତ୍ୟ ଧର୍ମାର୍ଯ୍ୟବୃତ୍ତେଷୁ ଶୌଚେ ଚୈବାରମେତ୍ ସଦା ।
ଶିଷ୍ୟାଂଶ୍ଚ ଶିଷ୍ୟାଦ୍ଧର୍ମେଣ ବାଗ୍ବାହୂଦର ସଂଯତଃ
( ମନୁ. ଅ. ୪। ଶ୍ଳୋ. ୧୭୨, ୧୭୩, ୧୭୫ ) ॥୨୦॥

ଅର୍ଥ:—ମନୁଷ୍ୟ ନିଶ୍ଚିତରୂପେ ଜାଣିରଖିବା ଉଚିତ ଯେ ଏହି ସଂସାରରେ ଯେପରି ଗାଈର ସେବାଜନିତ ଦୁଗ୍ଧାଦି-ରୂପକ ସୁଫଳ ଶୀଘ୍ର ପ୍ରାପ୍ତ ହୁଏନାହିଁ, ଠିକ୍ ସେହିପରି ଯେଉଁ ଅଧର୍ମ ଆଚରଣ କରାଯାଏ, ତାହାର ଫଳ ଶୀଘ୍ର ପ୍ରାପ୍ତହୁଏ ନାହିଁ । କିନ୍ତୁ ଧୀରେ ଧୀରେ ଅଧର୍ମ କର୍ମକର୍ତ୍ତାର ସମସ୍ତ ସୁଖକୁ କ୍ରମଶଃ ମୂଳଚ୍ୟୁତ କରେ । ପରେ ଅଧର୍ମୀ ଲୋକ କେବଳ ଦୁଃଖ ହିଁ ଭୋଗକରେ ॥୧୮॥

ଯଦି ଅଧର୍ମର ଫଳ କର୍ତ୍ତା ତା'ର ଜୀବନକାଳ ମଧ୍ୟରେ ନପାଇବ, ତେବେ ତା'ର ପୁତ୍ର ଏବଂ ପୌତ୍ର ସମୟରେ ନହେଲେ ନାତି ସମୟରେ ଅବଶ୍ୟ ମିଳଥାଏ । କିନ୍ତୁ କର୍ତ୍ତାର କୃତକର୍ମ କଦାପି ନିଷ୍ଫଳ ହୁଏନାହିଁ ॥୧୯॥

ତେଣୁ ମନୁଷ୍ୟଗଣ ସତ୍ୟଧର୍ମ ଅର୍ଥାତ୍ ଆର୍ଯ୍ୟ ବା ଉତ୍ତମ ପୁରୁଷଙ୍କର ଆଚରଣ ତଥା ଭିତର ଓ ବାହାର ଉଭୟ ପବିତ୍ରରଖି ଜୀବନଯାପନ କରିବେ । ନିଜର ବାଣୀ, ବାହୁ ଏବଂ ଉଦରକୁ ନିୟମ ଏବଂ ସତ୍ୟଧର୍ମ ସହିତ ସଂଯୁକ୍ତ ରଖି ଶିଷ୍ୟମାନଙ୍କୁ ସର୍ବଦା ଶିକ୍ଷାଦାନ କରିବେ ॥୨୦॥

ପରିତ୍ୟଜେଦର୍ଥକାମୌ ଯୌ ସ୍ୟାତାଂ ଧର୍ମବ-
ର୍ଜିତୌ ।
ଧର୍ମଂଚାପ୍ୟସୁଖୋଦର୍କଂ ଲୋକବିକ୍ରୁଷ୍ଟମେବ ଚ
॥ ୨୧ ॥

ଧର୍ମଂ ଶନୈଃସଂଚିନୁୟାଦ୍ବଲ୍ମୀକମିବ ପୁତ୍ତିକାଃ ।
ପରଲୋକ ସହାୟାର୍ଥଂ ସର୍ବଭୂତାନ୍ୟପୀଡୟନ୍ ।
॥ ୨୨ ॥

ଉତ୍ତମୈରୁତ୍ତମୈର୍ନିତ୍ୟଂ ସଂବନ୍ଧାନାଚରେତ୍ ସହ ।
ନିନୀଷୁଃ କୁଲମୁତ୍କର୍ଷମଧମାନଧମାଂସ୍ତ୍ୟଜେତ୍ ।
॥ ୨୩ ॥

ବାଚ୍ୟର୍ଥା ନିୟତାଃ ସର୍ବେ ବାଙ୍ମୂଳା ବାଗ୍ବି-
ନିଃସୃତାଃ ।
ତାନ୍ତୁ ଯଃ ସ୍ତେନୟେଦ୍ବାଚଂ ସ ସର୍ବସ୍ତେୟ-
କୃନ୍ନରଃ ॥ ୨୪ ॥

( ମନୁ. ଅ. ୪ । ଶ୍ଳୋ ୧୭୬, ୨୩୮, ୨୪୪, ୨୫୬ )



ସ୍ୱାଧ୍ୟାୟେନ ଜପୈର୍ହୋମୈ ସ୍ତ୍ରୈବିଦ୍ୟେନେଜ୍ୟୟା ସୁତୈଃ ।
ମହାଯଜ୍ଞୈଶ୍ଚ ଯଜ୍ଞୈଶ୍ଚ ବ୍ରାହ୍ମୀୟଂ କ୍ରିୟତେ ତନୁଃ
॥ ୨୪ ॥ ) ମନୁ. ୨।୨୮

ଅର୍ଥ:—ଧର୍ମ ବର୍ଜିତ ଯେଉଁ ଧନସଂପଦ ଏବଂ କାମନା ହେଉଛି, ତାହା ଶୀଘ୍ର ତ୍ୟାଗ କରିଦିବା ଉଚିତ ଏବଂ ଯାହା ଧର୍ମାଶ୍ରିତ ଅର୍ଥ ତ୍ର ପରବର୍ତ୍ତୀ କାଳରେ ଦୁଃଖଦାୟକ କର୍ମ ହେବ ଏବଂ ଯାହା ଲୋକମାନଙ୍କୁ ନିନ୍ଦିତ କର୍ମରେ ପ୍ରବୃତ୍ତ କରାଏ, ସେ ସମସ୍ତ କର୍ମଠାରୁ ମଧ୍ୟ ଦୂରରେ ରହିବା ଉଚିତ ।।୨୧।।

ଯେପରି ଉଇ ଧୀରେ ଧୀରେ ଘର ( ହୁଙ୍କା ) ତିଆରି କରନ୍ତି, ସେହିପରି ପରଜନ୍ମରେ ସହାୟତା ମିଳିବା ସକାଶେ ମନୁଷ୍ୟ କୌଣସି ପ୍ରାଣୀକୁ କଷ୍ଟ ନଦେଇ ଧୀରେ ଧୀରେ ଧର୍ମ ସଂଚୟ କରିବା ଉଚିତ ।।୨୨।।

ଯେଉଁ ମନୁଷ୍ୟ ନିଜ କୁଳକୁ ଶ୍ରେଷ୍ଠ କରିବାକୁ ଇଚ୍ଛାକରେ ସେ ନୀଚ ଲୋକମାନଙ୍କର ସଂଗ-ସଂବଂଧ ତ୍ୟାଗକରି ଶ୍ରେଷ୍ଠ ପୁରୁଷ ମାନଙ୍କ ସହିତ ସମ୍ପର୍କ ବଢାଇବା ଉଚିତ ।।୨୩।।

ଯେଉଁ ବାଣୀଦ୍ୱାରା ସକଳ ବ୍ୟବହାର ନିଶ୍ଚିତ ହୁଏ, ଯେଉଁବାଣୀ ଲୋକ ବ୍ୟବହାରର ମୂଳ ଏବଂ ଯେଉଁ ବାଣୀ-

ଦ୍ୱାରା ସମସ୍ତ ବ୍ୟବହାର ସିଦ୍ଧ ହୁଏ, ସେଉଁମାନେ ସେହି ବାଣୀକୁ ଚୋରକରେ ଅର୍ଥାତ୍ ମିଥ୍ୟାଭାଷଣ କରେ, ସେ ସମସ୍ତ ଚୋରୀ ଆଦି ପାପ କରେବୋଲି ବୁଝାଯାଏ, ଏଣୁ ସର୍ବଦା ମିଥ୍ୟାଭାଷଣ ଛାଡ଼ି ସତ୍ୟଭାଷଣ କରିବା ଉଚିତ ।।୨୪।।

ମନୁଷ୍ୟଗଣ ବେଦାଦି ଶାସ୍ତ୍ରର ପଠନପାଠନ, ଗାୟତ୍ରୀ ପ୍ରଣବାଦିର ଅର୍ଥ ବିଚାର, ଧ୍ୟାନ, ଅଗ୍ନିହୋତ୍ରାଦି ହୋମ, କର୍ମୋପାସନା, ଜ୍ଞାନ ବିଦ୍ୟା, ପୌର୍ଣ୍ଣମାସ୍ୟାଦି ଇଷ୍ଟି, ପଞ୍ଚମହା-ଯଜ୍ଞ ଅଗ୍ନିଷ୍ଟୋମ ଆଦି, ନ୍ୟାୟରେ ରାଜ୍ୟ ପାଳନ, ସତ୍ୟୋପ-ଦେଶ ଏବଂ ଯୋଗାଭ୍ୟାସାଦି ଉତ୍ତମ କର୍ମରେ ଏହି ଶରୀରକୁ ବ୍ରାହ୍ମୀ ଅର୍ଥାତ୍ ବ୍ରହ୍ମ ସଂବନ୍ଧୀ କରିବା ଉଚିତ୍ ।।୨୫।।

## ଅଥ ସଭା ( ସ୍ୱରୂପ ଲକ୍ଷଣମ୍ )

ରାଜ୍ୟ ଶାସନରେ ବିଶେଷ ଧରଣର ବଡ ବଡ କାମ ସଭା ସାହାଯ୍ୟରେ ବିଚାର ଆଲୋଚନା କରି କରିବା ଉଚିତ । ଏ ବିଷୟରେ ପ୍ରମାଣ—

ତଂ ସଭା ଚ ସମିତିଶ୍ଚ ସେନା ଚ ।। ୧ ।।

ଅଥର୍ବ କା· ୧୫ । ସୂ. ୯ । ମ· ୨ ।।

ସଭ୍ୟ ସଭାଂ ମେ ପାହି ଯେ ଚ ସଭ୍ୟାଃ ସଭାସଦଃ ।।୨।।

ଅଥର୍ବ କା.୧୯ । ସୂ· ୫୫ । ମଂ. ୬ ।।

ତ୍ରୀଣି ରାଜାନା ବିଦଥେ ପୁରୁଣି ପରି ବିଶ୍ୱାନି ଭୂଷଥଃ ସଦାଂସି ।। ୩ ।।

ଋ. ମ· ୩ । ସୂ· ୩୮ । ମଂ· ୬ ।।

ଅର୍ଥ:—( ତମ୍ ) ସଂସାରରେ ଧର୍ମ ସହିତ ଯେଉଁ ରାଜ୍ୟ-ପାଳନାଦି କର୍ମ କରାଯାଏ, ସେ ସମସ୍ତ କର୍ମକୁ ସଭା, ସଂଗ୍ରାମ ତଥା ସେନା ସବୁମାନେ ସଂଚିତ କରିବା ଉଚିତ ।।୧।।

ହେ ( ସଭ୍ୟ ) ସଭାଯୋଗ୍ୟ ସଭାପତି ରାଜନ୍ ! (ମେ) ମୋର ( ସଭାମ୍ ) ସଭାକୁ ( ପାହି ) ତୁମେ ରକ୍ଷାକର ଏବଂ ଉନ୍ନତି କରଅ ( ଯେ ଚ ) ଏବଂ ଯେଉଁ ( ସଭ୍ୟାଃ ) ସଭାଯୋଗ୍ୟ ଧର୍ମିକ ଆପ୍ତ ( ସଭାସଦଃ ) ସଭାସଦ୍ ବିଦ୍ୱାନ୍ ଲୋକ ଅଛନ୍ତି, ସେମାନେ ମଧ୍ୟ ସଭାର ଯୋଜନା ରକ୍ଷା ଏବଂ ସେଥିରେ ସମସ୍ତଙ୍କର ଉନ୍ନତି କରନ୍ତୁ ।।୨।।

ଯେଉଁ ( ରାଜାନା ) ରାଜା ଓ ପ୍ରଜା ପ୍ରଭୃତି ଭଦ୍ର ମନୁଷ୍ୟ ମାନଙ୍କର ସଙ୍ଗଠନ ରହିଛି, ସେମାନେ ( ବିଦଥେ ) ଉତ୍ତମ ଜ୍ଞାନ ଏବଂ ଲାଭଦାୟକ ଏହି ଜଗତ୍ ଅଥବା ସଂଗ୍ରାମାଦି କାର୍ଯ୍ୟରେ ( ତ୍ରୀଣି ) ରାଜସଭା, ଓ ବିଦ୍ୟାସଭା ଅର୍ଥାତ୍ ବିଦ୍ୟାଦି ବ୍ୟବହାର ବୃଦ୍ଧି ନିମନ୍ତେ ତିନିପ୍ରକାର ( ସଦାଂସି ) ସଭା ନିଯୁକ୍ତ କରିବେ । ଏହି ସଭାମାନଙ୍କ ଦ୍ୱାରା ସଂସାରର ସମସ୍ତ ପ୍ରକାର ଉନ୍ନତି ସାଧନ କରିବେ ।।୩।।

ଅନାମ୍ନାତେଷୁ ଧର୍ମେଷୁ କଥଂ ସ୍ୟାଦିତି ଚେଦ୍-
ଭବେତ୍ ।
ଯଂ ଶିଷ୍ଟା ବ୍ରାହ୍ମଣା ବ୍ରୂୟୁସ୍ସ ଧର୍ମଃ ସ୍ୟାଦଶ-
ଙ୍କିତଃ ।।୧।।

ଧର୍ମେଣାଧିଗତୋ ଯୈସ୍ତୁ ବେଦଃ ସପରିବୃଂହଣଃ ।
ତେ ଶିଷ୍ଟା ବ୍ରାହ୍ମଣା ଜ୍ଞେୟାଃ ଶ୍ରୁତିପ୍ରତ୍ୟକ୍ଷ-
(ମନୁ. ଅ. ୧୨ । ଶ୍ଳୋ. ୧୦୮,୧୦୯) ହେତବଃ ॥୨॥

ଅର୍ଥ:—ହେ ଗୃହସ୍ଥଗଣ ! ଯେଉଁ ଧର୍ମଯୁକ୍ତ ବ୍ୟବହାର ବିଷୟ ମନୁସ୍ମୃତି ଆଦିରେ ପ୍ରତ୍ୟକ୍ଷ ଭାବରେ କୁହାଯାଇନାହିଁ, ଯଦି ସେଥିରେ ଶଙ୍କାହେବ, ତେବେ ଶିଷ୍ଟ ଆପ୍ତବିଦ୍ୱାନ୍ ତୁମକୁ ଯାହା କହିବେ, ତାହାକୁ ହିଁ ଶଙ୍କାରହିତ କର୍ତ୍ତବ୍ୟ ବୋଲି ମାନିବାକୁ ହେବ ॥୧॥

ସବୁ ମନୁଷ୍ୟକୁ ଶିଷ୍ଟ କୁହାଯାଇ ପାରିବନାହିଁ, ଯେଉଁ-ମାନେ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ଏବଂ ଧର୍ମର ସହିତ ସାଙ୍ଗୋପାଙ୍ଗ ବେଦ ଅଧ୍ୟୟନ କରିଥିବେ । ଯେଉଁମାନେ ଶ୍ରୁତିପ୍ରମାଣ ଏବଂ ପ୍ରତ୍ୟକ୍ଷାଦି ପ୍ରମାଣଦ୍ୱାରା ବିଧି ବା ନିଷେଧ କରିବାରେ ସମର୍ଥ, ଧାର୍ମିକ, ପରୋପକାରୀ ହୋଇଥିବେ, ସେମାନଙ୍କୁ ଶିଷ୍ଟ ପୁରୁଷ କୁହାଯିବ ॥୨॥

ଦଶାବରା ବା ପରିଷଦ୍ ଯଂ ଧର୍ମଂ ପରିକଳ୍ପୟେତ୍ ।
ତ୍ର୍ୟବରା ବାପି ବୃତ୍ତସ୍ଥା ତଂ ଧର୍ମଂ ନ ବିଚାଳୟେତ୍ ॥
॥ ୩ ॥

ତ୍ରୈବିଦ୍ୟୋ ହୈତୁକସ୍ତର୍କୀ ନୈରୁକ୍ତୋ ଧର୍ମ-
ପାଠକଃ ।
ତ୍ରୟଶ୍ଚାଶ୍ରମିଣଃ ପୂର୍ବେ ପରିଷତ୍ସ୍ୟାଦ୍ଦଶାବରା ॥୪॥

ଋଗ୍ୱେଦବିଦ୍ୟଜୁର୍ବିଚ୍ଚ ସାମବେଦବିଦେବ ଚ ।
ତ୍ର୍ୟବରା ପରିଷଜ୍ଜ୍ଞେୟା ଧର୍ମସଂଶୟନିର୍ଣ୍ଣୟେ ॥୪॥
ଏକୋଽପି ବେଦବିଦ୍ଧର୍ମଂ ୟଂ ବ୍ୟବସେଦ୍ ଦ୍ୱିଜୋତ୍ତମଃ ।
ସ ବିଜ୍ଞେୟଃ ପରୋ ଧର୍ମୋ ନାଜ୍ଞାନାମୁଦିତୋଽୟୁତୈଃ ॥୨॥
( ମନୁ. ଅ. ୧୨ । ଶ୍ଳୋ. ୧୧୦–୧୧୩ )

ଅର୍ଥ:–ନ୍ୟୂନାତିନ୍ୟୂନ ୧୦ ଜଣ ଶିଷ୍ଟଲୋକଙ୍କୁ ନେଇ କମ୍ବା ବିଶିଷ୍ଟ ଆପ୍ତବିଦ୍ୱାନ୍ ୩ ଜଣଙ୍କୁ ନେଇ ଗୋଟିଏ ସଭା ଗଠନ କରାଯାଇପାରେ । ସଭାରେ ଯେଉଁ ଧର୍ମକର୍ମ ସ୍ଥିର କରାଯିବ, ତାହାର ଆଚରଣ ସମସ୍ତେ କରିବେ ॥୩॥

ସେହି ୧୦ଜଣଙ୍କ ମଧ୍ୟରେ ନିମ୍ନ ପ୍ରକାର ବିଦ୍ୱାନ୍ ଥିବେ-ତିନିଜଣ ବେଦରେ ବିଦ୍ୱାନ୍, ଚତୁର୍ଥଜଣ ହୈତୁକ ଅର୍ଥାତ୍ କାରଣ ଅକାରଣର ଜ୍ଞାତା, ପଞ୍ଚମଜଣ ତାର୍କିକ ବା ନ୍ୟାୟ-ବିଦ୍ୟାବିଶାରଦ, ଷଷ୍ଠବ୍ୟକ୍ତି ନିରୁକ୍ତିରଜ୍ଞାତା, ସପ୍ତମଲୋକ ଧର୍ମଶାସ୍ତ୍ରବିତ୍, ଅଷ୍ଟମ ବ୍ରହ୍ମଚାରୀ, ନବମ ଗୃହସ୍ଥ ଏବଂ ଦଶମ–ବାନପ୍ରସ୍ଥ । ଏହି ମହାତ୍ମା ମାନଙ୍କୁ ନେଇ ସଭା ଗଠିତ ହେବ ॥୪॥

ତଥା ଋଗ୍‌ବେଦବିତ୍ ଯଜୁର୍ବେଦବିତ୍ ଏବଂ ସାମବେଦ-ବିତ୍ ଏହି ବିଦ୍ୱାନ୍‌ଙ୍କୁ ନେଇ ଧର୍ମ ସଂଶୟ ଅର୍ଥାତ୍ ସମସ୍ତ ବ୍ୟବହାର ନିର୍ଣ୍ଣୟ ନିମନ୍ତେ ସଭା ହୋଇପାରେ ଏବଂ ସଭାର ଯେତେ ଅଧିକ ସଦସ୍ୟ ହେବେ, ସେତେ ଉତ୍ତମ ॥୫॥

ଦ୍ୱିଜମାନଙ୍କ ମଧ୍ୟରେ ଉତ୍ତମ ଅର୍ଥାତ୍ ଚତୁର୍ଥାଶ୍ରମୀ ସନ୍ୟାସୀ ଏକା ଏକା ମଧ୍ୟ ଯେଉଁ ଧର୍ମ ବ୍ୟବହାର ଆଚରଣ ନିମନ୍ତେ ସ୍ଥିର କରିବେ ସେହି କର୍ତ୍ତବ୍ୟକୁ ପରମଧର୍ମ ଜାଣିବା ଉଚିତ; କିନ୍ତୁ ସହସ୍ର ସହସ୍ର, ଲକ୍ଷ ଲକ୍ଷ ମୂର୍ଖ ଅଜ୍ଞାନୀମାନଙ୍କଦ୍ୱାରା କୁହାଯାଉଥିବା ଧର୍ମ ବ୍ୟବହାର କଦାପି ଆଚରଣୀୟ ନୁହେଁ । କିନ୍ତୁ ଧର୍ମାତ୍ମା, ବିଦ୍ୱାନ୍ ଏବଂ ବିଶେଷ ପରମ ବିଦ୍ୱାନ୍ ସନ୍ୟାସୀଙ୍କର ବେଦୋକ୍ତ ପ୍ରମାଣସିଦ୍ଧ ଧର୍ମବଚନ ସନ୍ଦେହେ ମାନିବା ଉଚିତ ।୭।

ଯଦି ସଭାରେ ମତ ଭେଦ ହେବ ତେବେ ସଂଖ୍ୟାଗରିଷ୍ଠ ପକ୍ଷକୁ ମାନିବା ଉଚିତ ଏବଂ ଯଦି ଉଭୟପକ୍ଷରେ ସମାନ ବ୍ୟକ୍ତିଥିବେ, ତେବେ ଉତ୍ତମ ମାନଙ୍କ ପକ୍ଷର କଥା ସ୍ୱୀକାର କରାଯିବ, ଯଦି ଉଭୟ ପକ୍ଷରେ ସମାନ ସଂଖ୍ୟକ ଉତ୍ତମ ବ୍ୟକ୍ତିଥିବେ ତେବେ ସନ୍ୟାସୀମାନଙ୍କର ସମ୍ମତି ନିଆଯାଇ, ତାଙ୍କୁହିଁ ପ୍ରାଧାନ୍ୟ ଦିଆଯିବ, ଯେଉଁ ପକ୍ଷରେ ପକ୍ଷପାତରହିତ ସର୍ବହିତୈଷୀ ସନ୍ୟାସୀ ମାନଙ୍କର ସମ୍ମତି ଥାଏ, ତାହା ହିଁ ଉତ୍ତମ ବୁଝିବା ଉଚିତ ।

ଚତୁର୍ଭିରପି ଚୈବୈତୈର୍ନିତ୍ୟମାଶ୍ରମିଭିର୍ଦ୍ୱିଜୈଃ ।
ଦଶଲକ୍ଷଣକୋ ଧର୍ମଃସେବିତବ୍ୟଃ ପ୍ରୟତ୍ନତଃ ॥୭॥
ଧୃତିଃ କ୍ଷମା ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ ।
ଧୀର୍ବିଦ୍ୟା ସତ୍ୟମକ୍ରୋଧୋ ଦଶକଂ ଧର୍ମଲକ୍ଷଣମ୍ ॥୮॥

(ମନୁ. ଅ. ୬ । ଶ୍ଳୋ. ୯୧,୯୨)

ଅର୍ଥ:-- ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥ, ସନ୍ନ୍ୟାସୀ ଆଦି ସମସ୍ତେ ନିମ୍ନଲିଖିତ ଧର୍ମର ସେବନ ଏବଂ ଏହାର ବିରୁଦ୍ଧ ଅଧର୍ମକୁ ତ୍ୟାଗକରିବାକୁ ସର୍ବଦା ଚେଷ୍ଟାକରିବା ଉଚିତ ॥୭॥

ପକ୍ଷପାତ ତ୍ୟାଗକରି, କେବଳ ସତ୍ୟ ଆଚରଣ ଏବଂ ସର୍ବଦା ଅସତ୍ୟକୁ ପରିତ୍ୟାଗକରିବା ଧର୍ମ ଅଟେ । ଏହି ଧର୍ମର ଏଗାରଟି ଲକ୍ଷଣ ରହିଛି । ( ଅହିଂସା ) କାହାପ୍ରତି ଶତ୍ରୁଭାବରଖି ତାହାର ଅନିଷ୍ଟ ନକରିବା, ( ଧୃତିଃ ) ସୁଖ-ଦୁଃଖ, ହାନିଲାଭରେ ବ୍ୟାକୁଳହୋଇ ଧର୍ମତ୍ୟାଗ ନକରିବା କିନ୍ତୁ ଧୈର୍ଯ୍ୟର ସହିତ ଧର୍ମରେ ହିଁ ସ୍ଥିର ରହିବା, (କ୍ଷମା) ନିନ୍ଦା, ସ୍ତୁତି, ମାନାପମାନ ସହନକରି କେବଳ ଧର୍ମ ଆଚ-ରଣ କରିବା, ( ଦମଃ ) ମନକୁ ଅଧର୍ମରୁ ଫେରାଇଆଣି ଧର୍ମରେ ପ୍ରବୃତ୍ତ ରଖିବା ( ଅସ୍ତେୟମ୍ ) ମନ, କର୍ମ, ବଚନରେ ଅନ୍ୟାୟ ଓ ଅଧର୍ମରେ ପରର ଦ୍ରବ୍ୟକୁ କଦାପି ଗ୍ରହଣ ନକରିବା ( ଶୌଚମ୍ ) ରାଗଦ୍ୱେଷାଦି ତ୍ୟାଗଦ୍ୱାରା ଆତ୍ମା ଏବଂ ମନକୁ ପବିତ୍ର ରଖିବା ଏବଂ ଜଳାଦି ସାହାଯ୍ୟରେ ଶରୀରକୁ ଶୁଦ୍ଧରଖିବା, ( ଇନ୍ଦ୍ରିୟନିଗ୍ରହଃ ) ଶ୍ରୋତ୍ରାଦି ବାହ୍ୟ ଇନ୍ଦ୍ରିୟମାନଙ୍କ ଅଧର୍ମଠାରୁ ଦୂରରେରଖି ଧର୍ମରେ ଚଳା-ଇବା, ( ଧୀଃ ) ବେଦାଦି ସତ୍ୟବିଦ୍ୟା, ବ୍ରହ୍ମଚର୍ଯ୍ୟ, ସତ୍ସଙ୍ଗ କରିବା ଏବଂ କୁସଙ୍ଗ, ଦୁର୍ବ୍ୟସନ, ମଦ୍ୟପାନାଦି ତ୍ୟାଗକରି ସର୍ବଦା ବୁଦ୍ଧିକୁ ବଢାଇବାରେ ପ୍ରଯତ୍ନ କରିବା, ( ବିଦ୍ୟା ) ଯାହାଦ୍ୱାରା ପୃଥିବୀଠାରୁ ଆରମ୍ଭକରି ପରମେଶ୍ୱରଙ୍କ ପର୍ଯ୍ୟନ୍ତ ଜ୍ଞାନଲାଭ ହୋଇପାରେ ସେହିପ୍ରକାର ବିଦ୍ୟା ପ୍ରାପ୍ତହେବା,

( ସତ୍ୟମ୍ ) ସତ୍ୟ ମାନିବା, ସତ୍ୟ କହିବା, ସତ୍ୟକର୍ମ କରିବା, ( ଅକ୍ରୋଧଃ ) କ୍ରୋଧାଦି ଦୋଷ ତ୍ୟାଗକରି ଶାନ୍ତ୍ୟାଦି ଗୁଣ ଗ୍ରହଣକରିବାକୁ ଧର୍ମ କୁହାଯାଏ । ଏହାବ୍ୟତୀତ ଅନ୍ୟାୟ ପକ୍ଷପାତଯୁକ୍ତ ଆଚରଣ ଅଧର୍ମ ଅଟେ । ହିଂସା, ବୈରବୁଦ୍ଧି, ଅଧୈର୍ଯ୍ୟ, ଅସହନ, ମନକୁ ଅଧର୍ମରେ ଚଳାଇବା, କୁସଙ୍ଗ, ଦୁର୍ବ୍ୟସନ, ମଦ୍ୟପାନାଦି ଦ୍ୱାରା ବୁଦ୍ଧି ନାଶ କରିବା, ଅବିଦ୍ୟା ଏବଂ ଯାହା ଅଧର୍ମାଚରଣଜନିତ ଅଜ୍ଞାନ ଅଟେ, ସେଥିରେ ପଡ଼ିବା, ଅସତ୍ୟକୁ ମାନିବା, ଅସତ୍ୟ କହିବା, କ୍ରୋଧାଦି ଆଚରଣକରି ଅଧର୍ମୀ, ଦୁଷ୍ଟ ଗୃହସ୍ଥ ହେବା ଏହି ଏଗାର ଅଧର୍ମର ଲକ୍ଷଣ ଅଟେ । ଏମାନଙ୍କଠାରୁ ସର୍ବଦା ଦୂରରେ ରହିବା ଉଚିତ ॥୮॥

ନ ସା ସଭା ଯତ୍ର ନ ସନ୍ତି ବୃଦ୍ଧା ନ ତେ ବୃଦ୍ଧା ଯେ ନ ବଦନ୍ତି ଧର୍ମମ୍ ।
ନାସୌ ଧର୍ମୋ ଯତ୍ର ନ ସତ୍ୟମସ୍ତି ନ ତତ୍ସତ୍ୟଂ ଯଚ୍ଛଲେନାଭ୍ୟୁପେତମ୍ ॥୯॥

ମହାଭାରତେ ( ଉଦ୍ୟୋଗଂ ଅ° ୫୩ ଶ୍ଳୋ° ୫୮)

ସଭାଂ ବା ନ ପ୍ରବେଷ୍ଟବ୍ୟଂ ବକ୍ତବ୍ୟଂ ବା ସମଞ୍ଜସମ୍ ।
ଅବ୍ରୁବନ୍ ବିବ୍ରୁବନ୍ ବାପି ନରୋ ଭବତି କିଲ୍ବିଷୀ ।
॥୧୦॥

ଧର୍ମୋ ବିଦ୍ଧସ୍ତ୍ୱଧର୍ମେଣ ସଭାଂ ଯତ୍ରୋପତିଷ୍ଠତେ ।
ଶଲ୍ୟଂ ଚାସ୍ୟ ନ କୃନ୍ତନ୍ତି ବିଦ୍ଧାସ୍ତତ୍ର ସଭାସଦଃ ॥୧୧॥
( ମନୁ. ଅ. ୮ । ଶ୍ଳୋ. ୧୩,୧୨)



ବାଦ୍ଵଭିଃ ସେବିତଃ ସଦ୍‌ଭିର୍ନିତ୍ୟମଦ୍ଵେଷରାଗିଭିଃ ।
ହୃଦୟେନାଭ୍ୟନୁଜ୍ଞାତୋ ଯୋ ଧର୍ମସ୍ତନ୍ନିବୋଧତ ।
॥ ୧୨ ॥
(ମନୁ· ଅ. ୨ । ଶ୍ଳୋ. ୧)

ଅର୍ଥ:— ତାହା ସଭାନୁହେଁ, ଯେଉଁଠାରେ ବୃଦ୍ଧ ପୁରୁଷ ନଥାନ୍ତି । ସେମାନେ ବୃଦ୍ଧ ନୁହଁନ୍ତି ଯେଉଁମାନେ ଧର୍ମଯୁକ୍ତ ବଚନ କୁହନ୍ତି ନାହିଁ, ତାହା ଧର୍ମ ନୁହେଁ । ଯେଉଁଥିରେ ସତ୍ୟ ନାହିଁ ଏବଂ ତାହାମଧ୍ୟ ସତ୍ୟନୁହେଁ, ଯାହା ଛଳନା-ଯୁକ୍ତ ଅଟେ ॥୯॥

ମନୁଷ୍ୟ ସଭାରେ ପ୍ରବେଶ ନକରିବା ଉଚିତ । ଯଦି ପ୍ରବେଶ କରିବ, ତେବେ ସତ୍ୟ କହିବା ଉଚିତ, ଯଦି ସେ ସଭାରେ ବସି ଅସତ୍ୟ କଥା ଶୁଣି ମୌନରହିବ କିମ୍ବା ସତ୍ୟର ବିପରୀତ ବଚନ କହିବ ତେବେ ସେହି ମନୁଷ୍ୟ ଅତ୍ୟନ୍ତ ଦୁଷ୍ଟାଗୃହୀ ପାପୀରେ ଗଣା ହେବ ॥୧୦॥

ଯଦି ସଭାରେ ଅଧର୍ମଦ୍ଵାରା ଧର୍ମ କ୍ଷତବିକ୍ଷତ ହେବ ଏବଂ ତା'ର କ୍ଷତକୁ ସଭାସଦ୍‌ଗଣ ପୂରଣନକରିବେ, ତେବେ ନିଶ୍ଚୟରୂପେ ଜାଣିରଖିବାକୁ ହେବ ଯେ ସେହି ସଭାର ସଭାସଦ୍-ମାନେ ହିଁ ତଦ୍ଵାରା କ୍ଷତବିକ୍ଷତ ହୁଅନ୍ତି ॥୧୧॥

ରାଗଦ୍ୱେଷ ବିହୀନ ବିଦ୍ୱାନ୍ ସତ୍ପୁରୁଷ ଯେଉଁକର୍ମକୁ ନିଜର ହୃଦୟର ଅନୁକୂଳବୋଲି ଜାଣି ସେବନ କରନ୍ତି, ତୁମ୍ଭେମାନେ ସେହି ପୂର୍ବୋକ୍ତ କର୍ମକୁ ଧର୍ମବୋଲି ଜାଣ ॥୧୨॥

ଧର୍ମ ଏବ ହତୋହନ୍ତି ଧର୍ମୋ ରକ୍ଷତି ରକ୍ଷିତଃ ।
ତସ୍ମାଦ୍ଧର୍ମୋ ନ ହନ୍ତବ୍ୟୋ ମା ନୋ ଧର୍ମୋ ହତୋଽବଧୀତ୍ ॥୧୩॥
ବୃଷୋ ହି ଭଗବାନ୍ ଧର୍ମସ୍ତସ୍ୟ ଯଃ କୁରୁତେ ହ୍ୟଲମ୍ ।
ବୃଷଲଂ ତଂ ବିଦୁର୍ଦେବାସ୍ତସ୍ମାଦ୍ଧର୍ମଂ ନ ଲୋପୟେତ୍ ॥୧୪॥

( ମନୁ. ଅ. ୮ । ଶ୍ଳୋ. ୧୫,୧୬)

**ଅର୍ଥ**—ଯେଉଁ ପୁରୁଷ ଧର୍ମନାଶ କରେ, ଧର୍ମ ତାହାକୁ ନାଶ କରିଦିଏ ଏବଂ ଯେ ଧର୍ମକୁ ରକ୍ଷାକରେ ଧର୍ମ ତାହାକୁ ରକ୍ଷାକରେ । ଅତଏବ ନଷ୍ଟ କରିଯାଇଥିବା ଧର୍ମ ଆମକୁ କେବେ ବିଭ୍ରଷ୍ଟ ନକରୁ ଏହି ଭୟରେ କଦାପି ଧର୍ମକୁ ନଷ୍ଟକରିବା କିମ୍ବା ତ୍ୟାଗକରିବା ଉଚିତ ନୁହେଁ ॥୧୩॥

ଯାହା ସର୍ବସୁଖ ଐଶ୍ୱର୍ଯ୍ୟ ବର୍ଷକୋଷ ଧର୍ମରହିଛି, ଯେଉଁ ମନୁଷ୍ୟ ଏହାକୁ ଲୋପକରେ, ତାହାକୁ ବିଦ୍ୱାନ୍‌ଗଣ ବୃଷଳ ବା ନୀଚବୋଲି ବୁଝନ୍ତି ॥୧୪॥

ନ ଜାତୁ କାମାନ୍ନ ଭୟାନ୍ନ ଲୋଭାଦ୍, ଧର୍ମଂ ତ୍ୟଜେଜ୍ଜୀ-
ବିତସ୍ୟାପି ହେତୋଃ ।
ଧର୍ମୋ ନିତ୍ୟଃ ସୁଖଦୁଃଖେ ତ୍ୱନିତ୍ୟେ, ଜୀବୋ
ନିତ୍ୟୋ ହେତୁରସ୍ୟ ତ୍ୱନିତ୍ୟଃ ॥୧୫॥
ମହାଭାରତେ ( ଉ. ଉଦ୍ୟୋ. ୪୦।୧୧।୧୨ )

ଯତ୍ର ଧର୍ମୋ ହ୍ୟଧର୍ମେଣ ସତ୍ୟଂ ଯତ୍ରାନୃତେନ ଚ ।
ହନ୍ୟତେ ପ୍ରେକ୍ଷମାଣାନାଂ ହତାସ୍ତତ୍ର ସଭାସଦଃ ।
॥୧୬॥
( ମନୁ. ଅ. ୮ । ଶ୍ଳୋ. ୧୪ )

ନିନ୍ଦନ୍ତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ, ଲକ୍ଷ୍ମୀଃ-
ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟମ୍ ।
ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା, ନ୍ୟାଯ୍ୟା-
ତ୍ପଥଃ ପ୍ରବିଚଲନ୍ତି ପଦଂ ନ ଧୀରାଃ ॥୧୭॥
( ଭର୍ତ୍ତୃହରିଃ ନୀତି ଶତକ ଶ୍ଳୋ. ୭୪ )

**ଅର୍ଥ:**— ମନୁଷ୍ୟ କର୍ମହେତୁ ଅର୍ଥାତ୍ ମିଥ୍ୟାରେ କାମନା ସିଦ୍ଧହେବା କାରଣ ନେଇ କମ୍ବା ନିନ୍ଦା ସ୍ତୁତି ପ୍ରଭୃତି ଭୟରେ କଦାପି ଧର୍ମକୁ ତ୍ୟାଗକରିବା ଉଚିତ ନୁହେଁ । ଲୋଭରେ ଯଥା ମିଥ୍ୟା ଓ ଅଧର୍ମ ସାହାଯ୍ୟନେଇ ଚକ୍ରବର୍ତ୍ତୀ ରାଜ୍ୟ ଯଦି ପ୍ରାପ୍ତହେବାକୁ ଥାଏ, ସେ ସମୟରେ ମଧ୍ୟ ଧର୍ମକୁ ତ୍ୟାଗକରି ଚକ୍ରବର୍ତ୍ତୀ ରାଜ୍ୟ କଦାପି ଗ୍ରହଣ କରିବେ ନାହିଁ । ଯେଉଁକି

ଅଚ୍ଛାଦାନ, ଜଳପାନାଦି ଅଧର୍ମରେ ଯଦି ମିଳୁଥାଏ, ତେବେ ଧର୍ମ ତ୍ୟାଗକରି ତାହା କଦାପି ଗ୍ରହଣକରିବେ ନାହିଁ । କାରଣ ଜୀବ ଏବଂ ଧର୍ମ ନିତ୍ୟ । ସୁଖ ଓ ଦୁଃଖ ଅନିତ୍ୟ । ଅନିତ୍ୟ ନିମନ୍ତେ ନିତ୍ୟଙ୍କୁ ତ୍ୟାଗକରିବା ଅତ୍ୟନ୍ତ ଦୂଷଣୀୟ କର୍ମ ଅଟେ । ଏହି ଧର୍ମର ହେତୁ ଅର୍ଥାତ୍ ଧର୍ମର ସାଧନ ଯେଉଁ ଶରୀର, ତାହାମଧ୍ୟ ଅନିତ୍ୟ । ସେହି ମନୁଷ୍ୟ ଧନ୍ୟ, ଯେଉଁମାନେ ଅନିତ୍ୟ ଶରୀର ଏବଂ ସୁଖଦୁଃଖାଦି ବ୍ୟବହାରରେ ଯୁକ୍ତରହି ମଧ୍ୟ ନିତ୍ୟଧର୍ମ ତ୍ୟାଗ କଦାପି କରନ୍ତି ନାହିଁ ॥୧୫॥

ଯେଉଁ ସଭାରେ ବସିଥିବା ସଭାସଦ୍‌ମାନଙ୍କ ସମ୍ମୁଖରେ ଅଧର୍ମ ସାହାଯ୍ୟରେ ଧର୍ମ ଏବଂ ଅସତ୍ୟ ସାହାଯ୍ୟରେ ସତ୍ୟର ହନନ ହୁଏ, ସେହି ସଭାର ସଭାସଦ୍‌ଗଣ ମୃତପ୍ରାୟ ଅଟନ୍ତି ॥୧୬॥

ସବୁ ମନୁଷ୍ୟଙ୍କୁ ନିଶ୍ଚିତରୂପେ ଜାଣିରଖିବା ଉଚିତ ଯେ, ସାଂସାରିକ ଜ୍ଞାନମତରେ ନିପୁଣ ମନୁଷ୍ୟ ନିନ୍ଦାକରୁ ବା ସ୍ତୁତିକରୁ, ଲକ୍ଷ୍ମୀ ପ୍ରାପ୍ତହେଉ ବା ନଷ୍ଟହୋଇଯାଉ, ଆଜି ହିଁ ମରଣ ହୋଇଯାଉ ବା ଯୁଗଯୁଗ ପରେ ହେଉ, ତଥାପି ଯେଉଁ ମନୁଷ୍ୟ ଧର୍ମଯୁକ୍ତ ମାର୍ଗରୁ ଏକ ପାଦମଧ୍ୟ ଘୁଞ୍ଚନ୍ତି ନାହିଁ, ସେ ହିଁ ଧୀରପୁରୁଷ ଏବଂ ଧନ୍ୟ ଅଟନ୍ତି ॥୧୭॥

**ସଂ ଗଚ୍ଛଧ୍ୱଂ ସଂ ବଦଧ୍ୱଂ ସଂ ବୋ ମନାଂସି ଜାନତାମ୍ ।**
**ଦେବା ଭାଗଂ ଯଥା ପୂର୍ବେ ସଂଜାନାନା ଉପାସତେ ॥**
**॥୧॥**

ଋ. ମ. ୧୦ । ସୂ. ୧୯୧ । ମ. ୨ ॥

ଦୃଷ୍ଟ୍ୱା ରୂପେ ବ୍ୟାକରୋତ୍ ସତ୍ୟାନୃତେ ପ୍ରଜାପତିଃ ।
ଅଶ୍ରଦ୍ଧାମନୃତେଽଦଧାଚ୍ଛ୍ରଦ୍ଧାଂ ସତ୍ୟେ ପ୍ରଜାପତିଃ ॥

॥୨॥

ଯଜୁ. ଅ. ୧୯।ମଂ. ୭୭

ସହ ନାବବତୁ ସହ ନୌ ଭୁନକ୍ତୁ ସହ ବୀର୍ଯ୍ୟଂ
କରବାବହୈ ।
ତେଜସ୍ୱି ନାବଧୀତମସ୍ତୁ ମା ବିଦ୍ୱିଷାବହୈ ।
ଓ୩ମ୍ ଶାନ୍ତିଶ୍ଶାନ୍ତିଶ୍ଶାନ୍ତିଃ ॥୩॥

॥ ତୈ. [ଆ] ଅଷ୍ଟମପ୍ରପାଠକଃ । ପ୍ରଥମାନୁବାକଃ ॥

ଅର୍ଥ: – ହେ ଗୃହସ୍ଥାଦି ମନୁଷ୍ୟଗଣ ! ମୁଁ ଈଶ୍ୱର ତୁମମାନଙ୍କୁ ଆଜ୍ଞା ଦେଉଛି ଯେ, ( ଯଥା ) ଯେପରି ( ପୂର୍ବେ ) ପ୍ରଥମ ଅଧୀତ ବିଦ୍ୟାଯୋଗାଭ୍ୟାସୀ ( ସଂଜାନାନା ) ସମ୍ୟକ୍ ଜ୍ଞାତା ( ଦେବାଃ ) ବିଦ୍ୱାନ୍‌ମାନେ ମିଳିତହୋଇ ( ଭାଗମ୍ ) ସତ୍ୟାସତ୍ୟର ନିର୍ଣ୍ଣୟକରି ଅସତ୍ୟକୁ ପରିତ୍ୟାଗ ପୂର୍ବକ ସତ୍ୟର ( ଉପାସତେ ) ଉପାସନା କରନ୍ତି, ସେହିପରି ( ସମ୍ ଜାନତାମ୍ ) ଆମ୍ଭଦ୍ୱାରା ଧର୍ମାଧର୍ମ, ପ୍ରିୟା ପ୍ରିୟର ସମ୍ୟକ୍ ଜ୍ଞାତା ( ବଃ ) ତୁମମାନଙ୍କର ( ମନାଂସି ) ମନ ପରସ୍ପରରେ ପ୍ରୀତି ଅବିରୋଧି ହୋଇ ପୂର୍ବୋକ୍ତ ଏକ ଧର୍ମରେ ସମ୍ମତ ହେଉ । ସେଥିପାଇଁ ତୁମେମାନେ ସେଇ ଧର୍ମକୁ ( ସଗଚ୍ଛଧ୍ୱମ୍ ) ସମ୍ୟକ୍ ଭାବରେ ମିଳିତହୋଇ ପ୍ରାପ୍ତହୁଅ, ଯାହାଫଳରେ ତୁମମାନଙ୍କର ସମ୍ମତି ଏକ ହେଉ ଏବଂ ବିରୁଦ୍ଧଭାବ ଅଧର୍ମକୁ

ତ୍ୟାଗକର (ସଂବଦଧ୍ୱମ୍) ପ୍ରୀତିସହିତ ପରସ୍ପର କଥୋପ-କଥନ ଓ ପ୍ରଶ୍ନୋତ୍ତର କରି ଏକ ଅପରର ଉନ୍ନତି କରୁ-ଥାଅ ॥୮॥

ଯେପରି (ପ୍ରଜାପତିଃ) ସକଳ ସୃଷ୍ଟିର ସ୍ରଷ୍ଟା ଓ ପାଳକ, ସର୍ବବ୍ୟାପକ, ସର୍ବଜ୍ଞ, ନ୍ୟାୟକାରୀ, ଅଦ୍ୱିତୀୟ, ସ୍ୱାମୀ, ପରମାତ୍ମା (ସତ୍ୟାନୃତେ) ସତ୍ୟ ଓ ଅନୃତ, (ରୂପେ) ଭିନ୍ନ ଭିନ୍ନ ସ୍ୱରୂପ ବିଶିଷ୍ଟ ଧର୍ମାଧର୍ମକୁ (ଦୃଷ୍ଟ୍ୱା) ସ୍ୱୀୟ ସର୍ବଜ୍ଞତାଦ୍ୱାରା ଯଥାବତ୍ ଦେଖି (ବ୍ୟାକରୋତ୍) ଭିନ୍ନ ଭିନ୍ନ ରୂପରେ ନିର୍ଣ୍ଣିତ କରନ୍ତି ଏବଂ ସେହି (ପ୍ରଜାପତିଃ) ପରମାତ୍ମା ଯେପରି (ଅନୃତେ) ମିଥ୍ୟାଭାଷଣାଦି ଅଧର୍ମରେ (ଅଶ୍ରଦ୍ଧାମ୍) ଅପ୍ରୀତି ଓ (ସତ୍ୟେ) ସତ୍ୟଭାଷଣାଦି ଲକ୍ଷଣଯୁକ୍ତ ନ୍ୟାୟ ଓ ପକ୍ଷପାତରହିତ ଧର୍ମରେ ତୁମ-ମାନଙ୍କର (ଶ୍ରଦ୍ଧାମ୍) ପ୍ରୀତି (ଅଦଧାତ୍) ଧାରଣ କରାନ୍ତି, ତୁମେମାନେ ମଧ୍ୟ ସେହିପରି କର ॥୨॥

ଆମେ ଉଭୟେ ସ୍ତ୍ରୀ-ପୁରୁଷ, ସେବକ-ସ୍ୱାମୀ, ମିତ୍ର-ମିତ୍ର, ପିତା-ପୁତ୍ରାଦି (ସହ) ମିଳିମିଶି (ନୌ) ଜଣେ ଅନ୍ୟ ଜଣକୁ ପ୍ରୀତିପୂର୍ବକ (ଅବତୁ) ରକ୍ଷାକରିବୁ ଏବଂ (ସହ) ପ୍ରୀତିପୂର୍ବକ ମିଶି ଜଣେ ଅନ୍ୟଜଣଙ୍କର (ବୀର୍ଯ୍ୟମ୍) ପରାକ୍ରମକୁ (କରବାବହୈ) ସର୍ବଦା ବୃଦ୍ଧି କରୁଥିବୁ (ନୌ) ଆମ୍ଭମାନଙ୍କର (ଅଧୀତମ୍) ଅଧୀତ ଓ ଅଧ୍ୟାପିତ ବିଷୟ (ତେଜସ୍ୱୀ) ଉତ୍ତମରୂପେ ପ୍ରକାଶମାନ (ଅସ୍ତୁ) ହେଉ

ଏବଂ ଆମେ ଜଣେ ଅନ୍ୟଜଣଙ୍କ ପ୍ରତି ( ମା ବିଦ୍ୱିଷାବହୈ ) କେବେ ବି ଯେପରି ବିଦ୍ୱେଷ ଓ ବିରୋଧ ଭାବ ପୋଷଣ ନକରୁଁ । ସର୍ବଦା ମିତ୍ରଭାବରେ ଏକ ଅପର ପ୍ରତି ସତ୍ୟ ଓ ପ୍ରେମର ସହିତ ଆଚରଣ କରିବୁ । ସମସ୍ତ ଗୃହସ୍ଥ ମାନଙ୍କର ସଦ୍‌ବ୍ୟବହାର ବୃଦ୍ଧି କରି ସର୍ବଦା ଆନନ୍ଦରେ ଉନ୍ନତି ଲାଭ କରିବୁ । ଯେଉଁ ପରମାତ୍ମାଙ୍କର ଏହି **"ଓ୩ମ୍"** ନାମ, ତାହାଙ୍କର କୃପାରେ ଓ ସ୍ୱୀୟ ଧର୍ମଯୁକ୍ତ ପୁରୁଷାର୍ଥ ଦ୍ୱାରା ଅସ୍ମମାନଙ୍କର ଶରୀର, ମନ ଓ ଆତ୍ମାର ବିବିଧ ଦୁଃଖ ଯାହା ଅନ୍ୟଦ୍ୱାରା ପ୍ରାପ୍ତହୁଏ, ତାହା ନଷ୍ଟହେଉ । ଆମେ ପ୍ରୀତିସହିତ ପରସ୍ପର ମିଳିତହୋଇ ଧର୍ମ, ଅର୍ଥ, କାମ ଓ ମୋକ୍ଷର ସିଦ୍ଧିରେ ସଫଳତା ଲାଭକରି ନିଜେ ସର୍ବଦା ଆନନ୍ଦରେ ରହିବୁ ଏବଂ ସମସ୍ତଙ୍କୁ ଆନନ୍ଦରେ ରଖିବୁ ।

॥ ଇତି ଗୃହାଶ୍ରମ ସଂସ୍କାରବିଧିଃ ସମାପ୍ତଃ ॥

# ଅଥ ବାନପ୍ରସ୍ଥସଂସ୍କାର ବିଧିଂ ବକ୍ଷ୍ୟାମଃ

ବିବାହପରେ ସନ୍ତାନୋତ୍ପତ୍ତି ଶେଷହେଲେ ଓ ଯେତେବେଳେ ପୁତ୍ର ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନକରି ବିବାହ କରିବ ଏବଂ ପୁତ୍ରର ଗୋଟିଏ ସନ୍ତାନ ହେବ ଅର୍ଥାତ୍ ଯେତେବେଳେ ପୁତ୍ର ଗୋଟିଏ ପୁତ୍ର ସନ୍ତାନ ଲାଭକରିବ, ସେତେବେଳେ ବାନପ୍ରସ୍ଥାଶ୍ରମ ଗ୍ରହଣ-କରିବ ଅର୍ଥାତ୍ ବଣକୁଯାଇ ନିମ୍ନଲିଖିତ ସମସ୍ତ କର୍ମ କରିବ । ଏହାକୁ ହିଁ ବାନପ୍ରସ୍ଥ ସଂସ୍କାର କୁହାଯାଏ ।

ଅତ୍ର ପ୍ରମାଣାନି:—

ବ୍ରହ୍ମଚର୍ଯାଶ୍ରମଂ ସମାପ୍ୟ ଗୃହୀ ଭବେଦ୍
ଗୃହୀଭୂତ୍ୱା ବନୀ ଭବେଦ୍ ବନୀ ଭୂତ୍ୱା ପ୍ରବ୍ରଜେତ୍ ।
(ଶତପଥ ବ୍ରାହ୍ମଣେ) ॥୧॥

ବ୍ରତେନ ଦୀକ୍ଷା ମାପ୍ନୋତି ଦୀକ୍ଷୟାପ୍ନୋତି ଦକ୍ଷିଣାମ୍ ।
ଦକ୍ଷିଣା ଶ୍ରଦ୍ଧାମାପ୍ନୋତି ଶ୍ରଦ୍ଧୟା ସତ୍ୟମାପ୍ୟତେ ॥
(ଯଜୁ. ଅ· ୧୯ । ମଂ. ୩୦) ॥୨॥

ଅର୍ଥ— ମନୁଷ୍ୟମାନେ ବ୍ରହ୍ମଚର୍ଯ୍ୟାଶ୍ରମପରେ ଗୃହସ୍ଥାଶ୍ରମ କରିବା ବିଧେୟ । ଗୃହସ୍ଥ ହେବାପରେ ବନୀ ଅର୍ଥାତ୍ ବାନପ୍ରସ୍ଥ ହେବେ ଏବଂ ବାନପ୍ରସ୍ଥ ହେବାପରେ ସନ୍ୟାସ ଗ୍ରହଣ କରିବେ ॥୧॥

ଯେତେବେଳେ ମନୁଷ୍ୟ ବ୍ରହ୍ମଚର୍ଯ୍ୟାଦି ତଥା ସତ୍ୟ-ଭାଷଣାଦି ବ୍ରତ ଅର୍ଥାତ୍ ନିୟମ ଧାରଣକରେ, ସେତେବେଳେ ସେହି ( ବ୍ରତେନ ) ବ୍ରତଦ୍ୱାରା ଉତ୍ତମ ପ୍ରତିଷ୍ଠା ରୂପକ ( ଦୀକ୍ଷାମ୍ ) ଦୀକ୍ଷା ( ଆପ୍ନୋତି ) ଲଭେ ହୁଏ, ( ଦୀକ୍ଷୟା ) ବ୍ରହ୍ମଚର୍ଯ୍ୟାଦି ଆଶ୍ରମରନିୟମ ପାଳନକରି ( ଦକ୍ଷିଣାମ୍ ) ସତ୍କାର ପୂର୍ବକ ଧନାଦି ( ଆପ୍ନୋତି ) ଲଭକରେ, (ଦକ୍ଷିଣା) ସେହି ସତ୍କାରଦ୍ୱାର ( ଶ୍ରଦ୍ଧାମ୍ ) ସତ୍ୟ ସାଧନରେ ପ୍ରୀତି ( ଆପ୍ନୋତି ) ଲଭକରେ ଏବଂ ( ଶ୍ରଦ୍ଧୟା ) ସତ୍ୟଧର୍ମୀ ଲୋକଙ୍କ ସହିତ ପ୍ରୀତିକଲେ ମନୁଷ୍ୟ ( ସତ୍ୟମ୍ ) ସତ୍ୟ-ବିଜ୍ଞାନ ବା ସତ୍ୟ ପଦାର୍ଥ ( ଆପ୍ୟତେ ) ପ୍ରାପ୍ତହୁଏ । ଏଥି-ପାଇଁ ଶ୍ରଦ୍ଧାପୂର୍ବକ ବ୍ରହ୍ମଚର୍ଯ୍ୟ ଓ ଗୃହସ୍ଥାଶ୍ରମର ଅନୁଷ୍ଠାନ କରି ବାନପ୍ରସ୍ଥାଶ୍ରମରେ ପ୍ରବେଶ କରିବା ଉଚିତ୍ ।

ଅଭ୍ୟାଦଧାମି ସମଧମଗ୍ନେ ବ୍ରତପତେ ତ୍ୱୟି ।
ବ୍ରତଞ୍ଚ ଶ୍ରଦ୍ଧାଂ ଚୋପୈମୀନ୍ଧେତ୍ୱା ଦୀକ୍ଷିତୋଽଅହମ୍ ।
(ଯଜୁ ଅ. ୨୦ । ମ. ୨୪) ॥୩॥

ଆ ନୟୈତମା ରଭସ୍ୱ ସୁକୃତାଂ ଲୋକମପି ଗଚ୍ଛତୁ ପ୍ରଜାନନ୍ ।
ତୀର୍ତ୍ୱା ତମାଂସି ବହୁଧା ମହାନ୍ତ୍ୟଜୋ ନାକମା-
-କ୍ରମତାଂ ତୃତୀୟମ୍ ॥୪॥
(ଅଥର୍ବ କା. ୯ । ସୂକ୍ତ ୫ । ମ. ୧)

ଅର୍ଥ—ହେ ( ବ୍ରତପତେ ଅଗ୍ନେ ) ବ୍ରତପାଳକ ପରମାତ୍ମନ୍ ! ( ଦୀକ୍ଷିତଃ ) ଦୀକ୍ଷାପ୍ରାପ୍ତ ହୋଇ ( ଅହମ୍ ) ମୁଁ ( ତ୍ୱୟି ) ତୁମଠାରେ ସ୍ଥିରହୋଇ ( ବ୍ରତମ୍ ) ବ୍ରହ୍ମଚର୍ଯ୍ୟାଦି ଆଶ୍ରମ ଧାରଣ (ତ) ଏବଂ ତାହାର ସାମଗ୍ରୀ ( ଶ୍ରଦ୍ଧାମ୍ ) ସତ୍ୟ ଧାରଣ (ଚ) ଏବଂ ତାହାର ଉପାୟ ( ଉପୈମି ) ପ୍ରାପ୍ତ ହୁଏ । ଏଥିପାଇଁ ଅଗ୍ନିରେ ଯେପରି ( ସମିଧମ୍ ) ସମିଧ ଧାରଣ କରୁଛି ସେହିରୂପେ ହିଁ ବିଦ୍ୟା ଓ ବ୍ରତ ଧାରଣକରି ପ୍ରଜ୍ୱଳିତ କରୁଛି ଏବଂ ସେହିରୂପେ ହିଁ ( ତ୍ୱା ) ତୁମକୁ ନିଜର ଆତ୍ମାରେ ଧାରଣକରି ସର୍ବଦା ( ଇନ୍ଧେ ) ପ୍ରକାଶିତ କରୁଛି ॥୩॥

ହେ ଗୃହସ୍ଥ ! ( ପ୍ରଜାନନ୍ ) ଭଲରୂପେ ଜାଣି ତୁମେ ( ଏତମ୍ ) ଏହି ବାନପ୍ରସ୍ଥାଶ୍ରମକୁ ( ଆରଭସ୍ୱ ) ଆରମ୍ଭ କର । ( ଆନୟ ) ନିଜର ମନକୁ ଗୃହାଶ୍ରମରୁ ଏ ଦିଗକୁ ନେଇଆସ । ( ସୁକୃତାମ୍ ) ପୁଣ୍ୟାତ୍ମାଗଣଙ୍କର (ଲୋକମପି) ଦର୍ଶନୀୟ ବାନପ୍ରସ୍ଥାଶ୍ରମକୁ ( ଗଚ୍ଛତୁ ) ଲାଭକର । ( ବହୁଧା ) ନାନା ପ୍ରକାର ( ମହାନ୍ତି ) ଅତି ଗମ୍ଭୀର ( ତମାଂସି ) ଅଜ୍ଞାନତା ତଥା ଦୁଃଖାଦି ସାଂସାରିକ ମୋହରୁ ( ତୀର୍ତ୍ୱା ) ଉତ୍ତୀର୍ଣ୍ଣହୋଇ ଅର୍ଥାତ୍ ତାହାଠାରୁ ପୃଥକ ହୋଇ (ଅଜଃ) ନିଜର ଆତ୍ମାକୁ ଅଜର ଅମର ଜାଣି ( ତୃତୀୟମ୍ ) ତୃତୀୟ ( ନାକମ୍ ) ଦୁଃଖରହିତ ବାନପ୍ରସ୍ଥାଶ୍ରମକୁ ( ଆକ୍ରମତାମ୍ ) ଗ୍ରହଣକର ଅର୍ଥାତ୍ ସେଥିରେ ଯଥା ବିଧି ପ୍ରବେଶ ହୁଅ ॥୪॥

ଭଦ୍ରମିଚ୍ଛନ୍ତ ଋଷୟଃସ୍ୱର୍ବିଦସ୍ତପୋ ଦୀକ୍ଷାମୁପନି-
ଷେଦୁରଗ୍ରେ ।
ତତୋ ରାଷ୍ଟ୍ରଂ ବଳମୋଜଶ୍ଚ ଜାତଂ ତଦସ୍ମୈ
ଦେବା ଉପସଂନମନ୍ତୁ ॥୫॥
( ଅଥର୍ବ କା. ୧୯ । ସୂ. ୪୧ । ମ. ୧ )

ମା ନୋ ମେଧାଂ ମା ନୋ ଦୀକ୍ଷାଂ ମା ନୋ
ହିଂସିଷ୍ଟ ଯତ୍ତପଃ ।
ଶିବା ନଃ ଶଂ ସନ୍ତ୍ୱାୟୁଷେ ଶିବା ଭବନ୍ତୁ ମାତରଃ ।
(ଅଥର୍ବ କା. ୧୯ । ସୂ. ୪୦ । ମ. ୩) ॥୬॥

ଅର୍ଥ-- ହେ ବିଦ୍ୱାନ୍ ମନୁଷ୍ୟଗଣ ! ଯେପରି ( ସ୍ୱର୍ବିଦଃ ) ସୁଖ ପ୍ରାପ୍ତକାରୀ ( ଋଷୟଃ ) ବିଦ୍ୱାନ୍‌ମାନେ ( ଅଗ୍ରେ ) ପ୍ରଥମେ ( ଦୀକ୍ଷାମ୍ ) ବ୍ରହ୍ମଚର୍ଯ୍ୟାଦି ଆଶ୍ରମର ଦୀକ୍ଷା-ଉପଦେଶ ଗ୍ରହଣକରି ( ତପଃ ) ପ୍ରାଣାୟାମ ଏବଂ ବିଦ୍ୟାଧ୍ୟୟନ ପୂର୍ବକ ଜିତେନ୍ଦ୍ରିୟତ୍ୱ ଆଦି ଶୁଭଲକ୍ଷଣ ପ୍ରାପ୍ତହୋଇ (ଉପନିଷେଦୁଃ) ତାହାର ଅନୁଷ୍ଠାନ କରନ୍ତି, ସେହିରୂପେ ( ଭଦ୍ରମ୍ ) କଲ୍ୟାଣ-କର ବାନପ୍ରସ୍ଥ ଶ୍ରମର ପ୍ରାପ୍ତି ନିମିତ୍ତ ଇଚ୍ଛାକର । ଯେପରି ରାଜ-କୁମାର ବ୍ରହ୍ମଚର୍ଯ୍ୟାଶ୍ରମ ପାଳନକରି ( ତତଃ ) ତାପରେ ( ଓଜଃ ) ପରାକ୍ରମ ( ଚ ) ଏବଂ ( ବଲମ୍ ) ବଳ ପ୍ରାପ୍ତ ହୋଇ ( ଜାତମ୍ ) ପ୍ରସିଦ୍ଧ ପ୍ରାପ୍ତ ( ରାଷ୍ଟ୍ରମ୍ ) ରାଜ୍ୟକୁ ଇଚ୍ଛାକରେ ଓ ରକ୍ଷାକରେ ଏବଂ ( ଅସ୍ମୈ ) ଏହି ନ୍ୟାୟକାରୀ

ଧାର୍ମିକ ବିଦ୍ୱାନ୍ ବ୍ରହ୍ମଙ୍କୁ [ଦେବାଃ] ବିଦ୍ୱାନମାନେ ନମସ୍କାର କରନ୍ତୁ, [ତତ୍] ସେହିପରି ବାନପ୍ରସ୍ଥାଶ୍ରମରେ ପ୍ରବେଶ କରିଥିବା ଆପଣଙ୍କୁ [ଉପସଂନମନ୍ତୁ] ସମସ୍ତେ ନିକଟରେ ଯାଇ ନମ୍ର ହୁଅନ୍ତୁ ଅର୍ଥାତ୍ ନମସ୍କାର କରନ୍ତୁ ।୫।।

ହେ ଆତ୍ମୀୟଗଣ ! [ନଃ] ଆମ ବାନପ୍ରସ୍ଥାଶ୍ରମିଗଣଙ୍କର [ମେଧାମ୍] ପ୍ରଜ୍ଞାକୁ [ମା ହିଂସିଷ୍ଟ] ନଷ୍ଟ କରନାହିଁ । [ନଃ] ଆମର [ଦୀକ୍ଷାମ୍] ଦୀକ୍ଷାକୁ [ମା] ନଷ୍ଟ କରନାହିଁ ଏବଂ [ନଃ] ଆମର [ଯତ୍] ଯେଉଁ [ତପଃ] ପ୍ରାଣାୟାମାଦି ଉତ୍ତମ ତପ ତାହାକୁ ତୁମେମାନେ [ମା ହିଂସିଷ୍ଟ] ନଷ୍ଟ କରନାହିଁ । [ନଃ] ଆମର ଦୀକ୍ଷା ଏବଂ [ଆୟୁଷେ] ଜୀବନପାଇଁ ସମସ୍ତ ପ୍ରଜା [ଶିବା] କଲ୍ୟାଣକର । [ସନ୍ତୁ] ହୁଅନ୍ତୁ, ଯେଉଁପରି [ମାତରଃ] ଆମର ମାତା, ପିତାମହୀ ଓ ପ୍ରପିତ ମହୀଗଣ [ଶିବାଃ] କଲ୍ୟାଣ-କାରିଣୀ ହୋଇଥାଆନ୍ତି, ସେହିପରି ସମସ୍ତେ ପ୍ରସନ୍ନହୋଇ ବାନପ୍ରସ୍ଥାଶ୍ରମରେ ପ୍ରବେଶପାଇଁ ଆମମାନଙ୍କର ଅନୁମତି ଦାତା [ଭବନ୍ତୁ] ହୁଅନ୍ତୁ ।।୬।।

**ତପଃଶ୍ରଦ୍ଧେ ଯେ ହ୍ୟୁପବସନ୍ତ୍ୟରଣ୍ୟେ ଶାନ୍ତ୍ୟା***
**ବିଦ୍ୱାଂସୋ ଭୈକ୍ଷ୍ୟଚର୍ଯାଞ୍ଚରନ୍ତଃ ।**
**ସୂର୍ଯଦ୍ୱାରେଣ ତେ ବିରଜାଃ ପ୍ରୟାନ୍ତି ଯତ୍ରାମୃତଃ**
**ସ ପୁରୁଷୋ ହ୍ୟବ୍ୟୟାତ୍ମା ।।୭।।**

(ମୁଣ୍ଡକୋପନିଷଦ୍ ମୁ. ୧ । ଖ· ୨ । ମ. ୧୧)

---

* "ଶାନ୍ତା" ଇତି ମୁଣ୍ଡକେ ପାଠଃ ।। [ଆନନ୍ଦାଶ୍ରମଗ୍ରନ୍ଥାବଳୀ] [ସମ୍ପାଦକ]

ଅର୍ଥ—ହେ ମନୁଷ୍ୟଗଣ ! [ଯେ] ଯେଉଁସବୁ [ବିଦ୍ୱାଂସଃ] ବିଦ୍ୱାନ୍ ବ୍ୟକ୍ତିମାନେ [ଅରଣ୍ୟେ] ବନରେ (ଶାନ୍ତ୍ୟା) ଶାନ୍ତିର ସହିତ (ତପଃଶ୍ରଦ୍ଧେ) ଯୋଗାଭ୍ୟାସ ଓ ପରମାତ୍ମାଙ୍କ ଠାରେ ପ୍ରୀତିକରି (ଉପବସନ୍ତି) ବନବାସୀବୃନ୍ଦଙ୍କ ନିକଟରେ ଅବସ୍ଥାନ କରନ୍ତି ଏବଂ (ଭୈକ୍ଷ୍ୟଚର୍ଯ୍ୟାମ୍) ଭିକ୍ଷାଚରଣ (ଚରନ୍ତଃ) କରି ବନରେ ବାସକରନ୍ତି, (ତେହି) ସେହି ମାନେ ହିଁ (ବିରଜାଃ) ନିର୍ଦୋଷ, ନିର୍ମଳ ଓ ନିଷ୍ପାପ ହୋଇ (ସୂର୍ଯ୍ୟଦ୍ୱାରେଣ) ପ୍ରାଣଦ୍ୱାରା (ଯତ୍ର) ଯେଉଁଠାରେ (ସଃ) ସେହି (ଅମୃତଃ) ଜନ୍ମ ମରଣ ଶୂନ୍ୟ (ଅବ୍ୟୟାତ୍ମା) ଅବିନାଶୀ (ପୁରୁଷଃ) ପୂର୍ଣ୍ଣ ପରମାତ୍ମା ବିରାଜମାନ ଅଛନ୍ତି, (ହି) ସେହି ସ୍ଥାନରେ (ପ୍ରୟାନ୍ତି) ଗମନ କରି ଥାଆନ୍ତି । ଏଣୁ ବାନପ୍ରସ୍ଥାଶ୍ରମ ଗ୍ରହଣକରିବା ଉଚିତ୍ତ ଅଟେ ।

ଏବଂ ଗୃହାଶ୍ରମେ ସ୍ଥିତ୍ୱା ବିଧିବତ୍ ସ୍ନାତକୋ ଦ୍ୱିଜଃ ।
ବନେ ବସେତ୍ତୁ ନିୟତୋ ଯଥାବଦ୍ୱିଜିତେନ୍ଦ୍ରିୟଃ ।
॥୧॥

ଗୃହସ୍ଥସ୍ତୁ ଯଦା ପଶ୍ୟେଦ୍ ବଲୀପଲିତମାତ୍ମନଃ ।
ଅପତ୍ୟସ୍ୟୈବ ଚାପତ୍ୟଂ ତଦାରଣ୍ୟଂ ସମାଶ୍ରୟେତ୍ ।
॥୨॥

ସନ୍ତ୍ୟଜ୍ୟ ଗ୍ରାମ୍ୟମାହାରଂ ସର୍ବଞ୍ଚୈବ ପରିଚ୍ଛଦମ୍ ।
ପୁତ୍ରେଷୁ ଭାର୍ଯ୍ୟାଂ ନିକ୍ଷିପ୍ୟ ବନଂ ଗଚ୍ଛେତ୍ ସହୈବ ବା
॥୩॥

(ମନୁ ଅ. ୬ । ୧-୩)

**ଅର୍ଥ**--ପୂର୍ବୋକ୍ତ ପ୍ରକାରରେ ବିଧି ଅନୁଯାୟୀ ବ୍ରହ୍ମଚର୍ଯ୍ୟ ଅବ-ଲମ୍ବନ କରି ପୂର୍ଣ୍ଣବିଦ୍ୟା ଅଧ୍ୟୟନ କରିବେ । ସମାବର୍ତ୍ତନ ସମୟରେ ସ୍ନାନବିଧିକରି ଦ୍ୱିଜ-ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଜିତେନ୍ଦ୍ରିୟ ଓ ଜିତାତ୍ମା ହୋଇ ଯଥାବିଧି ଗୃହାଶ୍ରମ ସମାପନ ପୂର୍ବକ ବଣରେ ବାସକରିବେ ।।୧।।

ଗୃହସ୍ଥ ଯେତେବେଳେ ନିଜ ଦେହର-ଚର୍ମକୁ ଶିଥିଳ କେଶ ଶ୍ୱେତବର୍ଣ୍ଣ ହେବାର ଦେଖିବେ ଏବଂ ପୁଅର ଯେତେ-ବେଳେ ପୁଅ ହେବ, ସେତେବେଳେ ବଣରେ ଆଶ୍ରୟ ନେବେ ଅର୍ଥାତ୍ ବାନପ୍ରସ୍ଥାଶ୍ରମ ଗ୍ରହଣ କରିବେ ।।୨।।

ଯେତେବେଳେ ବାନପ୍ରସ୍ଥାଶ୍ରମର ଦୀକ୍ଷା ଗ୍ରହଣକରିବେ, ସେତେବେଳେ ଗ୍ରାମଜାତ ପଦାର୍ଥ ଆହାର ଏବଂ ଘରର ଯାବତୀୟ ପଦାର୍ଥ ତ୍ୟାଗକରି ପୁଅ ନିକଟରେ ( ଦାୟିତ୍ୱରେ ) ସ୍ତ୍ରୀକୁ ରଖି ଅଥବା ନିଜ ସହିତ ନେଇ ବଣକୁ ଯିବେ ।।୩।।

**ଅଗ୍ନିହୋତ୍ରଂ ସମାଦାୟ ଗୃହ୍ୟଂ ଚାଗ୍ନିପରିଚ୍ଛଦମ୍ ।**
**ଗ୍ରାମାଦରଣ୍ୟଂ ନିଃସୃତ୍ୟ ନିବସେନ୍ନିୟତେନ୍ଦ୍ରିୟଃ ।**
(ମନୁ ୬।୪) ।।୪।।

**ଅର୍ଥ** – ଯେତେବେଳେ ଗୃହସ୍ଥ ବାନପ୍ରସ୍ଥ ହେବାପାଇଁ ଇଚ୍ଛା କରିବ, ସେ ତବେଳେ ଅଗ୍ନିହୋତ୍ରର ସାମଗ୍ରୀ ସଙ୍ଗରେ ନେଇ ଗ୍ରାମରୁ ବାହାରି ଅରଣ୍ୟରେ ଜିତେନ୍ଦ୍ରିୟ ହୋଇ ବାସକରିବେ ।।୪।।

ସ୍ୱାଧ୍ୟାୟେ ନିତ୍ୟଯୁକ୍ତଃ ସ୍ୟାଦ୍ଦାନ୍ତୋ ମୈତ୍ରଃ ସମାହିତଃ ।
ଦାତା ନିତ୍ୟମନାଦାତା ସର୍ବଭୂତାନୁକମ୍ପକଃ ॥୫॥
(ମନୁ ୬ । ୮ )

ତାପସେଷ୍ୱେବ ବିପ୍ରେଷୁ ଯାତ୍ରିକଂ ଭୈକ୍ଷମାହରେତ୍ ।
ଗୃହମେଧିଷୁ ଚାନ୍ୟେଷୁ ଦ୍ୱିଜେଷୁ ବନବାସିଷୁ ॥୬॥
ଏତାଶ୍ଚାନ୍ୟାଶ୍ଚ ସେବେତ ଦୀକ୍ଷା ବିପ୍ରୋ ବନେ ବସନ୍ ।
ବିବିଧାଶ୍ଚୌପନିଷଦୀରାତ୍ମସଂସିଦ୍ଧୟେ ଶ୍ରୁତୀଃ ॥୭॥
( ମନୁ· ଅ. ୬ । ୨୭, ୨୯ ॥ )

ଅର୍ଥ– ସନ୍ଧ୍ୟ ଅରଣ୍ୟରେ ବେଦାଦି ଶାସ୍ତ୍ରର ଅଧ୍ୟୟନ ଓ ଅଧ୍ୟାପନରେ ନିତ୍ୟଯୁକ୍ତ ହୋଇ ମନ ଓ ଇନ୍ଦ୍ରିୟଙ୍କୁ ଜୟ କରିବେ । ଯଦି ସ୍ତ୍ରୀ ମଧ୍ୟ ପାଖରେ ଥାଏ, ତେବେ ତା'ଠାରୁ ସେବାଗ୍ରହଣ ଛଡ଼ା କଦାପି ବିଷୟଭୋଗ ଅର୍ଥାତ୍ ଆସକ୍ତି ରଖିବେ ନାହିଁ । ସମସ୍ତଙ୍କ ସହିତ ମିତ୍ରଭାବ ରଖିବେ, ସାବଧାନର ସହିତ ରହିବେ, ନିତ୍ୟ କିଛି ଦାନକରିବେ, କିନ୍ତୁ କାହାଠାରୁ କିଛି ଗ୍ରହଣ କରିବେନାହିଁ । ସମସ୍ତ ଜୀବପ୍ରତି ଅନୁକଂପା ରଖିବେ ॥୫॥

ଜଙ୍ଗଲରେ ଅଧ୍ୟାପକ ଓ ଯୋଗାଭ୍ୟାସୀ ତପସ୍ୱୀ, ଧର୍ମାତ୍ମା ତଥା ବିଦ୍ୱାନ୍ ବ୍ୟକ୍ତିମାନେ ଥିଲେ ଏବଂ ଗୃହସ୍ଥ, ବା ବାନପ୍ରସ୍ଥ, ବନବାସୀଙ୍କ ଗୃହରୁ ଭିକ୍ଷା ଗ୍ରହଣକରିବେ ॥୬॥



ଏହିଭଳି ବଣରେ ବାସକରି ଏହିସବୁ ଓ ଅନ୍ୟଔଷଧି ମାନଙ୍କର ସେବନ କରିବେ । ଆତ୍ମା ଓ ପରମାତ୍ମା ବିଷୟକ ଜ୍ଞାନନିହିତ ନାନା ପ୍ରକାର ଉପନିଷଦ୍ ଅର୍ଥାତ୍ ଜ୍ଞାନ ଓ ଉପାସନାଦି ବିଧାୟକ ଶ୍ରୁତିସମୂହର ଅର୍ଥ ବିଚାରକରି ରହିବେ । ଏହିପରି ଭାବରେ ଯେତେଦିନ ଯାଏଁ ସନ୍ୟାସ ଗ୍ରହଣର ଇଚ୍ଛା ନହେବ ସେତେଦିନ ପର୍ଯ୍ୟନ୍ତ ବାନପ୍ରସ୍ଥାଶ୍ରମରେ ହିଁ ରହିବେ ॥୭॥

ଅଥ ବିଧିଃ – ବାନପ୍ରସ୍ଥାଶ୍ରମ ଗ୍ରହଣର ସମସ୍ତ ୫୦ବର୍ଷ ବୟସ ପରେ । ଯେତେବେଳେ ପୁତ୍ରର ପୁତ୍ରହେବ, ସେତେବେଳେ ସ୍ତ୍ରୀ, ପୁଅ, ଭାଇ, ବନ୍ଧୁ, ପୁତ୍ରବଧୂ ସମସ୍ତଙ୍କୁ ଗୃହାଶ୍ରମର ଶିକ୍ଷାଦେଇ ଜଙ୍ଗଲକୁ ଯାତ୍ରାକରିବାପାଇଁ ପ୍ରସ୍ତୁତ ହେବେ । ସ୍ତ୍ରୀ ଯିବାକୁ ଚାହିଁଲେ ସଙ୍ଗରେ ନେଇଯିବେ, ନଚେତ୍ ଜ୍ୟେଷ୍ଠ ପୁତ୍ରର ହସ୍ତରେ ସମର୍ପଣ କରି କହିବେ—"ଏହାର ଯଥାଯୋଗ୍ୟ ସେବାକରି ରହ ।" ଏବଂ ସ୍ତ୍ରୀକୁ ଏହି ଉପଦେଶ ଦେବେ– "ତୁମେ ସର୍ବଦା ସନ୍ତାନସନ୍ତତିଙ୍କୁ ଧର୍ମମାର୍ଗରେ ଚଳାଇବ ଏବଂ ଅଧର୍ମ ପଥରୁ ନିବୃତ୍ତ ରହିବାପାଇଁ ଉପଦେଶ ଦେବ ।"

ତାପରେ ପୃଷ୍ଠା ୭୮–୮୦ ଲିଖିତ ବିଧିବିଧାନ ଅନୁସାରେ ଯଜ୍ଞଶାଳା, ବେଦୀ ଇତ୍ୟାଦି ସବୁକିଛି ପ୍ରସ୍ତୁତ କରିବେ । ପୃଷ୍ଠା ୨୦-୨୧ ଲିଖିତ ଘୃତାଦି ସବୁ ସାମଗ୍ରୀ ଏକତ୍ର କରି ୨୮-୨୯ ପୃଷ୍ଠା ବିଧି ଅନୁସାରେ **ଓ୩ମ୍ ଭୂର୍ଭୁବଃ ସ୍ୱର୍ଦ୍ଦ୍ୟୌରିବ ଭୂମ୍ନା°** ଏହି ମନ୍ତ୍ରରେ ଅଗ୍ନ୍ୟାଧାନ

ଏବଂ ଅୟନ୍ତ ଇଧ୍ମଂ ଇତ୍ୟାଦି ମନ୍ତ୍ରରେ ସମିଧ ଦାନକରିବେ । ତତ୍ପରେ ୩୦ ପୃଷ୍ଠାନୁସାରେ ଓମ୍ ଅଦିତେଽନୁମନ୍ୟସ୍ୱ ॥ ଇତ୍ୟାଦି ଗୃହ୍ୟୋକ୍ତ ମନ୍ତ୍ରରେ କୁଣ୍ଡର ଚତୁର୍ଦ୍ଦିଗରେ ଜଳ-ପ୍ରୋକ୍ଷଣ କରି ପୁଣି ଆଘାରବାଜ୍ୟଭାଗାହୁତି ଓ ଘୃତରେ ବ୍ୟାହୃତି ଆଜ୍ୟାହୁତି ଦେବେ ଏବଂ ସ୍ୱସ୍ତିବାଚନ ଓ ଶାନ୍ତିକରଣ* କରି ସ୍ଥାଲୀପାକ ପ୍ରସ୍ତୁତ କରି ତା' ଉପରେ ଘୃତ ସିଞ୍ଚନ କରିବେ ଏବଂ ନିମ୍ନଲିଖିତ ମନ୍ତ୍ରରେ ଆହୁତି ପ୍ରଦାନ କରିବେ—

ଓମ୍ କାୟ ସ୍ୱାହା । କସ୍ମୈ ସ୍ୱାହା । କତମସ୍ମୈ ସ୍ୱାହା । ଆଧିମାଧୀତାୟ ସ୍ୱାହା । ମନଃ ପ୍ରଜାପତୟେ ସ୍ୱାହା । ଚିତ୍ତଂ ବିଜ୍ଞାତାୟାଦିତ୍ୟୈ ସ୍ୱାହା । ଅଦିତ୍ୟୈ ମହ୍ୟୈ ସ୍ୱାହା । ଅଦିତ୍ୟୈ ସୁମୃଡ଼ୀକାୟୈ ସ୍ୱାହା । ସରସ୍ୱତ୍ୟୈ ସ୍ୱାହା । ସରସ୍ୱତ୍ୟୈ ପାବ-କାୟୈ ସ୍ୱାହା । ସରସ୍ୱତ୍ୟୈ ବୃହତ୍ୟୈ ସ୍ୱାହା । ପୂଷ୍ଣେ ସ୍ୱାହା । ପୂଷ୍ଣେ ପ୍ରପଥ୍ୟାୟ ସ୍ୱାହା । ପୂଷ୍ଣେ ନରନ୍ଧିଷାୟ ସ୍ୱାହା । ତ୍ୱଷ୍ଟ୍ରେ ସ୍ୱାହା । ତ୍ୱଷ୍ଟ୍ରେ ତୁରୀପାୟ ସ୍ୱାହା । ତ୍ୱଷ୍ଟ୍ରେ ପୁରୁରୂପାୟ ସ୍ୱାହା ।

---

* ସ୍ୱସ୍ତିବାଚନ, ଶାନ୍ତିକରଣ ହୋମ ପୂର୍ବରୁ ବିଧାନ ଅଛି । ପୃଷ୍ଠା ୩୨୯ ଟିପ୍ପଣୀ ଦ୍ରଷ୍ଟବ୍ୟ ॥ ( ସମ୍ପାଦକ )

ꣳଭୁବନସ୍ୟ ପତଯେ୍ସ ସ୍ୱାହା । ଅଧିପତଯେ୍ସ ସ୍ୱାହା । ପ୍ରଜାପତଯେ୍ସ ସ୍ୱାହା ᳡ । ଓମ୍ ଆୟୁର୍ଯଜ୍ଞେନ କଳ୍ପତାଂ ସ୍ୱାହା । ପ୍ରାଣୋ ଯଜ୍ଞେନ କଳ୍ପତାଂ ସ୍ୱାହା । ଅପାନୋ ଯଜ୍ଞେନ କଳ୍ପତାଂ ସ୍ୱାହା । ବ୍ୟାନୋ ଯଜ୍ଞେନ କଳ୍ପତାଂ ସ୍ୱାହା । ଉଦାନୋ ଯଜ୍ଞେନ କଳ୍ପତାଂ ସ୍ୱାହା । ସମାନୋ ଯଜ୍ଞେନ କଳ୍ପତାଂ ସ୍ୱାହା । ଚକ୍ଷୁର୍ଯଜ୍ଞେନ କଳ୍ପତାଂ ସ୍ୱାହା । ଶ୍ରୋତ୍ରଂ ଯଜ୍ଞେନ କଳ୍ପତାଂ ସ୍ୱାହା । ବାଗ୍ ଯଜ୍ଞେନ କଳ୍ପତାଂ ସ୍ୱାହା । ମନୋ ଯଜ୍ଞେନ କଳ୍ପତାଂ ସ୍ୱାହା । ଆତ୍ମା ଯଜ୍ଞେନ କଳ୍ପତାଂ ସ୍ୱାହା । ବ୍ରହ୍ମା ଯଜ୍ଞେନ କଳ୍ପତାଂ ସ୍ୱାହା । ଜ୍ୟୋତିର୍ଯଜ୍ଞେନ କଳ୍ପତାଂ ସ୍ୱାହା । ସ୍ୱର୍ଯଜ୍ଞେନ କଳ୍ପତାଂ ସ୍ୱାହା । ପୃଷ୍ଠଂ ଯଜ୍ଞେନ କଳ୍ପତାଂ ସ୍ୱାହା । ଯଜ୍ଞୋ ଯଜ୍ଞେନ କଳ୍ପତାଂ ସ୍ୱାହା⁕ । ଏକସ୍ମୈ ସ୍ୱାହା । ଦ୍ୱାଭ୍ୟାଂ ସ୍ୱାହା । ଶତାୟ ସ୍ୱାହା । ଏକଶତାୟ ସ୍ୱାହା । ବ୍ୟୁଷ୍ଟ୍ୟୈ ସ୍ୱାହା । ସ୍ୱର୍ଗାୟ ସ୍ୱାହା× ॥

---

ꣳ ଯଜୁ ଅ ୨୨ । ମ· ୨୦ ॥ ᳡ ଯଜୁ ଅ ୨୨ । ମ. ୩୨ ॥

⁕ ଯଜୁ ଅ ୨୨ । ମ· ୩୩ ॥ × ଯଜୁ ଅ ୨୨ । ମ. ୩୪ ॥

ଏହିସବୁ ମନ୍ତ୍ରରେ ଗୋଟିଏ ଗୋଟିଏ କରି ୪୩ଟି ସ୍ଥାଳୀପାକର ଆଜ୍ୟାହୁତି ଦେବେ ପୁନଶ୍ଚ ୩୨ ପୃଷ୍ଠା ଲିଖିତ ପ୍ରମାଣେ ଚାରିଗୋଟି ବ୍ୟାହୃତି ଆହୁତି ଦେଇ ୩୭-୩୮ ପୃଷ୍ଠା ଲିଖିତ ବିଧିରେ ସାମଗାନ କରିବେ। ତାପରେ ଆତ୍ମୀୟ-ସ୍ୱଜନ ବନ୍ଧୁ ବାନ୍ଧବଗଣଙ୍କ ସହିତ ଦେଖାସାକ୍ଷାତ କରି ପୁତ୍ରାଦିଙ୍କ ଉପରେ ଗୃହର ସମସ୍ତ ଭାର ଅର୍ପଣ ପୂର୍ବକ ଅଗ୍ନି-ହୋତ୍ରର ସାମଗ୍ରୀ ସଙ୍ଗରେନେଇ ବନକୁ ଗମନ କରିବେ। ସେଠାରେ ଏକାନ୍ତରେ ବାସକରି ମହାତ୍ମାଗଣଙ୍କ ସହିତ ସତ୍ସଙ୍ଗ, ଯୋଗାଭ୍ୟାସ ଓ ଶାସ୍ତ୍ରାଲୋଚନା କରିବେ ଏବଂ ସ୍ୱାତ୍ମା ଓ ପରମାତ୍ମାଙ୍କ ସାକ୍ଷାତ୍ ଲାଭପାଇଁ ପ୍ରଯତ୍ନ କରିବେ।

॥ ଇତି ବାନପ୍ରସ୍ଥସଂସ୍କାର ବିଧିଃ ସମାପ୍ତଃ ॥

# ଅଥ ସନ୍ନ୍ୟାସସଂସ୍କାର ବିଧିଂ ବକ୍ଷ୍ୟାମଃ

ସଂନ୍ୟାସ ସଂସ୍କାର ତାହାକୁ କୁହାଯାଏ– ଯେ ମୋହ ଆଦି ଆବରଣ, ପକ୍ଷପାତ ଛାଡ଼ି ବିରକ୍ତ ହୋଇ ସାରା ପୃଥିବୀରେ ପରୋପକାର ପାଇଁ ବିଚରଣ କରେ । ଅର୍ଥାତ୍—

ସମ୍ୟକ୍ ନ୍ୟସ୍ୟନ୍ତ୍ୟଧର୍ମାଚରଣାନି ଯେନ ବା ସମ୍ୟକ୍ ନିତ୍ୟଂ ସତ୍କର୍ମସ୍ୱାସ୍ତ ଉପବିଶନ୍ତି ସ୍ଥିରୀଭବନ୍ତି ଯେନ ସ ସନ୍ନ୍ୟାସଃ, ସନ୍ନ୍ୟାସୋ ବିଦ୍ୟତେ ଯସ୍ୟ ସ ସଂନ୍ନ୍ୟାସୀ ॥

## କାଳ

ପ୍ରଥମେ ଯାହା ବାନପ୍ରସ୍ଥ ଆଶ୍ରମରେ ବର୍ଣ୍ଣନା କରାଯାଇଛି ଯଥା—ବ୍ରହ୍ମଚର୍ଯ୍ୟ ପୂର୍ଣ୍ଣକରି ଗୃହସ୍ଥ ଏବଂ ଗୃହସ୍ଥ ହୋଇ ବନସ୍ଥ, ବନସ୍ଥ ହୋଇ ସନ୍ନ୍ୟାସୀ ହୁଏ ଏହା **କ୍ରମ-ସନ୍ନ୍ୟାସ,** ଅର୍ଥାତ୍ କ୍ରମାନୁସାରେ ପ୍ରତ୍ୟେକ ଆଶ୍ରମ ଅନୁଷ୍ଠାନ କରି କରି ବୃଦ୍ଧାବସ୍ଥାରେ ଯେ ସନ୍ନ୍ୟାସ ଗ୍ରହଣକରେ ତାହାକୁ **କ୍ରମ ସନ୍ନ୍ୟାସ** କୁହାଯାଏ ।

## ଦ୍ୱିତୀୟ ପ୍ରକାର

**ଯଦହରେବ ବିରଜେତ୍ ତଦହରେବ ପ୍ରବ୍ରଜେଦ୍-ବନାଦ୍ ବା ଗୃହାଦ୍ ବା ॥**

ଏହା ବ୍ରାହ୍ମଣ ଗ୍ରନ୍ଥର ବାକ୍ୟ ଅଟେ ।



ଅର୍ଥ — ଯେଉଁଦିନ ଦୃଢବୈରାଗ୍ୟ ପ୍ରାପ୍ତହେବ ସେହିଦିନ ବାନପ୍ରସ୍ଥର ସମୟ ପୂର୍ଣ୍ଣ ନହୋଇଥିଲେ ମଧ୍ୟ ଅଥବା ବାନପ୍ରସ୍ଥ ଆଶ୍ରମରେ ପ୍ରବେଶ ନକରି ଗୃହସ୍ଥାଶ୍ରମରୁ ହିଁ ସନ୍ନ୍ୟାସା-ଶ୍ରମ ଗ୍ରହଣକରିବା ଉଚିତ, କାରଣ ସନ୍ନ୍ୟାସରେ ଦୃଢବୈରାଗ୍ୟ ଏବଂ ଯଥାର୍ଥ ଜ୍ଞାନ ହିଁ ପ୍ରଧାନ କାରଣ ଅଟେ ।

## ତୃତୀୟ ପ୍ରକାର

ବ୍ରହ୍ମଚର୍ଯ୍ୟାଦେବ ପ୍ରବ୍ରଜେତ୍ ॥

ଏହା ମଧ୍ୟ ବ୍ରାହ୍ମଣ ଗ୍ରନ୍ଥର ବଚନ ଅଟେ !

ଯଦି ପୂର୍ଣ୍ଣ ଅଖଣ୍ଡିତ ବ୍ରହ୍ମଚର୍ଯ୍ୟ, ବାସ୍ତବିକ ବୈରାଗ୍ୟ, ଏବଂ ଯଥାର୍ଥ ଜ୍ଞାନପ୍ରାପ୍ତ ହୋଇ ବିଷୟବାସନା ଆତ୍ମାଠାରୁ ସମ୍ପୂର୍ଣ୍ଣ ଦୂରେଇଯାଏ, ପକ୍ଷପାତରହିତ, ସର୍ବସାଧାରଣଙ୍କର ଉପକାର ନିମନ୍ତେ ଇଚ୍ଛା ଜାଗ୍ରତ ହୁଏ ଏବଂ ସେ ଦୃଢ଼-ଭାବରେ ନିଶ୍ଚୟ କରନ୍ତି ଯେ — ମୁଁ ମରଣ ପର୍ଯ୍ୟନ୍ତ ବାସ୍ତବିକ୍ ସନ୍ନ୍ୟାସ ଧର୍ମକୁ ପାଳନ କରିପାରିବି, ତାହାହେଲେ ସେ ଗୃହସ୍ଥାଶ୍ରମ ଓ ବାନପ୍ରସ୍ଥାଶ୍ରମ ନକରି ସୁଦ୍ଧା ବ୍ରହ୍ମଚର୍ଯ୍ୟ ଆଶ୍ରମ ପୂର୍ଣ୍ଣକରି ସନ୍ନ୍ୟାସାଶ୍ରମ ଗ୍ରହଣକରିବା ଉଚିତ ।

## ଅତ୍ର ବେଦପ୍ରମାଣାନି

ଶର୍ଯଣାବତି ସୋମମିନ୍ଦ୍ରଃ ପିବତୁ ବୃତ୍ରହା ।
ବଲଂ ଦଧାନ ଆତ୍ମନି କରିଷ୍ୟନ୍ ବୀର୍ଯଂ ମହଦିନ୍ଦ୍ରା
ୟେନ୍ଦୋ ପରିସ୍ରବ ॥୧॥

ଆ ପବସ୍ୱ ଦଶାଂ ପତ ଆର୍ଜୀକାତ୍ ସୋମ ମୀଢ୍ୱଃ ।
ଋତବାକେନ ସତ୍ୟେନ ଶ୍ରଦ୍ଧୟା ତପସା ସୁତ
ଇନ୍ଦ୍ରାୟେନ୍ଦୋ ପରିସ୍ରବ ॥୨॥
ଋ. ମ. ୯।୧୧୩।୧-୨

**ଅର୍ଥ**—ମୁଁ ଈଶ୍ୱର ସନ୍ନ୍ୟାସ ଗ୍ରହଣ କରୁଥିବା ମନୁଷ୍ୟମାନଙ୍କୁ ଉପଦେଶ ଦେଉଛି ଯେ—ଯେପରି ( ବୃତହା ) ମେଘକୁ ନାଶ କରୁଥିବା ( ଇନ୍ଦ୍ରଃ ) ସୂର୍ଯ୍ୟ ( ଶର୍ଯ୍ୟଣାବତ ) ହିଂସମାୟୁ ପଦାର୍ଥଯୁକ୍ତ ( କଳୁଷଯୁକ୍ତ ) ଭୂତଳସ୍ଥିତ ( ସୋମମ୍ ) ରସକୁ ଗ୍ରହଣକରେ ସେହିପରି ସନ୍ନ୍ୟାସ ଆଚରଣ କରିବା ମନୁଷ୍ୟ ଉତ୍ତମ ମୂଳ ଏବଂ ଫଳର ରସ ( ପିବନ୍ତୁ ) ପାନକରନ୍ତୁ ଏବଂ ( ଆତ୍ମନ ) ନିଜ ଆତ୍ମାରେ ( ମହତ୍ ) ମହତ୍ ( ବୀର୍ଯ୍ୟଂ ) ସାମର୍ଥ୍ୟ ସଂଗ୍ରହ କରନ୍ତୁ:—ଏହିପରି ମୁଁ ଇଚ୍ଛାକରିଛି (ବଳଂ ଦଧାନଃ) ଉତ୍ତମବଳକୁ ଧାରଣକରି ( ଇନ୍ଦ୍ରାୟ ) ପରମୈଶ୍ୱର୍ଯ୍ୟ ନିମନ୍ତେ, ହେ ( ଇନ୍ଦୋ ) ଚନ୍ଦ୍ରମା ତୁଲ୍ୟ ସମସ୍ତଙ୍କୁ ଆନନ୍ଦ ପ୍ରଦାନକାରୀ ପୂର୍ଣ୍ଣ ବିଦ୍ୱାନ୍ ! ତୁମେ ସନ୍ନ୍ୟାସ ଆଚରଣକରି ସମସ୍ତଙ୍କ ଉପରେ ( ପରିସ୍ରବ ) ସତ୍-ଉପଦେଶର ବୃଷ୍ଟିକର ॥୧॥

ହେ ( ସୋମ ) ସୋମଗୁଣ ସମ୍ପନ୍ନ ! (ମିଢ୍ୱଃ) ସତ୍ୟଦ୍ୱାରା ସମସ୍ତଙ୍କ ଅନ୍ତଃକରଣକୁ ସିକ୍ତକାରୀ ! ( ଦଶାଂପତେ ) ସବୁଦିଗରେଥିବା ମନୁଷ୍ୟମାନଙ୍କୁ ବାସ୍ତବିକ୍ ଜ୍ଞାନପ୍ରଦାନ କରି ପାଳନ କରୁଥିବା (ଇନ୍ଦୋ) ଶାନ୍ତ ଗୁଣଯୁକ୍ତ ସନ୍ନ୍ୟାସିନ୍ ! ତୁମେ ( ଋତବାକେନ ) ଉଚିତ କଥନ ( ସତ୍ୟେନ ) ସତ୍ୟଭାଷଣ କରିବାଦ୍ୱାରା ( ଶ୍ରଦ୍ଧୟା ) ସତ୍ୟ ଧାରଣରେ ବାସ୍ତବିକ୍

ପ୍ରୀତି ଏବଂ (ତପସା) ପ୍ରାଣାୟାମ ଯୋଗାଭ୍ୟାସଦ୍ୱାରା (ଅର୍ଜୀକାତ୍) ସରଳତାରେ (ସୁତଃ) ନିଷ୍ପନ୍ନ ହୋଇ ନିଜର ଶରୀର ଇନ୍ଦ୍ରିୟ, ମନ, ବୁଦ୍ଧିକୁ (ଆପବସ୍ୱ) ପବିତ୍ର କର, (ଇନ୍ଦ୍ରାୟ) ପରମ ଐଶ୍ୱର୍ଯ୍ୟଯୁକ୍ତ ପରମାତ୍ମାଙ୍କ ନିମନ୍ତେ (ପରିସ୍ରବ) ସବୁଦିଗରୁ ଗମନ କର।

ଋତଂ ବଦନ୍ନୃତଦ୍ୟୁମ୍ନ ସତ୍ୟଂ ବଦନ୍ତ୍ସତ୍ୟ-
କର୍ମନ୍ ।
ଶ୍ରଦ୍ଧାଂ ବଦନ୍ତ୍ସୋମ ରାଜନ୍ ଧାତ୍ରା ସୋମ
ପରିଷ୍କୃତ ଇନ୍ଦ୍ରାୟେନ୍ଦୋ ପରିସ୍ରବ ॥୩॥

ଋ ମ. ୯ । ସୂ ୧୧୩ । ମଂ. ୪ ॥

ଅର୍ଥ—ହେ (ଋତଦ୍ୟୁମ୍ନ) ଯଥାର୍ଥ ଧନ ଏବଂ ସତ୍ୟ କୀର୍ତ୍ତିବାନ୍ ଯଜ୍ଞେଶ୍ୱର ! (ଋତଂ ବଦନ୍) ପକ୍ଷପାତରହିତ ସତ୍ୟ ଭାଷଣକାରୀ, ହେ (ସତ୍ୟକର୍ମନ୍) ସତ୍ୟବେଦୋକ୍ତ କର୍ମ କରୁଥିବା ସନ୍ନ୍ୟାସିନ୍ ! ହେ (ସତ୍ୟଂ ବଦନ୍) ସତ୍ୟକଥା (ଶ୍ରଦ୍ଧାମ୍) ସତ୍ୟ ଧାରଣ କରି ଆନନ୍ଦ ପାଇବାପାଇଁ (ବଦନ୍) ଉପଦେଶ ଦେଉଥିବା (ସୋମ) ଶାନ୍ତଗୁଣ ସମ୍ପନ୍ନ (ରାଜନ୍) ପ୍ରତ୍ୟେକ ଦିଗରୁ ପ୍ରକାଶଯୁକ୍ତ ଆତ୍ମା ଧାରଣ କରିଥିବା (ସୋମ) ଯୋଗ ଐଶ୍ୱର୍ଯ୍ୟଯୁକ୍ତ (ଇନ୍ଦୋ) ସମସ୍ତଙ୍କୁ ଆନନ୍ଦ ଦେଉଥିବା ସନ୍ନ୍ୟାସିନ୍ ! ତୁମେ (ଧାତ୍ରା) ସକଳ ବିଶ୍ୱକୁ ଧାରଣ କରିଥିବା ପରମାତ୍ମାଙ୍କ ଦ୍ୱାରା ଯୋଗାଭ୍ୟାସକରି (ପରିଷ୍କୃତ) ଶୁଦ୍ଧ-ହୋଇ (ଇନ୍ଦ୍ରାୟ) ଯୋଗରୁ ଉତ୍ପନ୍ନ ହେଉଥିବା ପରମ ଐଶ୍ୱର୍ଯ୍ୟର ସିଦ୍ଧି ପାଇଁ (ପରିସ୍ରବ) ଯଥାର୍ଥ ପୁରୁଷାର୍ଥ କର ॥୩॥

ଯତ୍ର ବ୍ରହ୍ମା ପବମାନ ଛନ୍ଦସ୍ୟାଂ ବାଚଂ ବଦନ୍ ।
ଗ୍ରାବ୍‌ଣା ସୋମେ ମହୀୟତେ ସୋମେନାନନ୍ଦଂ ଜନ
ୟନ୍ନିନ୍ଦ୍ରାୟେନ୍ଦୋ ପରିସ୍ରବ ॥୪॥
ଋ. ମ. ୯ । ସୂ ୧୧୩ । ମଂ ୬ ॥

ଅର୍ଥ—(ଛନ୍ଦସ୍ୟାମ୍) ସ୍ୱତନ୍ତ୍ରତାଯୁକ୍ତ (ବାଚମ୍) ବାଣୀକୁ (ବଦନ୍) କହି, (ସୋମେନ) ବିଦ୍ୟା, ଯୋଗାଭ୍ୟାସ ଏବଂ ପରମେଶ୍ୱରଙ୍କର ଭକ୍ତିଦ୍ୱାରା (ଆନନ୍ଦମ୍) ସମସ୍ତଙ୍କ ପାଇଁ ଆନନ୍ଦକୁ (ଜନୟନ୍) ପ୍ରକଟ କରି (ଇନ୍ଦୋ) ହେ ଆନନ୍ଦ ପ୍ରଦ ! (ପବମାନ) ପବିତ୍ର ଆତ୍ମାକୁ ଅଧିକ ପବିତ୍ର କରୁଥିବା ସନ୍ୟାସିନ୍ ! (ଯତ୍ର) ଯେଉଁ (ସୋମେ) ପରମ ଐଶ୍ୱର୍ଯ୍ୟ-ଯୁକ୍ତ ପରମାତ୍ମାଙ୍କ ନିକଟରେ (ବ୍ରହ୍ମା) ଚାରି ବେଦର ମର୍ମଜ୍ଞ ବିଦ୍ୱାନ୍ (ମହୀୟତେ) ମହତ୍ତ୍ୱ ଲାଭକରି ସତ୍କାରକୁ ପ୍ରାପ୍ତ-ହୁଏ । ଯେଉଁପରି (ଗ୍ରାବଣା) ମେଘଦ୍ୱାରା ସମସ୍ତ ଜଗତ୍ ଆନନ୍ଦିତ ହୁଏ, ସେହିପରି ତୁମେ ସମସ୍ତଙ୍କୁ (ଇନ୍ଦ୍ରାୟ) ପରମ ଐଶ୍ୱର୍ଯ୍ୟଯୁକ୍ତ ମୋକ୍ଷର ଆନନ୍ଦ ଦେବାପାଇଁ ପ୍ରତ୍ୟେକ ସାଧକମାନଙ୍କୁ (ପରିସ୍ରବ) ପ୍ରତ୍ୟେକ ଦିଗରୁ ପ୍ରାପ୍ତ କରାଅ ॥୪॥

ଯତ୍ର ଜ୍ୟୋତିରଜସ୍ରଂ ଯସ୍ମିନ ଲୋକେ ସ୍ୱର୍ହିତମ୍ ।
ତସ୍ମିନ୍ ମାଂ ଧେହି ପବମାନାମୃତେ ଲୋକେ
ଅକ୍ଷିତ ଇନ୍ଦ୍ରାୟେନ୍ଦୋ ପରି ସ୍ରବ ॥୫॥
॥ଋ. ମ. ୯ । ସୂ ୧୧୩ । ମଂ ୭ ॥

ଅର୍ଥ—ହେ ( ପବମାନ ) ଅବିଦ୍ୟାଦି କ୍ଳେଶକୁ ନାଶ କରୁଥିବା ପବିତ୍ର ସ୍ୱରୂପ ( ଇନ୍ଦୋ ) ସଚ୍ଚିଦାନନ୍ଦଦାୟକ ପରମାତ୍ମନ୍! ( ଯତ୍ର ) ଯେଉଁଠାରେ, ଆପଣଙ୍କ ସ୍ୱରୂପରେ ( ଅଜସ୍ରମ୍ ) ନିରନ୍ତର ବ୍ୟାପକ ଆପଣଙ୍କର [ ଜ୍ୟୋତିଃ ] ତେଜ ରହିଛି [ ଯସ୍ମିନ୍ ] ଯେଉଁ [ ଲୋକେ ] ଜ୍ଞାନଦ୍ୱାରା ଦର୍ଶନ ଯୋଗ୍ୟ ଆପଣଙ୍କର ନିକଟରେ [ ସ୍ୱଃ ] ନିତ୍ୟ ସୁଖ [ହିତମ୍ ] ରହିଅଛି, [ତସ୍ମିନ୍] ସେହି (ଅମୃତ) ଜନ୍ମ-ମରଣ ଏବଂ [ଅକ୍ଷିତେ] ବିନାଶ ରହିତ [ଲୋକେ] ଦ୍ରଷ୍ଟବ୍ୟ ନିଜର ସ୍ୱରୂପରେ ଆପଣ [ମା] ମୋତେ [ଇନ୍ଦ୍ରାୟ] ପରମ ଐଶ୍ୱର୍ଯ୍ୟ ପ୍ରାପ୍ତି ନିମନ୍ତେ [ଧେହି] କୃପାକରି ଧାରଣକରନ୍ତୁ ଏବଂ ମୋ ଉପରେ ମାତୃତୁଲ୍ୟ କୃପା ପରବଶ ହୋଇ [ପରିସ୍ରବ] ଆନନ୍ଦ ବର୍ଷା କରନ୍ତୁ ।

ଯତ୍ର ରାଜା ବୈବସ୍ୱତୋ ଯତ୍ରାବରୋଧନଂ ଦିବଃ ।
ଯତ୍ରା ମୂର୍ଯ୍ୟହ୍ୱତୀରାପସ୍ତତ୍ର ମାମମୃତଂ କୃଧୀନ୍ଦ୍ରାୟେନ୍ଦୋ
ପରିସ୍ରବଃ ॥ ଋ. ୯।୧୧୩।୮ ॥ ॥୭॥

ଅର୍ଥ—ହେ [ଇନ୍ଦୋ] ଆନନ୍ଦଦାୟକ ପରମାତ୍ମନ୍! [ଯତ୍ର] [ଯେଉଁ] ଆପଣଙ୍କ ଭିତରେ [ବୈବସ୍ୱତଃ] ସୂର୍ଯ୍ୟଙ୍କର ପ୍ରକାଶ [ରାଜା] ପ୍ରକାଶମାନ ହେଉଅଛି । [ଯତ୍ର] ଆପଣଙ୍କ ମଧ୍ୟରେ [ଦିବଃ] ବିଜୁଳି ବା ଅଶୁଦ୍ଧ କାମନାର [ ଅବରୋଧନମ୍ ] ପ୍ରତିବନ୍ଧ ରହିଅଛି । [ଯତ୍ର] ଯେଉଁ ଆପଣଙ୍କ ନିକଟରେ [ଅମୂଃ] ସେହି କାରଣ ରୂପ [ଯହ୍ୱତୀଃ] ଅଧିକ ବ୍ୟାପକ

ଆକାଶସ୍ଥ [ଆପଃ] ପ୍ରାଣପ୍ରଦ ବାୟୁ ରହିଅଛି । [ତତ୍] ସେହି ନଜର ସ୍ୱରୂପରେ [ମାମ୍] ମୋତେ [ଅମୃତମ୍] ମୋକ୍ଷ-ପ୍ରଦାନ [କୃଧି] କରନ୍ତୁ । [ଇନ୍ଦ୍ରାୟ] ପରମଐଶ୍ୱର୍ଯ୍ୟ ନିମନ୍ତେ ( ପରିସ୍ରବ ) ସଦୟହୋଇ ( ଆର୍ଦ୍ରଭାବରେ ) ଆପଣ ମୋତେ ପ୍ରାପ୍ତ ହୁଅନ୍ତୁ ॥୭॥

**ଯତ୍ରାନୁକାମଂ ଚରଣଂ ତ୍ରିନାକେ ତ୍ରିଦିବେ ଦିବଃ ।**
**ଲୋକା ଯତ୍ର ଜ୍ୟୋତିଷ୍ମନ୍ତସ୍ତତ୍ର ମାମମୃତଂ କୃଧୀ-**
**ନ୍ଦ୍ରାୟେନ୍ଦୋ ପରିସ୍ରବ ॥୭॥**

॥ ଋ· ୯ । ୧୧୩ । ୯ ॥

ଅର୍ଥ -- ହେ, ପରମାତ୍ମନ୍ ! (ଯତ୍ର) ଯେଉଁ ଆପଣଙ୍କ ନିକଟରେ (ଅନୁକାମନ୍) ଇଚ୍ଛା ଅନୁରୂପ ସ୍ୱତନ୍ତ୍ର (ଚରଣମ୍) ବିହାର [ବିଚରଣ କରିବାର ସୁବିଧା] ରହିଛି, (ଯତ୍ର) ଯେଉଁ (ତ୍ରିନାକେ) ତ୍ରିବିଧ ଅର୍ଥାତ୍ ଆଧ୍ୟାତ୍ମିକ, ଆଧିଭୌତିକ, ଏବଂ ଆଧିଦୈବିକ ଦୁଃଖରହିତ (ତ୍ରିଦିବେ) ତିନି ସୂର୍ଯ୍ୟ ବିଦ୍ୟୁତ୍ ଏବଂ ଭୌମ୍ୟ ( ଭୂମି ସମ୍ବନ୍ଧୀ ) ଅଗ୍ନିରୁ ପ୍ରକାଶିତ ସୁଖ ସ୍ୱରୂପରେ ( ଦିବଃ ) କାମନା କରିବା ଯୋଗ୍ୟ ଶୁଦ୍ଧ କାମନା କରୁଥିବା, (ଲୋକାଃ) ଯଥାର୍ଥ ଜ୍ଞାନଯୁକ୍ତ, ( ଜ୍ୟୋତିଷ୍ମନ୍ତଃ ) ଶୁଦ୍ଧ ବିଜ୍ଞାନଯୁକ୍ତ ମୁକ୍ତିକୁ ପ୍ରାପ୍ତହୋଇ ସିଦ୍ଧ ପୁରୁଷ ବିଚରଣ କରନ୍ତି । (ତତ୍) ସେହି ସ୍ୱ ସ୍ୱରୂପରେ ( ମାମ ) ମୋତେ (ଅମୃତମ୍) ମୋକ୍ଷପ୍ରାପ୍ତ ( କୃଧି ) କରନ୍ତୁ ଏବଂ (ଇନ୍ଦ୍ରାୟ) ସେହି ପରମ ଆନନ୍ଦ ଐଶ୍ୱର୍ଯ୍ୟ ନିମନ୍ତେ ( ପରିସ୍ରବ ) କୃପା-କରି (ମୋନିମିତ୍ତେ) ପ୍ରାପ୍ତ ହୁଅନ୍ତୁ ॥୭॥

ଯତ୍ର କାମା ନିକାମାଶ୍ଚ ଯତ୍ର ବ୍ରଧ୍ନସ୍ୟ ବିଷ୍ଟପମ୍ ।
ସ୍ୱଧା ଚ ଯତ୍ର ତୃପ୍ତିଶ୍ଚ ତତ୍ର ମାମମୃତଂ କୃଧୀ-
ନ୍ଦ୍ରାୟେନ୍ଦୋ ପରିସ୍ରବ ॥୮॥ ଋ. ୯।୧୧୩।୧୦ ॥

ଅର୍ଥ—ହେ (ଇନ୍ଦୋ) ନିଷ୍କାମ ଆନନ୍ଦପ୍ରଦ, ସଚ୍ଚିଦାନନ୍ଦ ସ୍ୱରୂପ ପରମାତ୍ମନ୍ ! (ଯତ୍ର) ଯେଉଁ ଆପଣଙ୍କ ନିକଟରେ (କାମାଃ) ସମସ୍ତ କାମନା (ନିକାମାଃ) ଏବଂ ଅଭିଳାଷ ଦୂରେଇ ଯାଏ (ଚ) ଏବଂ (ଯତ୍ର) (ଯେଉଁ) ଆପଣଙ୍କ ନିକଟରେ (ବ୍ରଧ୍ନସ୍ୟ) ସବୁଠାରୁ ବଡ ପ୍ରକାଶମାନ ସୂର୍ଯ୍ୟଙ୍କର (ବିଷ୍ଟପମ୍) ବିଶିଷ୍ଟ ସୁଖ (ଚ) ଏବଂ (ଯତ୍ର) [ ଯେଉଁ ] ଆପଣଙ୍କ ନିକଟରେ (ସ୍ୱଧା) ନିଜର ଧାରଣ ଶକ୍ତି ଏବଂ (ତୃପ୍ତିଃ) ପୂର୍ଣ୍ଣ ତୃପ୍ତି ରହିଅଛି (ତତ୍ର) ସେହି ନିଜର ସ୍ୱରୂପରେ (ମାମ୍) ମୋତେ (ଅମୃତମ୍) ମୁକ୍ତିପ୍ରାପ୍ତ (କୃଧି) କରନ୍ତୁ । ତଥା (ଇନ୍ଦ୍ରାୟ) ସବ ଦୁଃଖ ନିବାରଣ ନିମନ୍ତେ ଆପଣ ମୋ ଉପରେ (ପରିସ୍ରବ) କରୁଣା ଦୃଷ୍ଟି ରଖନ୍ତୁ ॥୮॥

ଯତ୍ରାନନ୍ଦାଶ୍ଚ ମୋଦାଶ୍ଚ ମୁଦଃ ପ୍ରମୁଦ ଆସତେ ।
କାମସ୍ୟ ଯତ୍ରାପ୍ତାଃ କାମାସ୍ତତ୍ର ମାମମୃତଂ କୃଧୀ-
ନ୍ଦ୍ରାୟେନ୍ଦୋ ପରିସ୍ରବ ॥୯॥

ଅର୍ଥ—ହେ (ଇନ୍ଦୋ) ସଦାନନ୍ଦଯୁକ୍ତ ଜଗଦୀଶ୍ୱର ! (ଯତ୍ର) ଆପଣଙ୍କଠାରେ (ଆନନ୍ଦାଃ) ସମ୍ପୂର୍ଣ୍ଣ ସଂବୃଦ୍ଧି (ଚ) ଏବଂ (ମୋଦାଃ) ସମ୍ପୂର୍ଣ୍ଣ ହର୍ଷ (ମୁଦଃ) ସମ୍ପୂର୍ଣ୍ଣ ପ୍ରସନ୍ନତା (ଚ) ଏବଂ (ପ୍ରମୁଦଃ) ଉତ୍କୃଷ୍ଟ ପ୍ରସନ୍ନତା (ଆସତେ)

ରହିଅଛୁ (ଯତ୍ର) ଆପଣଙ୍କ ନିକଟରେ (କାମସ୍ୟ) ଅଭିଳାଷୀ ପୁରୁଷର ( କାମାଃ ) ସବୁ କାମନା ( ଆପ୍ତାଃ ) ପ୍ରାପ୍ତହୁଏ, (ତତ୍ର) ସେହି ନିଜର ସ୍ୱରୂପରେ (ଇଂଦ୍ରାୟ) ପରମ ଐଶ୍ୱର୍ଯ୍ୟ ନିମନ୍ତେ (ମାମ୍) ମୋତେ (ଅମୃତଂ) ଜନ୍ମ, ମୃତ୍ୟୁ ଦୁଃଖ ରହିତ ମୋକ୍ଷ ପ୍ରାପ୍ତିଯୁକ୍ତ, ଯେଉଁ ସମସ୍ତ ମଧ୍ୟରେ ଫେରାଇକୁ ଆସିବାକୁ ପଡେନାହିଁ. ସେହି ମୁକ୍ତିପ୍ରାପ୍ତ ( କୃଧି ) କରନ୍ତୁ ଏବଂ ସେହି ପ୍ରକାର ପ୍ରତ୍ୟେକ ଜୀବଙ୍କୁ ( ପରିସ୍ରବ ) ସର୍ବଦାରୁ ପ୍ରାପ୍ତ ହୁଅନ୍ତୁ ॥୯॥

ଯଦ୍‌ଦେବା ଯତୟୋ ଯଥା ଭୁବନାନ୍ୟପିନ୍ୱତ ।
ଅତ୍ରା ସମୁଦ୍ର ଆ ଗୂଳ୍‌ହମା ସୂର୍ଯ୍ୟମଜଭର୍ତ୍ତନ ॥୧୦॥
॥ ଋଗ୍‌ ମଂ. ୧୦ । ସୂ. ୭୨ । ମ. ୭ ॥

**ଅର୍ଥ**—ହେ ( ଦେବାଃ ) ପୂର୍ଣ୍ଣ ବିଦ୍ୱାନ୍ (ଯତୟଃ) ସନ୍ନ୍ୟାସୀ-ମାନେ, ତୁମେ (ଯଥା) **ଯେପରି** (ଅତ୍ର) ଏହି ( ସମୁଦ୍ରେ ) ଆକାଶରେ ( ଗୂଳ୍‌ହମ୍ ) ଗୁପ୍ତ (ଆସୂର୍ଯ୍ୟମ୍) ସ୍ୱୟଂ ପ୍ରକାଶ ସ୍ୱରୂପ ସୂର୍ଯ୍ୟାଦିର ପ୍ରକାଶକ ପରମାତ୍ମା ଅଟନ୍ତି, **ତାଙ୍କୁ** (ଆ ଅଜଭର୍ତ୍ତନ) ଚତୁର୍ଦ୍ଦିଗରୁ ନିଜ ଆତ୍ମା ମଧ୍ୟରେ ଧାରଣ କର ଏବଂ ଆନନ୍ଦିତ ହୁଅ । ସେହିପରି (ଯତ୍‌) ଯେ (ଭୁବନାନି) ପ୍ରତ୍ୟେକ ଭୁବନରେ ଗୃହସ୍ଥାଦି ମନୁଷ୍ୟ ଅଛନ୍ତି, ସେମାନଙ୍କୁ ସର୍ବଦା (ଅପିନ୍ୱତ) ବିଦ୍ୟା ଏବଂ ଉପଦେଶ ଯୁକ୍ତ କର, ଏହା ତୁମର ପରମ କର୍ତ୍ତବ୍ୟ ଅଟେ ॥୧୦॥

ଭଦ୍ରମିଚ୍ଛନ୍ତ ଋଷୟଃ ସ୍ୱର୍ବିଦସ୍ତପୋ ଦୀକ୍ଷାମୁପନି-
ଷେଦୁରଗ୍ରେ ।
ତତୋ ରାଷ୍ଟ୍ରଂ ବଲମୋଜଶ୍ଚ ଜାତଂ ତଦସ୍ମୈ
ଦେବା ଉପସଂନମନ୍ତୁ ॥୧୧॥
॥ ଅଥର୍ବ କାଂ ୧୯ । ସୂ.୪୧ । ମଂ.୧ ॥

ଅଥ--ହେ ବିଦ୍ୱାନ୍‌ଗଣ ! ଯେ (ଋଷୟଃ) ବେଦାର୍ଥ ବିଦ୍ୟାକୁ ପ୍ରାପ୍ତକରି (ସ୍ୱର୍ବିଦଃ) ସୁଖ ପ୍ରାପ୍ତକରି [ ଅଗ୍ରେ ] ପ୍ରଥମରେ [ତପଃ] ବ୍ରହ୍ମଚର୍ଯ୍ୟ ଆଶ୍ରମକୁ ଉତ୍ତମରୂପେ ପୂର୍ଣ୍ଣକରି ତଥା ଯଥାବତ୍ ସ୍ଥିରତା ପ୍ରାପ୍ତହୋଇ [ ଭଦ୍ରମ୍ ] କଲ୍ୟାଣ ଇଚ୍ଛା-କରି [ ଦୀକ୍ଷାମ୍ ] ସନ୍ନ୍ୟାସ ଦୀକ୍ଷାକୁ [ ଉପନିଷେଦୁଃ ] ବ୍ରହ୍ମଚର୍ଯ୍ୟରୁ ହିଁ ପ୍ରାପ୍ତକରେ ସେମାନଙ୍କୁ [ଦେବାଃ] ବିଦ୍ୱାନ୍-ମାନେ ଯଥାବତ୍ ସତ୍କାର କରନ୍ତୁ । [ ତତଃ ] ତଦନନ୍ତର [ ରାଷ୍ଟ୍ରମ୍ ] ରାଜ୍ୟ [ ବଲମ୍ ] ବଳ [ଚ] ଏବଂ [ ଓଜଃ ] ପରାକ୍ରମ [ ଜାତମ୍ ] ଉତ୍ପନ୍ନ ହୋଉ । [ ତତ୍ ] ତାହାଦ୍ୱାରା [ ଅସ୍ମୈ ] ଏହି ସନ୍ନ୍ୟାସାଶ୍ରମର ପାଳନ ନିମନ୍ତେ ଯତ୍ନବାନ୍ ହେବା ଉଚିତ ॥୧୧॥

## ଅଥ ମନୁସ୍ମୃତେଶ୍ଚଶ୍ଳୋକାଃ

ବନେଷୁ ତୁ ବିହୃତ୍ୟୈବଂ ତୃତୀୟଂ ଭାଗମାୟୁଷଃ ।
ଚତୁର୍ଥମାୟୁଷୋ ଭାଗଂ ତ୍ୟକ୍ତ୍ୱା ସଂଗାନ୍
ପରିବ୍ରଜେତ୍ ॥୧॥



ଅଧୀତ୍ୟ ବିଧିବଦ୍‌ବେଦାନ୍ ପୁତ୍ରାଂଶ୍ଚୋତ୍ପାଦ୍ୟ ଧର୍ମତଃ ।
ଇଷ୍ଟ୍ୱା ଚ ଶକ୍ତିତୋ ଯଜ୍ଞୈର୍ମନୋ ମୋକ୍ଷେ
ନିବେଶୟେତ୍ ॥୨॥

ପ୍ରାଜାପତ୍ୟାଂ ନିରୂପ୍ୟେଷ୍ଟିଂ ସର୍ବବେଦସଦକ୍ଷିଣାମ୍ ।
ଆତ୍ମନ୍ୟଗ୍ନୀନ୍‌ସମାରୋପ୍ୟ ବ୍ରାହ୍ମଣଃ ପ୍ରବ୍ରଜେଦ୍
ଗୃହାତ୍ ॥୩॥

ଯୋ ଦତ୍ତ୍ୱା ସର୍ବଭୂତେଭ୍ୟଃ ପ୍ରବ୍ରଜତ୍ୟଭୟଂ ଗୃହାତ୍ ।
ତସ୍ୟ ତେଜୋମୟା ଲୋକା ଭବନ୍ତି ବ୍ରହ୍ମବାଦିନଃ ॥
॥୪॥

ଆଗାରାଦଭିନିଷ୍କ୍ରାନ୍ତଃ ପବିତ୍ରୋପଚିତୋ ମୁନିଃ ।
ସମୁପୋଢେଷୁ କାମେଷୁ ନିରପେକ୍ଷଃ ପରିବ୍ରଜେତ୍ ॥
॥୫॥

ଅନଗ୍ନିରନିକେତଃ ସ୍ୟାଦ୍ ଗ୍ରାମମନ୍ନାର୍ଥମାଶ୍ରୟେତ୍ ।
ଉପେକ୍ଷକୋଽସଙ୍କସୁକୋ ମୁନିର୍ଭାବସମାହିତଃ ॥୬॥
ନାଭିନନ୍ଦେତ ମରଣଂ ନାଭିନନ୍ଦେତ ଜୀବିତମ୍ ।
କାଳମେବ ପ୍ରତୀକ୍ଷେତ ନିର୍ଦ୍ଦେଶଂ ଭୃତକୋ ଯଥା ॥
॥୭॥

ଦୃଷ୍ଟିପୂତଂ ନ୍ୟସେତ୍ପାଦଂ ବସ୍ତ୍ରପୂତଂ ଜଳଂ ପିବେତ୍ ।
ସତ୍ୟପୂତାଂ ବଦେଦ୍ୱାଚଂ ମନଃପୂତଂ ସମାଚରେତ୍ ॥
॥୮॥

ଅଧ୍ୟାତ୍ମରତିରାସୀନୋ ନିରପେକ୍ଷୋ ନିରାମିଷଃ ।
ଆତ୍ମନୈବ ସହାୟେନ ସୁଖାର୍ଥୀ ବିଚରେଦିହ ॥୯॥
କ୍ଳୃପ୍ତକେଶନଖଶ୍ମଶ୍ରୁଃ ପାତ୍ରୀ ଦଣ୍ଡୀ କୁସୁମ୍ଭବାନ୍ ।
ବିଚରେନ୍ନିୟତୋ ନିତ୍ୟଂ ସର୍ବଭୂତାନ୍ୟପୀଡ଼-
ୟନ୍ ॥୧୦॥

ଇନ୍ଦ୍ରିୟାଣାଂ ନିରୋଧେନ ରାଗଦ୍ୱେଷକ୍ଷୟେଣ ଚ ।
ଅହିଂସୟା ଚ ଭୂତାନାମମୃତତ୍ୱାୟ କଳ୍ପତେ ॥୧୧॥
ଦୂଷିତୋଽପି ଚରେଦ୍ ଧର୍ମଂ ଯତ୍ର ତତ୍ରାଶ୍ରମେ ରତଃ ।
ସମଃ ସର୍ବେଷୁ ଭୂତେଷୁ ନ ଲିଙ୍ଗଂ ଧର୍ମ କାରଣମ୍ ॥
॥୧୨॥

ଫଳଂ କତକବୃକ୍ଷସ୍ୟ ଯଦ୍ୟପ୍ୟମ୍ବୁ ପ୍ରସାଦକମ୍ ।
ନ ନାମଗ୍ରହଣାଦେବ ତସ୍ୟ ବାରି ପ୍ରସୀଦତି ॥୧୩॥
ପ୍ରାଣାୟାମା ବ୍ରାହ୍ମଣସ୍ୟ ତ୍ରୟୋଽପି ବିଧିବତ୍ କୃତାଃ ।
ବ୍ୟାହୃତି ପ୍ରଣବୈର୍ଯୁକ୍ତା ବିଜ୍ଞେୟଂ ପରମଂ ତପଃ ॥
॥୧୪॥

ଦହ୍ୟନ୍ତେ ଧ୍ମାୟମାନାନାଂ ଧାତୂନାଂ ହି ଯଥା ମଳାଃ ।
ତଥେନ୍ଦ୍ରିୟାଣାଂ ଦହ୍ୟନ୍ତେ ଦୋଷାଃ ପ୍ରାଣସ୍ୟ
ନିଗ୍ରହାତ୍ ॥୧୫॥

ପ୍ରାଣାୟାମୈର୍ଦହେଦ୍ ଦୋଷାନ୍ ଧାରଣାଭିଶ୍ଚ
କଳ୍ମଷମ୍ ।



ପ୍ରତ୍ୟାହାରେଣ ସଂସର୍ଗାନ୍ ଧ୍ୟାନେନାନୀଶ୍ୱରାନ୍
ଗୁଣାନ୍ ॥୧୬॥

ଉଚ୍ଚାବଚେଷୁ ଭୂତେଷୁ ଦୁର୍ଜ୍ଞେୟାମକୃତାତ୍ମଭିଃ ।
ଧ୍ୟାନଯୋଗେନ ସଂପଶ୍ୟେଦ୍ ଗତିମସ୍ୟାନ୍ତରାତ୍ମନଃ ॥
॥୧୭॥

ସମ୍ୟଗ୍ଦର୍ଶନସଂପନ୍ନଃ କର୍ମଭିର୍ନ ନିବଧ୍ୟତେ ।
ଦର୍ଶନେନ ବିହୀନସ୍ତୁ ସଂସାରଂ ପ୍ରତିପଦ୍ୟତେ ॥୧୮॥

ଅହିଂସୟେନ୍ଦ୍ରିୟାସଂଗୈର୍ବୈଦିକୈଶ୍ଚୈବ କର୍ମଭିଃ ।
ତପସଶ୍ଚରଣୈଶ୍ଚୋଗ୍ରୈଃ ସାଧୟନ୍ତୀହ ତତ୍ପଦମ୍ ॥
॥୧୯॥

ଯଦା ଭାବେନ ଭବତି ସର୍ବଭାବେଷୁ ନିଃସ୍ପୃହଃ ।
ତଦା ସୁଖମବାପ୍ନୋତି ପ୍ରେତ୍ୟ ଚେହ ଚ ଶାଶ୍ୱତମ୍ ॥
॥୨୦॥

ଅନେନ ବିଧିନା ସର୍ବାଁସ୍ ତ୍ୟକ୍ତ୍ୱା ସଙ୍ଗାଞ୍ଛନୈଃ
ଶନୈଃ ।
ସର୍ବଦ୍ୱନ୍ଦ୍ୱବିନିର୍ମୁକ୍ତୋ ବ୍ରହ୍ମଣ୍ୟେବାବତିଷ୍ଠତେ ॥୨୧॥

ଇଦଂ ଶରଣମଜ୍ଞାନାମିଦମେବ ବିଜାନତାମ୍ ।
ଇଦମନ୍ୱିଚ୍ଛତାଂ ସ୍ୱର୍ଗମିଦମାନନ୍ତ୍ୟମିଚ୍ଛତାମ୍ ॥୨୨॥

ଅନେନ କ୍ରମଯୋଗେନ ପରିବ୍ରଜତି ଯୋ ଦ୍ୱିଜଃ ।
ସ ବଧୂୟେହ ପାପ୍ମାନଂ ପରଂ ବ୍ରହ୍ମାଧିଗଚ୍ଛତି ॥
॥୨୩॥

(ମନୁ ଅ· ୬ । ୩୩, ୩୬, ୩୮, ୩୯, ୪୧, ୪୩, ୪୫, ୪୬,
୪୯, ୫୨, ୬୦, ୬୬, ୬୭, ୭୦–୭୫, ୮୦, ୮୧, ୮୪, ୮୫॥)

ଅର୍ଥ – ଏହିପ୍ରକାରେ ଜଙ୍ଗଲରେ ଆୟୁଷର ତୃତୀୟ ଭାଗ ଅର୍ଥାତ୍ ଅଧିକରୁ ଅଧିକ ୨୫ ବର୍ଷ ନ୍ୟୁନାତିନ୍ୟୁନ ବାର [୧୨] ବର୍ଷ ପର୍ଯ୍ୟନ୍ତ ବିହାରକରି ଆୟୁଷର ଚତୁର୍ଥ ଭାଗ ଅର୍ଥାତ୍ ୭୦ ବର୍ଷ ପରେ ସବୁପ୍ରକାର ମୋହକୁ ତ୍ୟାଗକରି ସନ୍ନ୍ୟାସ ଗ୍ରହଣକରିବା ଉଚିତ ॥୧॥

ବିଧି ପୂର୍ବକ ବ୍ରହ୍ମଚର୍ଯ୍ୟାଶ୍ରମରେ ସବୁ ବେଦକୁ ପଢ଼ି, ଗୃହସ୍ଥ ହୋଇ ଧର୍ମ ବ୍ୟବସ୍ଥାନୁଯାୟୀ ପୁତ୍ର ଜାତକରି, ବାନପ୍ରସ୍ଥରେ ସାମର୍ଥ୍ୟ ଅନୁସାରେ ଯଜ୍ଞକରି ସନ୍ନ୍ୟାସାଶ୍ରମରେ ମନୋନିବେଶ କରିବେ ॥୨॥

ପ୍ରଜାପତି ପରମାତ୍ମାଙ୍କର ପ୍ରାପ୍ତି ନିମିତ୍ତ ପ୍ରଜାପତ୍ୟେଷ୍ଟି, [ ଯେଉଁଥିରେ ଯଜ୍ଞୋପବିତ ଏବଂ ଶିଖା ତ୍ୟାଗ କରାଯାଏ ] କରି ଆବହନୀୟ, ଗାର୍ହପତ୍ୟ ଏବଂ ଦକ୍ଷିଣାଗ୍ନି ସଞ୍ଜ୍ଞକ ଅଗ୍ନିମାନଙ୍କୁ ଆତ୍ମାରେ ଧାରଣକରି ବିଦ୍ୱାନ୍ ବ୍ରାହ୍ମଣ ଗୃହାଶ୍ରମରୁ ହିଁ ସନ୍ନ୍ୟାସ ଗ୍ରହଣ କରିବେ ॥୩॥

ଯେଉଁ ପୁରୁଷ ସଦୁପଦେଶ ଦ୍ୱାରା ପ୍ରାଣିମାନଙ୍କୁ ଅଭୟ-ଦାନକରି ଗୃହାଶ୍ରମରୁ ହିଁ ସନ୍ନ୍ୟାସ ଗ୍ରହଣକରନ୍ତି, ସେହି ବ୍ରହ୍ମବାଦୀ, ସତ୍ୟୋପଦେଶକ ସନ୍ନ୍ୟାସୀଙ୍କ ନିମନ୍ତେ ମୋକ୍ଷ-ଲୋକ ଏବଂ ସବୁ ଲୋକଲୋକାନ୍ତର ତେଜମୟ [ ଜ୍ଞାନଦ୍ୱାରା ପ୍ରକାଶମୟ ] ହୋଇଯାଏ ।।୭।।

ଯେତେବେଳେ କାମନା ଦୂର ହୋଇଯାଏ, ଅଭିଳାଷ ରହେନାହିଁ, ଆତ୍ମା ପବିତ୍ର, ଅନ୍ତଃକରଣ ପବିତ୍ର ଏବଂ ମନନ-ଶୀଳ ହୋଇଯାଏ ସେହି ସମୟରେ ଗୃହସ୍ଥାଶ୍ରମ ତ୍ୟାଗକରି ସନ୍ନ୍ୟାସ ଗ୍ରହଣକରିବା ଉଚିତ । ଅଥବା ବ୍ରହ୍ମଚର୍ଯ୍ୟ ଆଶ୍ରମରୁ ହିଁ ସନ୍ନ୍ୟାସ ଗ୍ରହଣ କରିନେବେ ।।୫।।

ସନ୍ନ୍ୟାସୀ ( ଅନଗ୍ନି ※ ) ଆହବନୀୟାଦି ଅଗ୍ନିକୁ ପରିତ୍ୟାଗ କରିବେ ଏବଂ କୌଣସି ଗୋଟିଏ ସ୍ଥାନରେ ନିଜର ବାସଗୃହ ନିର୍ମାଣ କରିବେନାହିଁ । ଅନ୍ନ ଏବଂ ବସ୍ତ୍ର ନିମନ୍ତେ

---

※ ଏହି ପଦଦ୍ୱାରା ଭ୍ରାନ୍ତିଯୁକ୍ତହୋଇ ସନ୍ନ୍ୟାସୀ ମାନଙ୍କର ଦାହକର୍ମ କରନ୍ତି ନାହିଁ ଏବଂ ସନ୍ନ୍ୟାସୀମାନେ ମଧ୍ୟ ଅଗ୍ନିକୁ ସ୍ପର୍ଶ କରନ୍ତିନାହିଁ । ଏହି ପାପ ସନ୍ନ୍ୟାସୀଙ୍କ ପଛରେ ଲାଗି-ଗଲା । ବସ୍ତୁତଃ ଅନଗ୍ନି ହେବାର ଅର୍ଥ ଆହବନୀୟାଦି ସଞ୍ଜ୍ଞକ ଅଗ୍ନିକୁ ପରିତ୍ୟାଗକରିବା । ଅଗ୍ନିକୁ ସ୍ପର୍ଶ ନକରିବା କିମ୍ବା ଦାହକର୍ମ ପରିତ୍ୟାଗ କରିବା ଏହାର ବାସ୍ତବିକ ଅର୍ଥ ନୁହେଁ । ( ଦଃ ସଃ )

ଗ୍ରାମର ଆଶ୍ରା କରିବେ । ଅସାଧୁ ଲୋକଙ୍କଠାରୁ ଦୂରେଇ ରହି ଏବଂ ସ୍ଥିରବୁଦ୍ଧି ମନନଶୀଳହୋଇ ପରମେଶ୍ୱରଙ୍କ ଠାରେ ଧ୍ୟାନମଗ୍ନହୋଇ ନିଜର ସନ୍ଦେହର ସମାଧାନ କରିବା ସହିତ ସର୍ବଦା ବିଚରଣ କରିବେ ।।୬।।

ସନ୍ନ୍ୟାସୀ ନିଜର ଜୀବନପାଇଁ ଆନନ୍ଦିତ ହେବା କିମ୍ବା ମୃତ୍ୟୁପାଇଁ ଦୁଃଖିତ ହେବା ଉଚିତ ନୁହେଁ । କିନ୍ତୁ ଯେପରି ସାଧାରଣ ଭୃତ୍ୟ ନିଜର ସ୍ୱାମୀର ଆଜ୍ଞାକୁ ଅପେକ୍ଷା କରିଥାଏ ସେହିପରି ସନ୍ନ୍ୟାସୀ ମୃତ୍ୟୁର ପ୍ରତୀକ୍ଷା କରିବେ ।।୭।।

ଚାଲିବା ସମୟରେ ଆଗକୁ ଦେଖି ପାଦ ପକାଇବେ, ସଦାବସ୍ତ୍ରରେ ଛଣା ହୋଇଥିବା ପାଣି ଗ୍ରହଣ କରିବେ, ସବୁବେଳେ ସତ୍ୟଭାଷଣ କରିବା ସଙ୍ଗେ ସଙ୍ଗେ ସତ୍ୟୋପଦେଶ ହିଁ କରିବେ । ଯାହାକିଛି ବ୍ୟବହାର କରିବେ, ତାହା ମନରୁ ପବିତ୍ରତା ପୂର୍ବକ କରିବେ ।।୮।।

ଏହି ସଂସାରରେ ଆତ୍ମନିଷ୍ଠାପୂର୍ବକ ରହି ସର୍ବଥା ଅନ୍ୟର ଅପେକ୍ଷା ତ୍ୟାଗକରି, ମଦ୍ୟ, ମାଂସାଦି ତ୍ୟାଗକରି ଆତ୍ମାର ସହାୟତାରେ ହିଁ ସୁଖ ପ୍ରାପ୍ତକରି ବିଚରଣ କରିବେ ଏବଂ ସର୍ବଦା ସମସ୍ତଙ୍କୁ ସତ୍ୟୋପଦେଶ କରିବେ ।।୯।।

ସନ୍ନ୍ୟାସୀ ନିଜର ବାଳ, ଦାଢ଼ି, ନିଶ, ନଖ ଆଦି ସମୟ ସମୟରେ ଛେଦନ କରିବା ଉଚିତ । ପାତ୍ରୀ, କମଣ୍ଡଳୁ ଏବଂ କୁସୁମ୍ଭ ଦ୍ୱାରା ରଙ୍ଗ ହୋଇଥିବା* ବସ୍ତ୍ର ବ୍ୟବହାର

* ଅଥବା ଗେରୁ ଦ୍ୱାରା ରଙ୍ଗାହୋଇଥିବା ବସ୍ତ୍ର ପିନ୍ଧିବେ ।
( ଦ: ନ: )

କରିବା ଉଚିତ । ପ୍ରାଣୀ ମାନଙ୍କୁ ପୀଡ଼ା ନଦେଇ, ବୃଦ୍ଧାତ୍ମା ହୋଇ ସନ୍ନ୍ୟାସୀ ନିତ୍ୟ ବିଚରଣ କରିବେ ।।୧୦।।

ଯେଉଁ ସନ୍ନ୍ୟାସୀ ଅଧର୍ମ କାର୍ଯ୍ୟରୁ ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କରେ, ରାଗ – ଦ୍ୱେଷ ଆଦିକୁ କ୍ଷୟ କରିଦିଏ ଏବଂ ନିର୍ବୈରତା ରଖି ସର୍ବ ପ୍ରାଣୀଙ୍କର ମଙ୍ଗଳ କରେ, ସେ ହିଁ ମୋକ୍ଷପ୍ରାପ୍ତ କରିଥାଏ ।।୧୧।।

ମୂର୍ଖ ସଂସାରୀ ଲୋକମାନେ ନିନ୍ଦା ଏବଂ ଅପମାନ କରିଲେ ମଧ୍ୟ ସନ୍ନ୍ୟାସୀ ଧର୍ମ ଆଚରଣ କରିବା ହିଁ ଉଚିତ । ଏହିପରି ଅନ୍ୟ ବ୍ରହ୍ମଚର୍ଯ୍ୟାଶ୍ରମାଦି ମନୁଷ୍ୟମାନେ ମଧ୍ୟ କରିବା ଉଚିତ । ସମସ୍ତ ପ୍ରାଣୀମାନଙ୍କ ପାଇଁ ପକ୍ଷପାତରହିତ ହୋଇ ଶତ୍ରୁତା ଆଚରଣ ନକରି ସମସ୍ତଙ୍କୁ ସମଦୃଷ୍ଟିରେ ଦେଖିବେ । ଏହିପରି ଉଚିତ ସତ୍‌କର୍ମ କରିବା ହିଁ ସନ୍ନ୍ୟାସୀର ଧର୍ମ ଅଟେ । କେବଳ ଦଣ୍ଡ ଆଦି ଚିହ୍ନ ଧାରଣ କରିବା ସନ୍ନ୍ୟାସୀର ଧର୍ମ ନୁହେଁ ।।୧୨।।

ନିର୍ମଳୀ ବୃକ୍ଷର ଫଳଦ୍ୱାରା ଜଳ ଶୁଦ୍ଧ ହୋଇଥିଲେ ମଧ୍ୟ ତାହାର ନାମ ଧାରଣ ମାତ୍ରକେ ଜଳ ଶୁଦ୍ଧ ହୁଏନାହିଁ । କିନ୍ତୁ ତାକୁ ବାଟି ଜଳରେ ପକାଇଲେ ତାହା ଶୁଦ୍ଧହୁଏ । ସେହିପରି ନାମମାତ୍ର ଆଶ୍ରମ ଗ୍ରହଣକଲେ କିଛି ହୁଏନାହିଁ କିନ୍ତୁ ପ୍ରତ୍ୟେକ ଆଶ୍ରମର ଉପଯୁକ୍ତ କର୍ମ କଲେ ଆଶ୍ରମ ଧାରଣର ଉଦ୍ଦେଶ୍ୟ ସଫଳହୁଏ, ଅନ୍ୟଥା ନୁହେଁ ।।୧୩।।



ଏହି ପବିତ୍ର ଆଶ୍ରମକୁ ସଫଳ କରିବା ନିମନ୍ତେ ସନ୍ନ୍ୟାସୀ ପୁରୁଷ ନିୟମିତ ରୂପେ ଯୋଗଶାସ୍ତ୍ରର ନିୟମାନୁସାରେ ସାତ-ଗୋଟି ବ୍ୟାହୃତି ପୂର୍ବରୁ ସାତଥର ପ୍ରଣବକରି ପ୍ରାଣାୟାମ ମନ୍ତ୍ର ଜପପୂର୍ବକ ଅତି କମ୍‌ରେ ତିନୋଟି ପ୍ରାଣାୟାମ କଲେ ମଧ୍ୟ ତାହାକୁ ଉତ୍କୃଷ୍ଟ ତପସ୍ୟା କୁହାଯିବ ।।୧୪।।

ଅଗ୍ନିରେ ପକାଇବାଦ୍ୱାରା ଯେପରି ଧାତୁମାନେ କଳୁଷହୀନ ହୁଅନ୍ତି, ସେହିପରି ପ୍ରାଣର ନିଗ୍ରହ ଦ୍ୱାରା ଇନ୍ଦ୍ରିୟ ଜନିତ ଦୋଷରହିତ ହୋଇଥାନ୍ତି ।।୧୫।।

ତେଣୁ ସନ୍ନ୍ୟାସୀମାନେ ପ୍ରାଣାୟାମ ଦ୍ୱାରା ଦୋଷକୁ, ଧାରଣାଦ୍ୱାରା ଅନ୍ତଃକରଣରେ ଥିବା ମଇଳାକୁ, ପ୍ରତ୍ୟାହାର ଦ୍ୱାରା ସଙ୍ଗଦୋଷକୁ ଏବଂ ଧ୍ୟାନଦ୍ୱାରା ଅବିଦ୍ୟା ପକ୍ଷପାତାଦି ଅନୀଶ୍ୱରତା ଦୋଷକୁ ପରିତ୍ୟାଗକରି ପକ୍ଷପାତରହିତ ଆଦି ଈଶ୍ୱରଙ୍କର ଗୁଣକୁ ଧାରଣପୂର୍ବକ ଅନ୍ୟାନ୍ୟ ସକଳ ଦୋଷକୁ ଭସ୍ମ କରିଦେବେ ।।୧୬।।

ଶ୍ରେଷ୍ଠବଡ଼ ପ୍ରାଣୀ ଏବଂ ଅପ୍ରାଣିମାନଙ୍କ ମଧ୍ୟରେ ଥିବା, ଯାହା ଅଶୁଦ୍ଧ ଆତ୍ମାଦ୍ୱାରା ଦେଖିହୁଏନାହିଁ, ସେହି ଅନ୍ତର୍ଯ୍ୟାମୀ ପରମାତ୍ମାଙ୍କର ଗତି ଅର୍ଥାତ୍ ପ୍ରାପ୍ତିକୁ ଧ୍ୟାନ-ଯୋଗ ଦ୍ୱାରା ସନ୍ନ୍ୟାସୀ ଦେଖିବେ ।।୧୭।।

ଯେଉଁ ସନ୍ନ୍ୟାସୀ ଯଥାର୍ଥ ଜ୍ଞାନ ବା ଷଡ଼୍‌ଦର୍ଶନଯୁକ୍ତ ହୋଇଥାଏ ସେ ଦୁଷ୍ଟକର୍ମମାନଙ୍କରେ ଅବଦ୍ଧ ହୁଏନାହିଁ ।

ଯେଉଁ ସନ୍ନ୍ୟାସୀ ଜ୍ଞାନ, ବିଦ୍ୟା, ଯୋଗାଭ୍ୟାସ, ସତ୍‌ସଙ୍ଗ ଏବଂ ଧର୍ମାନୁଷ୍ଠାନ ବା ଷଡ଼୍‌ଦର୍ଶନରହିତ ହୋଇ ସନ୍ନ୍ୟାସ ଗ୍ରହଣ-କରନ୍ତି ସେ ମୋକ୍ଷକୁ ପ୍ରାପ୍ତ କରିପାରନ୍ତିନାହିଁ ଏବଂ ଏହି ଜନ୍ମ ମରଣ ସଂସାରରେ ପୁନର୍ବାର ଜନ୍ମଗ୍ରହଣ କରେ। ଏହିପରି ମୂର୍ଖ ଅଧର୍ମୀ ସନ୍ନ୍ୟାସୀର ସନ୍ନ୍ୟାସ ନେବା ବ୍ୟର୍ଥ ଏବଂ ଧିକ୍କାର ଯୋଗ୍ୟ ଅଟେ ॥୧୮॥

ଯେ ଶତ୍ରୁ ଗ୍ରହଣ, ଇନ୍ଦ୍ରିୟମାନଙ୍କର ବିଷୟ ବନ୍ଧନରୁ ପୃଥକ୍ ବୈଦିକ କର୍ମାଚରଣ, ଏବଂ ପ୍ରାଣାୟାମ, ସତ୍ୟଭାଷଣ ଆଦି ଉତ୍ତମ ଜଗକର୍ମ ସହିତ ସନ୍ନ୍ୟାସ ଗ୍ରହଣକରେ, ସେ ଏହି ଜନ୍ମ ଏହି ସମୟ ମଧ୍ୟରେ ପରମେଶ୍ୱରଙ୍କର ପ୍ରାପ୍ତିରୂପ ପଦକୁ ପ୍ରାପ୍ତକରେ। ସେମାନଙ୍କର ସନ୍ନ୍ୟାସ ନେବା ମଙ୍ଗଳ ହୁଏ ଏବଂ ସେମାନେ ଧନ୍ୟବାଦର ପାତ୍ର ହୁଅନ୍ତି ॥୧୯॥

ଯେତେବେଳେ ସନ୍ନ୍ୟାସୀ ପ୍ରତ୍ୟେକ ପଦାର୍ଥର ସ୍ୱଭାବତଃ ନିଃସ୍ପୃହ ରହେ ସେତେବେଳେ ଏହି ଜନ୍ମରେ ଏବଂ ମରଣ ପରେ ପରଲୋକ ଏବଂ ମୁକ୍ତିରେ ପରମାତ୍ମାଙ୍କୁ ପ୍ରାପ୍ତକରି ନିରନ୍ତର ସୁଖ ଲାଭକରେ ॥୨୦॥

ଏହିପରି କ୍ରମରେ ଧୀରେ ଧୀରେ ସବୁଦୋଷ ତ୍ୟାଗକରି, ସବୁ ପ୍ରକାର ହର୍ଷଶୋକ ଆଦି ଦ୍ୱନ୍ଦ୍ୱରୁ ବିଶେଷ ଭାବରେ ମୁକ୍ତ ହୋଇ ବିଦ୍ୱାନ୍ ସନ୍ନ୍ୟାସୀ ବ୍ରହ୍ମରେ ସ୍ଥିର ହୁଏ ॥୨୧॥

ଯେଉଁ ବ୍ୟକ୍ତି ଜିଜ୍ଞାସା ନେଇ ଗୌଣ ସନ୍ନ୍ୟାସ ଗ୍ରହଣ-କରେ ସେ ମଧ୍ୟ ବିଦ୍ୟାଭ୍ୟାସ, ସତ୍‌ପୁରୁଷ ସଙ୍ଗ ଯୋଗାଭ୍ୟାସ

ଓଁକାର ଜପକରି ପରମେଶ୍ୱରଙ୍କ ଚିନ୍ତା କରିବେ । ଏହାହିଁ ଜ୍ଞାନହୀନମାନଙ୍କର ଶରଣ, ଅର୍ଥାତ୍ ଗୌଣ ସନ୍ନ୍ୟାସୀ ମାନଙ୍କର ଏବଂ ଏହାହିଁ ବିଦ୍ୱାନ୍ ସନ୍ନ୍ୟାସୀ ମାନଙ୍କର ଆଶ୍ରୟ, ସୁଖକୁ ଅନ୍ୱେଷଣ କରୁଥିବା ଏବଂ ଅନନ୍ତ ସୁଖକୁ ଇଚ୍ଛା କରୁଥିବା ମନୁଷ୍ୟ ମାନଙ୍କର ଆଶ୍ରୟ ଅଟେ ॥୨୨॥

ଏହି କ୍ରମ ଅନୁସାରେ ସନ୍ନ୍ୟାସ ଯୋଗଦ୍ୱାରା ଯେଉଁ ଦ୍ୱିଜ ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ସନ୍ନ୍ୟାସ ଗ୍ରହଣକରେ ସେ ଏହି ସଂସାର ଏବଂ ଶରୀରର ସମସ୍ତ ପାପକୁ ତ୍ୟାଗକରି ପରଂବ୍ରହ୍ମଙ୍କୁ ପ୍ରାପ୍ତକରେ ॥୨୩॥

**ବିଧିଃ**—ଯେଉଁ ବ୍ୟକ୍ତି ସନ୍ନ୍ୟାସ ଗ୍ରହଣ କରିବାକୁ ଇଚ୍ଛା କରିବେ, ସେ ଯେଉଁଦିନ ସର୍ବଥା ପ୍ରସନ୍ନ ଥିବେ ସେହିଦିନ ନିୟମ ଓ ବ୍ରତ ଧାରଣ କରିବେ ଅର୍ଥାତ୍ ସେହିଦିନଠାରୁ ତିନିଦିନ ପର୍ଯ୍ୟନ୍ତ ଦୁଗ୍ଧପାନ କରି ଉପବାସ କରିବେ, ଭୂମିରେ ଶୟନ କରିବେ ଏବଂ ପ୍ରାଣାୟାମ ଧ୍ୟାନ ଓ ଏକାନ୍ତସ୍ଥାନରେ ଓଁକାର ଜପ କରିବେ ।

ଏହି ପୁସ୍ତକରେ ପୃଷ୍ଠା ୧୮–୨୨ ଲିଖିତ ବିଧିରେ ଯଜ୍ଞମଣ୍ଡପ, ବେଦୀ, ସମିଧା, ଘୃତ ଓ ଶାକଲ୍ୟାଦି ସାମଗ୍ରୀ ପୂର୍ବଦିନ ପୂର୍ବରୁ ଠିକ୍ କରି ରଖିବେ । ବ୍ରତପରେ ଯେଉଁ ଚତୁର୍ଥଦିନ ସନ୍ନ୍ୟାସ ଗ୍ରହଣ କରିବାକୁ ହେବ, ସେଦିନ ଏକ ପ୍ରହର ରାତିଥାଉ ଉଠି ଶୌଚସ୍ନାନାଦି ଆବଶ୍ୟକ କର୍ମ କରି

ପ୍ରାଣାୟମ, ଧ୍ୟାନ ଓ ପ୍ରଣବ ଜପକରୁଥିବେ । ଧୃତୈର୍ଯ୍ୟାବସ୍ଥ ହେଲେ ଉତ୍ତମ ଗୃହସ୍ଥ ଧାର୍ମିକ ବିଦ୍ୱାନମାନଙ୍କୁ ୨୫ ପୃଷ୍ଠାର ଲିଖିତ ବିଧିରେ ବରଣକରି ବିଧିପୂର୍ବକ ପୃଷ୍ଠା ୨୭-୩୦ ପ୍ରମାଣେ ଅଗ୍ନ୍ୟାଧାନ, ସମିଧଦାନ, ଘୃତ ପ୍ରତାପନ ଓ ସ୍ଥାଲୀ ପାକ (ପୃଷ୍ଠା ୨୧-୨୨) କି ଏହି ପୁସ୍ତକ ଲିଖିତ ସ୍ୱସ୍ତି ବାଚନ ଶାନ୍ତିପ୍ରକରଣ (ପୃଷ୍ଠା ୯-୧୭) ପାଠ କରିବେ* ଏବଂ ପୃଷ୍ଠା ୩୦ ଲିଖିତ ପ୍ରମାଣେ ବେଦୀର ଚତୁର୍ଦିଗରେ ଜଳପ୍ରୋକ୍ଷଣ କରିବେ । ତତ୍ପରେ ଆଘାରାବାଜ୍ୟଭାଗାହୁତି ୪, ବ୍ୟାହୃତି ଆହୁତି ୪ (ପୃଷ୍ଠା ୩୧ ୩୨) ଓ ନିମ୍ନୋକ୍ତ ତିନି ମନ୍ତ୍ରରେ ଗୋଟି ଗୋଟି କରି ସୋଠରେ ଏଗାରଟି ଆଜ୍ୟାହୁତି ଦେବେ :—

ଓଓମ୍ ଭୁବନପତୟେ ସ୍ୱାହା ॥୧॥ ଓଓମ୍ ଭୂତାନାଂ ପତୟେ ସ୍ୱାହା ॥୨॥ ଓଓମ୍ ପ୍ରଜାପତୟେ ସ୍ୱାହା ॥୩॥

ତତ୍ପରେ ବିଧିପୂର୍ବକ ଯେଉଁ ଚରୁ ତିଆରି ହୋଇଥିବ ସେଥିରେ ଘୃତ ସିଞ୍ଚନକରି ସନ୍ନ୍ୟାସ ଗ୍ରହଣକାରୀ ଯଜମାନ ଓ ଦୁଇଜଣ ଋତ୍ୱିକ୍ ନିମ୍ନଲିଖିତ ସ୍ୱାହାନ୍ତ ମନ୍ତ୍ରରେ ଚରୁରେ ହୋମ କରିବେ । ଅବଶିଷ୍ଟ ଦୁଇଜଣ ଋତ୍ୱିକ୍ ମଧ୍ୟ ତତ୍ସହିତ ଘୃତାହୁତି ପ୍ରଦାନ କରୁଥିବେ –

---

*ସ୍ୱସ୍ତି ବାଚନ ଓ ଶାନ୍ତିପ୍ରକରଣ ହୋମ ପୂର୍ବରୁ ପାଠ କରିବେ ।

(ସମ୍ପାଦକ)

ଓ୩ମ୍ ବ୍ରହ୍ମ ହୋତା ବ୍ରହ୍ମ ଯଜ୍ଞୋ ବ୍ରହ୍ମଣା ସ୍ୱରବୋ
ମିତାଃ । ଅଧ୍ୱର୍ଯ୍ୟୁର୍ବ୍ରହ୍ମଣୋ ଜାତୋ ବ୍ରହ୍ମଣୋଽନ୍ତର୍ହିତଂ
ହବିଃ ସ୍ୱାହା ॥୧॥

ବ୍ରହ୍ମ ସ୍ରୁଚୋ ଘୃତବତୀର୍ବ୍ରହ୍ମଣା ବେଦିରୁଦ୍ଧିତା ।
ବ୍ରହ୍ମ ଯଜ୍ଞସ୍ୟ ସତ୍ତ୍ୱଂ ଚ ଋତ୍ୱିଜୋ ଯେ ହବିଷ୍କୃତଃ ।
ଶମିତାୟ ସ୍ୱାହା ॥୨॥

ଅଂହୋମୁଚେ ପ୍ରଭରେ ମନୀଷାମା ସୁତ୍ରାମ୍ଣେ
ସୁମତିମାବୃଣାନଃ । ଇମମିନ୍ଦ୍ର ପ୍ରତି ହବ୍ୟଂ ଗୃଭାୟ
ସତ୍ୟାସସନ୍ତୁ ଯଜମାନସ୍ୟ କାମାଃ ସ୍ୱାହା ॥୩॥

ଅଂହୋମୁଚଂ ବୃଷଭଂ ଯଜ୍ଞିୟାନାଂ ବିରାଜନ୍ତଂ
ପ୍ରଥମମଧ୍ୱରାଣାମ୍ । ଅପାଂ ନପାତମଶ୍ୱିନା ହୁବେ
ଧିୟେନ୍ଦ୍ରେଣ ମ ଇନ୍ଦ୍ରିୟଂ ଦତ୍ତମୋଜଃ ସ୍ୱାହା ॥୪॥

ଯତ୍ର ବ୍ରହ୍ମବିଦୋ ଯାନ୍ତି ଦୀକ୍ଷୟା ତପସା ସହ ।
ଅଗ୍ନିର୍ମା ତତ୍ର ନୟତ୍ୱଗ୍ନିର୍ମେଧାଂ ଦଧାତୁ ମେ ।
ଅଗ୍ନୟେ ସ୍ୱାହା ॥ ଇଦମଗ୍ନୟେ—ଇଦନ୍ନ ମମ ॥୫॥

ଯତ୍ର···ବାୟୁର୍ମା ତତ୍ର ନୟତୁ ବାୟୁଃ ପ୍ରାଣାନ୍



ଦଧାତୁ ମେ । ବାୟବେ ସ୍ୱାହା ॥ ଇଦଂ ବାୟବେ
ଇଦନ୍ନ ମମ ॥୬॥

ଯନ୍ମ···ସୂର୍ଯ୍ୟୋ ମା ତନ୍ନ ନୟତୁ ଚକ୍ଷୁଃ ସୂର୍ଯ୍ୟୋ
ଦଧାତୁ ମେ । ସୂର୍ଯ୍ୟାୟ ସ୍ୱାହା ॥ ଇଦଂ
ସୂର୍ଯ୍ୟାୟ ଇଦନ୍ନ ମମ ॥୭॥

ଯନ୍ମ·· ଚନ୍ଦ୍ରୋ ମା ତନ୍ନ ନୟତୁ ମନଶ୍ଚନ୍ଦ୍ରୋ ଦଧାତୁ
ମେ । ଚନ୍ଦ୍ରାୟ ସ୍ୱାହା ॥ ଇଦଂ ଚନ୍ଦ୍ରାୟ—ଇଦନ୍ନ
ମମ ॥୮॥

ଯନ୍ମ·· ସୋମୋ ମା ତନ୍ନ ନୟତୁ ପୟଃ ସୋମୋ
ଦଧାତୁ ମେ । ସୋମାୟ ସ୍ୱାହା ॥ ଇଦଂ ସୋମାୟ
ଇଦନ୍ନ ମମ । ॥୯॥

ଯନ୍ମ·· ଇନ୍ଦ୍ରୋ ମା ତନ୍ନ ନୟତୁ ବଲମିନ୍ଦ୍ରୋ ଦଧାତୁ
ମେ । ଇନ୍ଦ୍ରାୟ ସ୍ୱାହା ॥ ଇଦମିନ୍ଦ୍ରାୟ—ଇଦନ୍ନ ମମ
॥୧୦॥

ଯନ୍ମଂ··· । ଆପୋ ମା ତନ୍ନ ନୟନ୍ତ୍ୱମୃତଂ ମୋପ
ତଷ୍ଠତୁ । ଅଦଭ୍ୟଃ ସ୍ୱାହା ॥ ଇଦମଦ୍‌ଭ୍ୟଃ—ଇଦନ୍ନ
ମମ ॥୧୧॥

ଯତ୍ର ବ୍ରହ୍ମବିଦୋ ଯାନ୍ତି ଦୀକ୍ଷୟା ତପସା ସହ ।
ବ୍ରହ୍ମା ମା ତତ୍ର ନୟତୁ ବ୍ରହ୍ମା ବ୍ରହ୍ମ ଦଧାତୁ ମେ ।
ବ୍ରହ୍ମଣେ ସ୍ୱାହା ॥ ଇଦଂ ବ୍ରହ୍ମଣେ—ଇଦନ୍ନ ମମ ॥୧୨॥
(ଅଥର୍ବ କା ୧୯ । ସୂ ୪୨ । ୧-୪ । ସୂ.୪୩)

ପରେ ନିମ୍ନୋକ୍ତ ୧୫ ମନ୍ତ୍ରରେ ଗୋଟି ଗୋଟି କରି ଘୃତରେ ଆହୁତି ପ୍ରଦାନ କରିବେ—

* ଓମ୍ । ପ୍ରାଣାପାନବ୍ୟାନୋଦାନସମାନା ମେ ଶୁଧ୍ୟନ୍ତାମ୍ । ଜ୍ୟୋତିରହଂ ବିରଜା ବିପାପ୍ମା ଭୂୟାସଂ ସ୍ୱାହା ॥୧॥

*"ପ୍ରାଣାପାନ" ଇତ୍ୟାଦିଠାରୁ ଆରମ୍ଭ କରି "ପରମାତ୍ମା ମେ ଶୁଧ୍ୟନ୍ତାମ୍" ପର୍ଯ୍ୟନ୍ତ ମନ୍ତ୍ରରେ ସନ୍ନ୍ୟାସୀଙ୍କୁ ଉପଦେଶ ଦିଆ-ଯାଉଛି ଅର୍ଥାତ୍ ଯେ ସନ୍ନ୍ୟାସାଶ୍ରମ ଗ୍ରହଣ କରିବେ, ସେ ଧର୍ମାଚରଣ, ସତ୍ୟୋପଦେଶ, ଯୋଗାଭ୍ୟାସ, ଶମ, ଦମ, ଶାନ୍ତି, ସୁଶୀଳତା ଓ ବିଦ୍ୟାବିଜ୍ଞାନାଦି ଶୁଭଗୁଣକର୍ମସ୍ୱଭାବଯୁକ୍ତ ହୋଇ ପରମାତ୍ମାଙ୍କୁ ନିଜର ସହାୟକ ମନେ କରିବେ ଏବଂ ଅତ୍ୟନ୍ତ ପୁରୁଷାର୍ଥବଳରେ ଶରୀର, ପ୍ରାଣ, ମନ, ଓ ଇନ୍ଦ୍ରିୟାଦିଙ୍କୁ ଅଶୁଦ୍ଧ ବ୍ୟବହାରରୁ ନିବୃତ୍ତ କରି ଶୁଦ୍ଧ ବ୍ୟବହାରରେ ପ୍ରବୃତ୍ତ କରିବେ । ପକ୍ଷପାତ ଓ କପଟତାଦି ଅଧର୍ମ ବ୍ୟବହାର ତ୍ୟାଗକରି ଅଧ୍ୟାପନା ଓ ଉପଦେଶଦ୍ୱାରା ଅନ୍ୟର ଦୋଷ କ୍ଷାଳନ କରି ସ୍ୱୟଂ ଆନନ୍ଦିତ ରହିବେ ଏବଂ ଅନ୍ୟଙ୍କୁ ଆନନ୍ଦ ଦାନ କରିବେ । (ଦ· ସ.)

ବାଙ୍‌ମନଶ୍ଚକ୍ଷୁଃ ଶ୍ରୋତ୍ରଜିହ୍ୱାଘ୍ରାଣରେତୋବୁଦ୍ଧ୍ୟାକୂତି
ସଂକଳ୍ପା ମେ ଶୁଧ୍ୟନ୍ତାମ୍ । ଜ୍ୟୋତିରହଂ ବିରଜା
ବିପାପ୍ମା ଭୂୟାସଁ ସ୍ୱାହା ॥୨॥
ଶିରଃପାଣିପାଦ (ପାର୍ଶ୍ୱ) ପୃଷ୍ଠୋରୂଦରଜଙ୍ଘାଶିଶ୍ନୋ-
ପସ୍ଥପାୟବୋ ମେ ଶୁଧ୍ୟନ୍ତାମ୍ ଜ୍ୟୋତିଂ.. ॥୩॥
ତ୍ୱକ୍‌ଚର୍ମମାଂସରୁଧିରମେଦୋମଜ୍ଜାସ୍ନାୟବୋଽସ୍ଥୀନି
ମେ ଶୁଧ୍ୟନ୍ତାମ୍ । ଜ୍ୟୋତିଂ... ॥୪॥
ଶବ୍ଦସ୍ପର୍ଶରୂପରସଗନ୍ଧା ମେ ଶୁଧ୍ୟନ୍ତାମ୍ । ଜ୍ୟୋତିଂ ...
॥୫॥
ପୃଥିବ୍ୟପ୍‌ତେଜୋବାୟ୍ୱାକାଶା ମେ ଶୁଧ୍ୟନ୍ତାମ୍ ।
ଜ୍ୟୋତିଂ... ॥୬॥
ଅନ୍ନମୟ ପ୍ରାଣମୟ ମନୋମୟ ବିଜ୍ଞାନମୟା ନନ୍ଦମୟା
ମେ ଶୁଧ୍ୟନ୍ତାମ । ଜ୍ୟୋତିଂ .. ॥୭॥
ବିବିଷ୍ଟୈ୍ୟ ସ୍ୱାହା ॥୮॥
କଷୋତ୍କାୟ ସ୍ୱାହା ॥୯॥
ଉତ୍ତିଷ୍ଠ ପୁରୁଷ ହରିତ ଲୋହିତ ପିଙ୍ଗଳାକ୍ଷି ଦେହି
ଦେହିଦଦାପୟିତା ମେ ଶୁଧ୍ୟନ୍ତାମ୍ । ଜ୍ୟୋତିଂ...
॥୧୦॥

(ତୈ. ଆ. ପ୍ର. ୧୦ । ଅ.-୫୧-୬୦)

